# ଓଡ଼ିଆ ଲୌକିକ ପଦ

ବା

# ଢଗ-ଢମାଳି ବଚନ

( ୧ମ ଭାଗ )

୰ ଗୋପାଳ ଚନ୍ଦ୍ର ପ୍ରହରାଜ

ପ୍ରକାଶକ

[illegible]

ବାଲୁବଜାର, କଟକ-୨

# ଢ଼ଗ-ଢ଼ମାଳି ବଚନ

( ୧ମ ଭାଗ )

ସଂଗ୍ରାହକ :
৺ ଗୋପାଳ ଚନ୍ଦ୍ର ପ୍ରହରାଜ


ପ୍ରକାଶକ :
ଶ୍ରୀ ସୁଶାନ୍ତ କୁମାର ମିଶ୍ର
କଟକ ଟ୍ରେଡ଼ିଂ କଂପାନୀ
ବାଲୁବଜାର, କଟକ-୨

ନୂତନ ସଂସ୍କରଣ : ୧୯୯୦

ମୁଦ୍ରଣ:
ଆନନ୍ଦ ପ୍ରିଣ୍ଟିଂ ଓ୍ୱାର୍କସ୍
ତେଲେଙ୍ଗାବଜାର, କଟକ-୯

ମୂଲ୍ୟ : ଟ୩୫-୦୦

# ଅବତାରଣା

ଦିନେ ଉତ୍କଳର ଶିକ୍ଷିତ ସମାଜରେ ଏପରି କାଳ ଥିଲା ଯେ ତଗ ଡ଼ମାଳୀ ନାମ ଶୁଣିଲେ ଶିକ୍ଷିତମାନେ ନାକ ଟାଉଁଟାଉଁ କରୁଥିଲେ । ମାର୍ଜିତ, ସାହିତ୍ୟିକ, 'ବିଶୁଦ୍ଧ' ଭାଷା ଛଡ଼ା ପୁସ୍ତକାଦିରେ ଘରୋଇ ବା ସାଧାରଣ କଥିତ ଭାଷା ବ୍ୟବହୃତ ହେବାର ଦେଖିଲେ ଲୋକେ ସେ ଲେଖାକୁ ଘୃଣା କରୁଥିଲେ । ଈଶ୍ବରଙ୍କ କୃପାରୁ ସେ କାଳ ଏବେ ନାହିଁ । ମୁଁ ଯେତେବେଳେ ପଚିଶି ତିରିଶି ବର୍ଷ ତଳେ ଘରୋଇ ଭାଷାରେ ଉତ୍କଳର କାହାଣୀ 'ଉତ୍କଳ ସାହିତ୍ୟ' ପତ୍ରିକାରେ ଲେଖିବାକୁ ଆରମ୍ଭ କଲି, ସେତେବେଳେ ଉତ୍କଳରେ "ବାପା ହେ ! ବାପା ହେ ! ଶିକାଙ୍କ ଉପରେ ଘଡ଼ିଙ୍କ ମଧ୍ୟରେ ଦୃତ ଅଛନ୍ତି" ଏହି ଯୁଗ ଚଳୁଥିଲା । କେତେକ ସମ୍ବାଦପତ୍ର ଓ ସମାଲୋଚକ ମୋ ବ୍ୟବହୃତ ଭାଷାକୁ ବାହ୍ଲୁଣିସ୍ଥା, ଇତର, ଅମାର୍ଜିତ, ଗ୍ରାମ୍ୟ, ମାଇପଙ୍କ କଥା ଆଦି ବିଶେଷଣରେ ଅଳଙ୍କୃତ କରିଥିଲେ । କିନ୍ତୁ କାଳର ଗତି ଅନୁସାରେ ମୋ ବ୍ୟବହୃତ ଘରୋଇ ଭାଷା ପରି ଭାଷା ଶିକ୍ଷିତମାନଙ୍କ ଲେଖାରେ କ୍ରମଶଃ ଆଦର ଓ ସ୍ଥାନ ପାଇଲା ଏବଂ ଆଜି ଉତ୍କଳର ଏକାଧିକ ଲେଖକ ଓ ସମ୍ପାଦକ ସର୍ବଜନବୋଧ୍ୟ କଥିତ ସରଳ ଭାଷା ବ୍ୟବହାର କରୁଅଛନ୍ତି । ଘରୋଇ ଭାଷା ଲେଖିବାଟାକୁ ଲୋକେ ପ୍ରଥମେ ଯେତେ ସହଜ ବୋଲି ବିଚାରୁଥିଲେ, ପ୍ରକୃତରେ ଘରୋଇ ଭାଷା ଲେଖିବାରେ କୃତିତ୍ବ ଅଛି ବୋଲି ବର୍ତ୍ତମାନ ବୁଝିପାରି ଅଛନ୍ତି । ଇଂରାଜୀରେ ଗୋଟିଏ ପ୍ରବଚନ ଅଛି (That is art which conceals art) କୃତିତ୍ବକୁ ପ୍ରଚ୍ଛନ୍ନ ରଖିବାହିଁ କୃତିତ୍ବ । କଞ୍ଚା ବା ଖାଣ୍ଟି ଓଡ଼ିଆ ଶବ୍ଦ ଓ (Idiom) ବିଶିଷ୍ଟ ପ୍ରୟୋଗ ବା ଭଙ୍ଗୀ ବ୍ୟବହାର କରି ରଚନା ଲେଖିବାରେ ଲେଖକଙ୍କୁ ଯେତେ ଯତ୍ନ ଓ ପରିଶ୍ରମ କରିବାକୁ ପଡ଼େ, ସେହି ଲେଖାକୁ ଉପର ଠାଉରିଆ କରି ପଢ଼ିଯିବା ଲୋକେ ତାହା ଉପଲବ୍ଧି କରି ପାରନ୍ତି ନାହିଁ, କିନ୍ତୁ ସେହି ଢଙ୍ଗରେ ଥରେ ଲେଖିବାକୁ କଲମ ଧରିଲେ ଦେଖାଯିବ ଯେ ସରଳ, ଘରୋଇ, ଖାଣ୍ଟି ଓଡ଼ିଆ ଭାଷା ଓ ଢଙ୍ଗରେ ଲେଖି କୃତକାର୍ଯ୍ୟ ହେବା ମୁହଁର କଥା ନୁହେଁ ।

କାହାଣୀର ପଦବୀ ସାହିତ୍ୟରେ କେତେ ଉଚ୍ଚରେ, ଏହା ଆଜି ବୁଝାଇବାର ସମୟ ଆଉ ନାହିଁ । କାହାଣୀ ସାହିତ୍ୟର ଗୋଟିଏ ବିଶିଷ୍ଟ ଅଙ୍ଗ, ଏହା ସବୁ ଭାଷାରେ ବର୍ତ୍ତମାନ ସମସ୍ତେ ଏକ ମୁଖରେ ସ୍ବୀକାର କରୁଅଛନ୍ତି । ଏହା ଲୌକିକ ସାହିତ୍ୟ (Popular Literature)ର ଗୋଟିଏ ଅଙ୍ଗ ମାତ୍ର । ଲୌକିକ ସାହିତ୍ୟର

ଅନେକଗୁଡ଼ିଏ ଅଙ୍ଗ ପ୍ରତ୍ୟଙ୍ଗ ଅଛି । ଦେଶ ପ୍ରଚଳିତ ସାଧାରଣଙ୍କ ବ୍ୟବହୃତ (କଥିତ) ଢଗ, ଢମାଳି, ପ୍ରବଚନ, ଭଜନ, ନୀତିବଚନ, ଶାସ୍ତ୍ରବଚନ, ଯାହାକି ଆମ୍ଭେମାନେ ପ୍ରତିଦିନ ଲୋକମୁଖରୁ ଶୁଣୁଁ ଓ ନିଜେ କଥାଭାଷାବେଳେ ବ୍ୟବହାର କରୁଁ ସେଗୁଡ଼ିକ ମଧ୍ୟ ଲୌକିକ ସାହିତ୍ୟର ଅନ୍ତର୍ଗତ । ଏଗୁଡ଼ିକରୁ ଆଚାର, ସମାଜର ଓ ଦେଶର ଅନେକ ତତ୍ତ୍ୱ, ରୀତି, ନୀତି ଓ ଭଙ୍ଗୀ ଅନୁମାନ କରିଯାଇପାରେ ।

ମାନବ ପ୍ରକୃତିର-ଗଠନର ଗୋଟିଏ ସ୍ୱାତନ୍ତ୍ର୍ୟ ଏହିକି ଗୋଟିଏ ସତ୍ୟ ବା ଉପଦେଶ ବା ନୀତିକଥାକୁ କେବଳ କଥାରେ କହିଦେଲେ ତାହା ଶ୍ରୋତାର ମନରେ ଯେପରି ଦୃଢ଼ ହୋଇ ଲାଗି ନ ରହେ, ସେହି ସତ୍ୟ ବା ଉପଦେଶକୁ ପଦ୍ୟ, ଢଗ, ଋଷିବଚନ, ଶାସ୍ତ୍ରବାକ୍ୟ ଆଦିର ସାହାଯ୍ୟରେ କହିଲେ, ତାହା ଶ୍ରୋତାର ହୃଦୟରେ ଦୃଢ଼ତର ଓ ସ୍ଥାୟୀ ଭାବରେ ଲାଗି ରହେ : ମାନବ ପ୍ରକୃତିର ଏହି ଗୂଢ଼ ରହସ୍ୟକୁ ହୃଦୟଙ୍ଗମ କରି ସବୁକାଳରେ, ସବୁ ଦେଶରେ, ପଣ୍ଡିତ, ଋଷି, ଗୁରୁଜନ, କବି ଓ ବୃଦ୍ଧ ବୃଦ୍ଧାମାନେ ଢଗ, ପ୍ରବାଦ, ପ୍ରବଚନ ଓ ପଦ୍ୟ ଛଳରେ ନୀତିବାକ୍ୟ ଓ ସନାତନ ସତ୍ୟମାନଙ୍କୁ ସମାଜକୁ ଉପହାର ଦେଇଯାଇଅଛନ୍ତି । କାଳର ଗତି ଅନୁସାରେ ପ୍ରତ୍ୟେକ ଜାତିର ଓ ସମାଜର ପ୍ରାଣକୁ ଯେତେଗୁଡ଼ିଏ ପ୍ରଭାବ ସ୍ପର୍ଶ ବା ଆଲୋଡ଼ନ କରିଅଛି, ସେଗୁଡ଼ିକ ଢଗ ଓ ପ୍ରବଚନମାନଙ୍କରେ ପ୍ରତିଫଳିତ ହୋଇଅଛି । ଆମ ଉତ୍କଳରେ ଯେତେ ଯେତେବେଳେ ଯେଉଁ ଯେଉଁ ଜାତି, ସଭ୍ୟତା ଓ ଧର୍ମଭାବ ଆପଣା ଆପଣାର ପ୍ରଭାବ ବିସ୍ତାର କରିଅଛି ସେହି ସେହି ସମୟରେ ସେହି ସେହି ଜାତି ସଭ୍ୟତା ଓ ଧର୍ମଭାବର ଭାଷା ଓ ପ୍ରବଚନମାନ ଆମ ଦେଶକୁ ପ୍ରବେଶ କରିଅଛି । ବଙ୍ଗୀୟ, ହିନ୍ଦୁସ୍ଥାନୀ, ପାରସ୍ୟିକ ଓ ସଂସ୍କୃତ ଭାଷାର ସାମାଜିକ ଏବଂ ପୌରାଣିକ ଆଖ୍ୟାୟିକା, ଶ୍ଳୋକ ଓ ପ୍ରବଚନମାନ ଆମ ଦେଶରେ ସାଧାରଣ ଲୋକଙ୍କ ମୁହଁରୁ ଶୁଣା ଯାଉଥିବା ଏଥିର ନିଦର୍ଶନ ଅଟେ ।

ଲୋକମୁଖରୁ ଶୁଣା ଯାଉଥିବା ଢଗ ଓ ପ୍ରବଚନ ଆଦିର ମୂଳ ଖୋଜିବାକୁ ଗଲେ ତହିଁର ଉପାଦାନମାନ ପୁରୁଣା ଶାସ୍ତ୍ରଠାରୁ ଆରମ୍ଭ କରି ଶିଶୁଗୀତ ପର୍ଯ୍ୟନ୍ତ, ସଂସ୍କୃତରୁ ଆରମ୍ଭ କରି ହିନ୍ଦି, ବଙ୍ଗଳା, ପାରସୀ ଭାଷା ପର୍ଯ୍ୟନ୍ତ; ରାଜପ୍ରାସାଦରୁ ପର୍ଣ୍ଣକୁଟୀର ପର୍ଯ୍ୟନ୍ତ; ମୁନି ଋଷି ପଣ୍ଡିତଙ୍କଠାରୁ ମୂର୍ଖ ପର୍ଯ୍ୟନ୍ତ, ବ୍ରାହ୍ମଣଠାରୁ ଆରମ୍ଭ କରି ତେଲି, ତନ୍ତି, ଗୁଳାଭଣା, ବାଉରି, କଣ୍ଡରା, ଶଅର ଶଉରୁଣୀ, କେଳା କେଳୁଣୀ ପାଣ ହାଡ଼ି ପର୍ଯ୍ୟନ୍ତ ବୃଦ୍ଧ ବୃଦ୍ଧାଙ୍କଠାରୁ ଅପୋଗଣ୍ଡ ଶିଶୁ ପର୍ଯ୍ୟନ୍ତ ସବୁଠାରୁ ସଂଗୃହୀତ ହୋଇଥିବାର ଦେଖାଯିବ । ସମାଜର ଯେଉଁ ଯେଉଁ ଚିତ୍ରମାନ ଏ ବଚନମାନଙ୍କରେ ପ୍ରତିଫଳିତ ହୋଇଅଛି, ତାହା ଏକାଧାରରେ ଅନ୍ୟତ୍ର ହାବୁଡ଼େ ପଡ଼ିବା ଦୁଷ୍କର । କି ଶାସ୍ତ୍ର କି ପୁରାଣ, କି ପଣ୍ଡିତ, କି ମୂର୍ଖ, କି ବୃଦ୍ଧ, କି ଶିଶୁ, ଯାହାର ଯେତେବେଳେ ଯେଉଁ କଥା ଉପସ୍ଥିତ ଅନୁଭବର ଉପଯୋଗୀ ଥିବାର ହାବୁଡ଼େ ପଡ଼ିଯାଇଅଛି ଓ ଯାହା

ଏକାଧିକ ବ୍ୟକ୍ତିଙ୍କ ମନକୁ ପାଇଯାଇଛି, ସେମାନେ ଦେଶରେ ଲୋକମୁଖରେ ଢଗ ଓ ପ୍ରବଚନ ରୂପେ ରହିଯାଇଅଛି । ଏ ବଚନମାନ ଜାତିର କୋଠ ଭଣ୍ଡାର । ଏଥିରେ ବହୁପୁରୁଷାର୍ଜିତ ଅନୁଭବ, ଜ୍ଞାନ ଓ ମାନବପ୍ରକୃତିଗତ ସତ୍ୟମାନ ସୁନ୍ଦର ଓ ହୃଦୟସ୍ପର୍ଶୀ ଆକାରରେ ଚୁମ୍ବକରୂପେ ସାଇତା ହୋଇ ରଖାଯାଇଅଛି ।

ମୁଁ ବହୁକାଳରୁ ଅନୁଭବଦ୍ୱାରା ଉପଲବ୍‌ଧି କରିଅଛି ଯେ କଚେରିରେ ମାମଲା ମକଦ୍ଦମା ପଢ଼ିବାବେଳେ ଆଶ୍ରିଆ ଓ ତେଢ଼ା ହାକିମଙ୍କୁ ବାଗେଇବା ନିମନ୍ତେ ଯେଉଁପରି (Ruling) ନଜିର୍ ଦେଖାଇବାକୁ ଲୋଡ଼ାହୁଏ, ସାମାଜିକ ଓ ନିତ୍ୟନୈମିତ୍ତିକ ଅନୁଷ୍ଠାନମାନଙ୍କରେ ଯେପରି ମନ୍ୱାଦି ସ୍ମୃତିର ନଜିର ଲୋଡ଼ା, ସେହିପରି ଦୈନନ୍ଦିନ ଜୀବନରେ ଅବଝା ମଣିଷକୁ, ଅବୁଝା ମନକୁ, ଅବୁଝା ସାଇପଡ଼ିଶାଙ୍କୁ ଓ ଅବୁଝୀ ମାଇପୀ ଜାତିଙ୍କୁ କାଇଲ ମାକୁଲ କରିବା ନିମନ୍ତେ ଢଗ, ଢମାଳି, ପ୍ରବଚନ ଆଦି ଲୋଡ଼ା ହୁଏ । ଏମାନ ବହୁପୁରୁଷାର୍ଜିତ ଅନୁଭବରୁ ସମାଜର ପ୍ରବୀଣ, ଜ୍ଞାନୀ ଓ ବୁଢା ବୁଢ଼ୀମାନଙ୍କ ଦ୍ୱାରା କଢ଼ା ହୋଇଥିବା (Essence) ଅରଖ ବା ସାରାଂଶ । ଏ କଥା ୨୦ ବରଷ ତଳେ 'ବାଇ ମହାନ୍ତି' ତାଙ୍କ ପାର୍ଥିର ୧୩ଶ ବାଡ଼ାରେ ଓ ୧୨ ବରଷ ତଳେ ମୁଁ 'ଦୁନିଆର ହାଲଚାଲ'ରେ ( ଉତ୍କଳ ସାହିତ୍ୟ ୧୬ଶ ଭାଗ ପଞ୍ଚମ ସଂଖ୍ୟା ) ସୂଚନା କରିଥିଲି । ଶିଶୁସଙ୍ଗୀତ, ଶିଶୁରଞ୍ଜନ ଗୀତ ଓ ପଦମାନ; ସ୍ତ୍ରୀମାନେ ପରସ୍ପର ମଧ୍ୟରେ ବୋଲି ବୋଲି ହେଉଥିବା ଭିଲୁଗୁଣା ବା ଉପାଣ ପଦମାନ, କନ୍ୟା ଶାଶୁଘରକୁ ଯିବା ସମୟରେ ଓ ନବାଗତା ବୋହୂ ଶାଶୁଘରେ ଥାଇ ପିତା ମାତା ଭାଇ ଭାଉଜ ଆଦିଙ୍କୁ ଲକ୍ଷ୍ୟ କରି ଯେଉଁ ଭାବନା, ଅନୁଚିନ୍ତା ଓ ଅନୁଶୋଚନା କରନ୍ତି; ଗଉଡ଼ ବେହେରା, ଚଷା, ମୂଲିଆ, ଶଗଡ଼ିଆ, ପାଣିବୁହାଳୀମାନେ ଶ୍ରମ ଅପନୋଦନାର୍ଥ ଯେଉଁ ଗୀତ ଓ ପଦମାନ ବୋଲିଥାନ୍ତି; ଯୋଗୀ, ଭିକାରୀ, କେଳା କେଳୁଣୀ, ଭାଟ, ଚକୁଳିଆ ପଣ୍ଡା ଆଦି ଯେଉଁ ଗୀତ ପଦମାନ ବୋଲି ଥାଆନ୍ତି; ବାଉରି କଣ୍ଡରା, ଶଅର ଶଉରୁଣୀଗୀତ ଓ ପଦମାନ ବୋଲିଥାଆନ୍ତି ; ବାଉରି, କଣ୍ଡରା, ଶଅର ଶଉରୁଣୀମାନେ ଝାମୁ ନାଟରେ, କେଉଟମାନେ ଚଇତିଘୋଡା ଉପଲକ୍ଷ୍ୟରେ, ଗଉଡ଼ମାନେ ଦୋଳ ସମୟରେ ଯେଉଁ ଗୀତମାନ ବୋଲନ୍ତି; ପ୍ରହେଳିକା ବା ନାଁଦିଆ; ବୈଷ୍ଣବ ଓ ଭଗତମାନେ ଯେଉଁ ଚଉପଦୀ, ଚଉତିଶା, ଭଜନ, ଶରୀରଭେଦ, ଅବକାଶ ଆଦି ଗାଆନ୍ତି; ବ୍ୟଙ୍ଗ, ବିଦ୍ରୂପ, ପରିହାସ ଉପହାସ ବଚନମାନ; ବ୍ୟକ୍ତି ଓ ସ୍ଥାନ ବିଶେଷର ନାମାନୁପ୍ରାସରେ ଯେଉଁ ପଦମାନ ରଚିତ ଓ ଗୀତ ହୋଇଥାଏ; ଅନ୍ତର୍ଲିପି, ବହିର୍ଲିପି, ଛିଣ୍ଡା ଗଣ୍ଡି ଆଦି; ଭିନ୍ନ ଭିନ୍ନ କାହାଣୀରେ ଯେଉଁ ପଦ ଓ କଥାମାନ ଲଗାଯାଇଥାଏ; ଭାଗବତାଦି ପୁରାଣର ଆପ୍ତବଚନ ଓ ନୀତିବାକ୍ୟମାନ ଯାହାକି ଲୋକେ ଦୈନନ୍ଦିନ ଜୀବନର ବିଶେଷ ବିଶେଷ ଘଟଣା ଉପଲକ୍ଷରେ ଉଦ୍ଧୃତ କରିଥାଆନ୍ତି; ଡାକ ଋଷି ବଚନ, ଖନାବଚନ, କୃଷିବଚନ; ବର୍ଷା ବଚନ; ଗୋମେଷାଦିଙ୍କର ଲକ୍ଷଣ; ଜ୍ୟୋତିଷ ବଚନ;

ଡାଆଣୀ, ବିଷ ଓ ରୋଗ ଛଡ଼ାଇବା ମନ୍ତ୍ରଯନ୍ତ୍ର ଓ ଟୁଣୁକାଟୁଣୁକା ବଚନ; ଗୋପାଳ ଭଣ୍ଡ, ଯଦୁମଣି ପାଇକରା, ନାରଣ ଗ୍ରେଟନ୍ ଆଦିଙ୍କ ରସିକତାପୂର୍ଣ୍ଣ ଉକ୍ତିମାନ; ଶୁଆ ଶାରୀଙ୍କୁ ଘୋଷାଇବା ବଚନ, ହିନ୍ଦି, ଫାରସୀ, ବଙ୍ଗଳା, ସଂସ୍କୃତ ଆଦିର ଯେଉଁ ଯେଉଁ ଉଦ୍ଭଟ ଏବଂ ସମୟୋପଯୋଗୀ ଶ୍ଳୋକ ଓ ଶ୍ଳୋକାଂଶମାନ ଯାହା କଥା ପ୍ରସଙ୍ଗରେ ଉକ୍ତ ଭାଷା ଜାଣିଥିବା ଓ ଜାଣି ନ ଥିବା ଲୋକମାନେ ମଧ୍ୟ ଉଲ୍ଲେଖ ଦେଇଥାଆନ୍ତି; ସାପୁଆକେଳା ମାନେ ସାପ ଧରିବା ଓ ଖେଳାଇବା ସମୟରେ ଯେଉଁ ପଦ୍ ଭୋଳା ପଦ ବୋଲନ୍ତି; ଏ ସମସ୍ତ ଲଘୁ ସାହିତ୍ୟ (Light literature) ର ଅନ୍ତର୍ଗତ । ଏ ତାଲିକା ଦ୍ୱାରା ଲଘୁ ସାହିତ୍ୟର ସମସ୍ତ ଶାଖା ପ୍ରଶାଖା ଓ ଉପଶାଖାର ନାମୋଲ୍ଲେଖ ବା ସଂଖ୍ୟା ଶେଷ ହେଲା ବୋଲି ବୋଲି ଯାଇ ନ ପାରେ । ସଂସ୍କୃତ ଓ ଫାରସୀ ଭାଷା ଜାଣି ନ ଥିବା ଲୋକେ ମଧ୍ୟ ତଦ୍ଭବ ଭାଷାରେ ଶ୍ଳୋକାଂଶ ଓ ବଚନମାନଙ୍କୁ ବିକୃତ କରି କଥା ପ୍ରସଙ୍ଗରେ ଉଲ୍ଲେଖ ଦେବାର ଦେଖାଯାଏ ।

ମୁଁ ସର୍ବଦା ତରତମାଳୀ ଆଦି ଲୌକିକ ସାହିତ୍ୟର ଜଣେ ଅଧମ ଭକ୍ତ । ମୋର ବିଶ୍ୱାସ ଯେ ଏ ଶ୍ରେଣୀର ବଚନମାନଙ୍କରେ ଯେତେଗୁଡ଼ିଏ ଖାଣ୍ଟି ଓଡ଼ିଆ ଶବ୍ଦ, ଭାବ, ରୁଚି ଓ ରୀତିର ଆଭାସ ସଞ୍ଚିତ ହୋଇ ରଖାଯାଇଅଛି, ତାହା କାହାଣୀ ଛଡ଼ା ଅନ୍ୟତ୍ର ମିଳିବ ନାହିଁ । ଏଗୁଡ଼ିକ ଲିପିବଦ୍ଧ ହୋଇ ନ ରହିଲେ ଓ ଏଗୁଡ଼ିକର ଉପାଦେୟତା ପ୍ରତି ଶିକ୍ଷିତମାନଙ୍କର ଦୃଷ୍ଟି ଓ ଆଗ୍ରହ ଆକର୍ଷିତ ନ ହେଲେ କାଳକ୍ରମେ ଦେଶର ନବ୍ୟ ଶିକ୍ଷିତ ଭାବୀ ବଂଶଧରମାନେ ଏଗୁଡ଼ିକ ଭୁଲିଯିବେ; ଏବଂ ଭାଷାର ଓ ସମାଜର ତତ୍ତ୍ୱାନୁସନ୍ଧିତ୍ସୁମାନଙ୍କ ପାଇଁ ଗୁଡ଼ିଏ ବହୁମୂଲ୍ୟ ଉପକରଣ ଆମ ଦେଶରୁ ଉଭେଇ ଯିବ । ଏହି ଲକ୍ଷ୍ୟକୁ ସମ୍ମୁଖରେ ରଖି ମୁଁ ମୋର ନଗଣ୍ୟ ଲେଖା ମଧ୍ୟରେ ଯଥାଶକ୍ତି ଖାଣ୍ଟି ଓଡ଼ିଆ ଶବ୍ଦ, ବିଶିଷ୍ଟ ପ୍ରୟୋଗ (Idiom), ଢଗ, ପ୍ରବଚନ ଓ ଉଦ୍ଭଟପଦମାନ ସନ୍ନିବେଶିତ କରିବାକୁ ଯତ୍ନ କରିଥାଏଁ । ଏ ଚେଷ୍ଟାରେ ମୁଁ କେତେଦୂର କୃତକାର୍ଯ୍ୟ ହୋଇଅଛି ତାହା କହିବା ମୋର ଅଧିକାର ନାହିଁ । ଏମାନ ସଂଗ୍ରହ କରି ରଖିବା ଦେଶର ସାହିତ୍ୟ, ଭାଷା ଓ ସମାଜପକ୍ଷରେ ବହୁମୂଲ୍ୟବାନ୍ ଏଥିରୁ ଆମ ଦେଶର ସାହିତ୍ୟର ଓ ସମାଜର ରୀତିନୀତି, ରୁଚି, ଚିନ୍ତାର ଭଙ୍ଗୀ ଆଦି ଯେତେଦୂର କଳନା କରାଯାଇପାରେ, ତାହା ଅନ୍ୟ ଉପାଦାନରୁ ଏତେ ସହଜରେ କଳନା କରାଯିବା ଅସମ୍ଭବ ବୋଲି ମୁଁ ପୂର୍ବରେ ସୂଚନା କରିଅଛି । ଉଦାହରଣସ୍ୱରୂପ ଦେଖାଯାଉ ଯେ ଆମଦେଶରେ ଶାଶୁ ଘରେ ନବାଗତା ବୋହୂ ପ୍ରଥମେ ପ୍ରଥମେ ଯେଉଁ ଲାଞ୍ଛନା ଓ ନିର୍ମମ କଟାକ୍ଷପାତ ଆଦି ନୀରବରେ ସହେ, ଆମଦେଶରେ ସପରିବାର ବିଦେଶବାସ ପ୍ରଥାପୂର୍ବେ ଚଳୁ ନ ଥିବାରୁ ଦୀର୍ଘପ୍ରବାସୀ ସ୍ୱାମୀର ଅନୁପସ୍ଥିତି ଓ ବିଚ୍ଛେଦରେ ଶାଶୁଘରେ ନବାସିତା ବଧୂ ଯେଉଁ ଗଞ୍ଜଣା, ଧର୍ଷଣାରେ ଧନାତପାତ କରେ ଓ ଯେଉଁ ଛାଟିକଳା ମାଡ଼ ସହେ, ରକ୍ଷଣଶୀଳ

ସମାଜ ଓ ସାଇପଡ଼ଶାମାନେ କୌଣସି ନୂତନବାଧ୍ୟ ପ୍ରବର୍ତ୍ତି ସୃଷ୍ଟି ପ୍ରତି ଯେଉଁ ବ୍ୟଙ୍ଗ ବଦ୍ରୂପ ବାଣ ନିକ୍ଷେପ କରନ୍ତି, ପୁରୁଷର ବହୁବିବାହ ପ୍ରଥାଯୋଗୁଁ ସ୍ୱାମୀ ଓ ସପତ୍ନୀମାନେ ଯେଉଁ ଅଶାନ୍ତି ଓ କଷ୍ଟରେ ଉଦ୍ବେଳ ବିକଳ ହୁଅନ୍ତି, ବାଲ୍ୟ ବିବାହର କୁଫଳ, ବାଲବିଧବାର ନିର୍ଯାତନ ଓ ବିଡ଼ମ୍ବନା, ପରପୁରୁଷ ଓ ବ୍ୟଭିଚାରୀମାନଙ୍କଦ୍ୱାରା ବିଧବାମାନଙ୍କ ଉପରେ ଅତ୍ୟାଚାର ଆଦିର ଜ୍ୱଳନ୍ତ ଚିତ୍ରମାନ ଆମ ଗୀତମାଳୀ ଆଦିରେ ଯେପରି ପ୍ରତିଫଳିତ ଓ ଖୋଦିତ ହୋଇ ରହିଅଛି, ତାହା ସମସ୍ତେ ସମସ୍ତେ ଛାପା ଇତିହାସ ବା ମାଦଳାପାଞ୍ଜିରୁ ମିଳିବା କଷ୍ଟ । କିନ୍ତୁ ଦୁଃଖର ବିଷୟ ଏହି ଯେ ଏ ଶ୍ରେଣୀର ଲଘୁସାହିତ୍ୟର ପ୍ରଭାବ ଆଧୁନିକ ଶିକ୍ଷିତମାନଙ୍କ ପ୍ରବର୍ତ୍ତିତ ସାହିତ୍ୟରେ କ୍ଷୀଣତର ଓ ମନ୍ଦୀଭୂତ ହୋଇ ଆସୁଅଛି, ଏବଂ ମୁଷ୍ଟିମେୟ କବି ଓ ଲେଖକଙ୍କୁ ଛାଡ଼ିଦେଲେ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଯୁବକମାନଙ୍କର ଏ ଶ୍ରେଣୀର ସାହିତ୍ୟ ପ୍ରତି ସମ୍ୟକ୍ ଦୃଷ୍ଟି ରହିଛି ନାହିଁ ବୋଲି ମୁଁ ଅନୁଭବ କରିଅଛି । ଏ ଶ୍ରେଣୀର ଲୌକିକ ସାହିତ୍ୟ (Popular Literature) ପ୍ରତି ମୋର ଅନେକ ଦିନରୁ ମମତା ଜନ୍ମିଥିବାର ମୁଁ ଏଥିପୂର୍ବେ କହିଅଛି । କିନ୍ତୁ ମୁଁ ଏ ସମ୍ବନ୍ଧେ ଗବେଷଣା ବା ଦୃଢ଼ ଅଭିନିବେଶ କରି ନାହିଁ । ଏହା ମୋର ଏକା କାହିଁକି,ଆମ ଓଡ଼ିଆ ଶିକ୍ଷାଭିମାନୀ ଶ୍ରେଣୀର ବିଶେଷତ୍ୱ । ମୋର ବାଲ୍ୟବନ୍ଧୁ ସ୍ୱର୍ଗୀୟ ଅଭିରାମ ଭଞ୍ଜ ଏମ.ଏ., ବି.ଏଲ. ୧୯୦୭ ସାଲରେ କଟକର 'ଉତ୍କଳ ସାହିତ୍ୟ ସମାଜ' ରେ 'ଉତ୍କଳର ଲୌକିକ ସାହିତ୍ୟ' ସମ୍ବନ୍ଧରେ ଗୋଟିଏ ବକ୍ତୃତା ଦେଇଥିଲେ; କିନ୍ତୁ ଦୁର୍ଭାଗ୍ୟକୁ ଉକ୍ତ ବକ୍ତୃତାରେ ଉପସ୍ଥିତମାନ ବକ୍ତା କୌଣସି ଗବେଷଣା ବା ସାଧନାର ପରିଚୟ ଦେଇପାରି ନ ଥିଲେ । ଫଳତଃ ସେ ସମ୍ବନ୍ଧେ ତାଙ୍କ ପରି କୃତୀ ସନ୍ତାନଙ୍କ ମୁହଁରୁ କୌଣସି ନୂଆ ବା ତତ୍ତ୍ୱପୂର୍ଣ୍ଣ କଥା ଶୁଣିବାର ଆକାଙ୍କ୍ଷା ମୋର ଅପୂର୍ଣ୍ଣ ରହିଗଲା ।

୧୮୭୭ ସାଲରେ ଓଡ଼ିଶାର ଭୂତପୂର୍ବ କମିସନର ସ୍ୱର୍ଗୀୟ ରେଭେନ୍‌ସା ସାହେବଙ୍କ ଅନୁକୂଲ୍ୟରେ ସ୍ୱର୍ଗୀୟ ପଣ୍ଡିତ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ ନନ୍ଦଶର୍ମା ଗୁଡ଼ିଏ ଗୀତ ସଂଗ୍ରହ କରି ପୁସ୍ତକାକାରରେ ପ୍ରକାଶ କରିଥିଲେ । ପଣ୍ଡିତମହାଶୟଙ୍କ ପୁତ୍ର ସ୍ୱର୍ଗୀୟ ପଣ୍ଡିତ ଶ୍ରୀ ସୁଦର୍ଶନ ନନ୍ଦ ଶର୍ମା ୧୯୦୮ ସାଲରେ ଉକ୍ତ ପୁସ୍ତକର ପୁନର୍ମୁଦ୍ରିତ ୨ୟ ସଂସ୍କରଣ ପ୍ରକାଶ କରିଥିଲେ । ୧୯୦୩ ସାଲରେ ମୋର ସୋଦର ପ୍ରଥମ ପଣ୍ଡିତ ଶ୍ରୀ ନୀଳମଣି ବିଦ୍ୟାରତ୍ନ 'ପ୍ରବାଦ ପୁଷ୍ପାଞ୍ଜଳି' ନାମକ ଖଣ୍ଡିଏ ପୁସ୍ତିକାର ଗୁଡ଼ିଏ ଗୀତ ଓ ଶ୍ଳୋକାଂଶ ସଂଗ୍ରହ କରି ତାହା ମୋର ନଗଣ୍ୟ ନାମରେ ଉତ୍ସର୍ଗ କରିଥିଲେ । କଟକର ମୁନସୀ ସେଖ ଅବଦୁଲ ମଜିଦ 'ଗୀତମାଳିକା ବା ଗୀତରତ୍ନାକର ନାମରେ ଖଣ୍ଡିଏ ଟିକି ବହି ଏବଂ ପୁରୀ ଜିଲ୍ଲାର ଶ୍ରୀ ଚନ୍ଦ୍ରଶେଖର ବାହିନୀପତି 'ପରିହାସ ଦର୍ପଣ' ନାମକ ଖଣ୍ଡିଏ ସାନ ବହିରେ ଗୁଡ଼ିଏ ଗୀତ ଓ ପ୍ରବଚନ ସଂଗ୍ରହ କରିଥିଲେ । ଏବେ ଅର୍ଥାତ୍ ଗତ ବର୍ଷ ଖୋରଧା ହାଇସ୍କୁଲର ପଣ୍ଡିତ

ଶ୍ରୀ ଭଗବାନ ହୋତା 'ଓଡ଼ିଆ ପ୍ରବାଦମାଳା' ନାମକ ଖଣ୍ଡିଏ ପୁସ୍ତକରେ ଗୁଡ଼ିଏ ଢଗ ଓ ଶ୍ଳୋକାଂଶ ସଂଗ୍ରହ କରି ପ୍ରତ୍ୟେକ ବଚନ ତଳେ ସଂକ୍ଷିପ୍ତ ଟୀକା ବା ସୂଚନା ଦେଇଅଛନ୍ତି । ପୁରୀଜିଲ୍ଲାବାସୀ ସବଡେପୁଟୀ କଲେକ୍ଟର ଶ୍ରୀ ବାବୁ ରାଘବାନନ୍ଦ ଦାସ ବି.ଏ. ୧୯୧୪ ସାଲରେ ଗୁଡ଼ିଏ କୃଷି ବଚନ ( ଓଡ଼ିଆ, ବଙ୍ଗଳା, ହିନ୍ଦି ) ଖଣ୍ଡିଏ କ୍ଷୁଦ୍ର ପୁସ୍ତକରେ ସଂଗ୍ରହ କରିଅଛନ୍ତି । କିନ୍ତୁ ପଣ୍ଡିତ କପିଳେଶ୍ୱରଙ୍କ ସଂଗ୍ରହ ଦୃଷ୍ଟିରେ ପରବର୍ତ୍ତୀ ପୁସ୍ତକମାନଙ୍କରେ ବିଶେଷ କିଛି ପରିଶ୍ରମ ବା ବିଶିଷ୍ଟ ଚେଷ୍ଟାର ନିଦର୍ଶନ ମିଳିନାହିଁ । ଏ କ୍ଷେତ୍ରରେ ଉତ୍କଳରେ ଅନ୍ୟ କୌଣସି ବିଶିଷ୍ଟ ଚେଷ୍ଟା ହୋଇଥିବାର ମତେ ଜଣା ପଡ଼ି ନାହିଁ ।

ଦେଶର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ଢଗ ଆଦି ଜଣେ ବ୍ୟକ୍ତି ସଂଗ୍ରହ କରି-ପାରିବା ଅସମ୍ଭବ । ଗଞ୍ଜାମ, ସମ୍ବଲପୁର, ମେଦିନୀପୁର ଆଦି ଉତ୍କଳଭାଷୀ ଅଞ୍ଚଳ-ମାନଙ୍କରେ ଯେଉଁ ଢଗମାନ ଯେଉଁ ଆକାରରେ ଶୁଣାଯାଏ, ତାହା କଟକବାସୀ ଜଣେ ବ୍ୟକ୍ତି ସଂଗ୍ରହ କରିପାରିବା ଦୁଃସାଧ୍ୟ । ୧୩୧୮ ସାଲ ମାଘମାସର 'ଉତ୍କଳ ସାହିତ୍ୟ' ପତ୍ରିକାରେ (୧୪ଶ ଭାଗ ୧୦ମ ସଂଖ୍ୟା) ଗଞ୍ଜାମର ସାହିତ୍ୟସେବକ ଶ୍ରୀଯୁକ୍ତ ତାରିଣୀଚରଣ ରଥଙ୍କ ଲେଖାରେ ଗଞ୍ଜାମ ପ୍ରଚଳିତ ଗୋଟିଏ ଢଗ ଦେଖିଥିଲି । ତାହାର ଅର୍ଥ ଲେଖକ ସଙ୍ଗେ ସଙ୍ଗେ ଲେଖି ନଥିଲେ ତାହା ମୁଁ ଆଦୌ ବୁଝିପାରି ନଥାନ୍ତି । ଢଗଟି ଏହି :—"ଶାକୁଡ଼ି ପାକୁଡ଼ି ପୁଞ୍ଜିଏ, ସାଲୁବୁ ବାଲୁବୁ ପୁଞ୍ଜିଏ, ଶୁକୁ ଠୋ ଠୋ ପୁଞ୍ଜିଏ" । ଏ ଢଗଟି ଶୁଣିବାମାତ୍ରକେ ଆମ୍ଭେ କଟକଆମାନେ ଆଖି ତରାଟି ଦେବା । କିନ୍ତୁ ଏଥିର ଅର୍ଥ 'ବର୍ଷକର ୧୨ ମାସରୁ ଶୀତଋତୁ ଚାରିମାସ, ବର୍ଷା ୪ ମାସ ଓ ଗ୍ରୀଷ୍ମ ୪ ମାସ ଅଟେ' । ଏହି ତିନୋଟି କଞ୍ଚା ଓଡ଼ିଆ ଶବ୍ଦଦ୍ୱାରା ବର୍ଷକର ପ୍ରଧାନ ୩ ଋତୁର ବିଶେଷତ୍ୱ ଯେଉଁପରି ପ୍ରତିଫଳିତ ଓ ପରିସ୍ଫୁଟିତ ହୋଇଅଛି, ତାହା ସମଭାବବ୍ୟଞ୍ଜକ ଅନ୍ୟ ୩ ଗୋଟି ଶବ୍ଦ ଦ୍ୱାରା ଏପରି ସ୍ପଷ୍ଟ ଭାବରେ ଫୁଟି ପାରିବାର ମୁଁ କଳ୍ପନା କରିପାରୁ ନାହିଁ ।

ଆହୁରି ମଧ୍ୟ ଦେଖାଯାଏ ଯେ ଗୋଟିଏ ପ୍ରବଚନ ଭିନ୍ନ ଭିନ୍ନ ଅଞ୍ଚଳରେ, ଭିନ୍ନ ଭିନ୍ନ ଲୋକଙ୍କ ମୁହଁରୁ ଭିନ୍ନ ଭିନ୍ନ ଆକାରରେ ଶୁଣାଯାଏ । (ଯଥା ଓଡ଼ିଶାରେ କହନ୍ତି 'ମାଇଗୁଲିଆ ଦୁଃଖେଇ ଯାଉ, ମାଇପ ହାତରେ କହୁଣୀ ଖାଉ' । ଗଞ୍ଜାମରେ କହନ୍ତି, ମାଇଗୁଲିଆ ଟଙ୍କେଇ ଯାଉ, ମାଇକଣା ହାତରେ କହୁଣୀ ଖାଉ'। ଆମେ କହୁଁ 'ଏଣ୍ଡୁଅ ଦଉଡ଼ି ସିଝୁ ହାଡ଼ ଯାଏ' । ଗଞ୍ଜାମରେ କହନ୍ତି 'ଏଣ୍ଡାର ଦଉଡ଼ କୁଡ଼ଯାଏ') କେତେକ ପ୍ରବଚନ ଗୋଟିଏ ଅଞ୍ଚଳରେ ଶୁଣାଯାଏ, କିନ୍ତୁ ଉତ୍କଳର ଅନ୍ୟ ଅଞ୍ଚଳରେ ଶୁଣାଯାଏ ନାହିଁ । ଏମନ୍ତ କି, ଏକ ଢଗ ଏକ ଗ୍ରାମର ଭିନ୍ନ ଭିନ୍ନ ସାଇରେ ଭିନ୍ନ ଭିନ୍ନ ଆକାର ଧାରଣ କରିଥାଏ । ଉତ୍କଳ-

ଭାଷୀ ଅଞ୍ଚଳ ଯେଉଁପରି ବର୍ତ୍ତମାନ ବଙ୍ଗ, ବିହାର, ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଏହି ଚାରି-ଗୋଟି ରାଜନୈତିକ ବିଭାଗରେ ଛିନ୍ନଛିନ୍ନ ହୋଇ ରହିଅଛି, ଓଡ଼ିଆ ଭାଷାର ଢଗ ଓ ପ୍ରବଚନମାନ ମଧ୍ୟ ତତ୍ତଦ୍ ବିଭାଗର ଭିନ୍ନ ଭିନ୍ନ ଭାଷା ଓ ପ୍ରଭାବ ସଂସ୍ପର୍ଶରେ ଭିନ୍ନ ଭିନ୍ନ ଆକାର ଧାରଣ କରିଅଛି । ବିଭିନ୍ନ ଅଞ୍ଚଳରୁ ଜଣେ ମନୁଷ୍ୟ ଲୋକଙ୍କ ମୁହେଁ ମୁହେଁ ଚଳୁଥିବା ପ୍ରବଚନମାନ ସଂଗ୍ରହ କରି ସନ୍ନିବେଶିତ କରିବାର କାଠିକର ପାଠ । ସ୍ୱର୍ଗୀୟ କପିଳେଶ୍ୱର ନନ୍ଦଶର୍ମା ଯେଉଁ ସମାଜରେ ବିଚରଣ କରୁଥିଲେ, ମୋର ମଧ୍ୟ ସେହି ସମାଜ ଚରାଭୂଇଁ । ସେ ଯେଉଁ ଅଞ୍ଚଳରୁ ପ୍ରକାଶିତ ଢଗଗୁଡ଼ିକ ସଂଗ୍ରହ କରି-ଥିଲେ, ସେହି ଅଞ୍ଚଳରୁ ଏ ପୁସ୍ତକରେ ସନ୍ନିବେଶିତ ପ୍ରବଚନମାନ ସଂଗୃହୀତ ହୋଇଅଛି; କିନ୍ତୁ ନନ୍ଦ ମହାଶୟ ତାଙ୍କ ଅଞ୍ଚଳରେ ପ୍ରଚଳିତ ଅନେକଗୁଡ଼ିଏ ଢଗ ତାଙ୍କ ପୁସ୍ତକରେ ଛାଡ଼ିଯାଇ ଅଛନ୍ତି । ଏକ ଅଞ୍ଚଳର ଦୁଇଜଣ ସଂଗ୍ରାହକଙ୍କ ସଂଗ୍ରହରେ ଯେତେବେଳେ ଏତେ ପ୍ରଭେଦ, ଭିନ୍ନ ଭିନ୍ନ ଅଞ୍ଚଳରୁ ସଂଗୃହୀତ ବଚନମାନ କେତେ-ଦୂର ଅମେଳ ହେବ, ତାହା ଏଥିରୁ କଥଞ୍ଚିତ୍ ଅନୁମାନ କରାଯାଇ ପାରିବ ।

ଭିନ୍ନ ଭିନ୍ନ ଅଞ୍ଚଳରେ ପ୍ରଚଳିତ ଓ ଭିନ୍ନ ଭିନ୍ନ ଲୋକଙ୍କ ଦ୍ୱାରା ସଂଗୃହୀତ ଓ ଲିପିବଦ୍ଧ ହୋଇଥିବା ବଚନମାନ ଏକତ୍ର କରି ପ୍ରକାଶିତ କରିବା କଷ୍ଟସାଧ୍ୟ ନୁହେଁ । କିନ୍ତୁ ଭିନ୍ନ ଭିନ୍ନ ଅଞ୍ଚଳର ପଲ୍ଲୀବାସୀ, ଇତର ଲୋକ ଓ ଅଶିକ୍ଷିତା ସ୍ତ୍ରୀ ମାନଙ୍କ ମୁହଁରୁ ଶୁଣି ଢଗଢମାଳିଗୁଡ଼ିକ ଏକତ୍ର ସଂଗ୍ରହ କରିବା ଜଣେ ସଂଗ୍ରାହକଙ୍କ ପକ୍ଷରେ ଅସାଧ୍ୟ । କାରଣ ଆମେ ଶିକ୍ଷିତଲୋକେ ଘଟଣା ଚକ୍ରରେ ସେହି ଅଶିକ୍ଷିତ ଶ୍ରେଣୀର ସ୍ତ୍ରୀ ପୁରୁଷ ମାନଙ୍କଠାରୁ ଦୂରରେ (ଅର୍ଥାତ୍ କାର୍ଯ୍ୟାନୁରୋଧରେ ବିଦେଶରେ ବା ସହରରେ) ରହିଥାଉଁ ଓ ସେମାନଙ୍କ ଅପେକ୍ଷା ଉଚ୍ଚତର ସାମାଜିକ ସ୍ତରରେ ଚଳାଚଳ ହେଉଁ । ସେମାନଙ୍କ ସଙ୍ଗେ ମିଳାମିଶା କରିବା ଆମ ଶିକ୍ଷିତଙ୍କ ଭାଗ୍ୟରେ ସହଜରେ ଘଟେ ନାହିଁ; ଓ ଯେବେ କଦାଚିତ୍ ଏପରି ସୁଯୋଗ ଘଟିଯାଏ, ତେବେ ଉକ୍ତ ସ୍ତ୍ରୀ ପୁରୁଷମାନେ ଆମ୍ଭମାନଙ୍କୁ ସେମାନଙ୍କଠାରୁ ଉଚ୍ଚତର ଓ ପୃଥକସ୍ତରରେ ବାସକରିବା ଜୀବ ବୋଲି ଜ୍ଞାନକରି ଆମ୍ଭମାନଙ୍କ ଆଗରେ ସେମାନଙ୍କର ଦୈନନ୍ଦିନ ଜୀବନରେ ବ୍ୟବହୃତ ଢଗଢମାଳିମାନ ମନ ଖୋଲି ଠୋସ୍ ରୂପ ଦୋଲି ଦିବାକୁ ସଂକୁଚିତ ହୁଅନ୍ତି । ମୁଁ ଢଗଗୁଡ଼ିଏ ସଂଗ୍ରହ କରିବାକୁ ବସି ଢଗ ଜାଣିଥିବା ମଫସଲି ସ୍ତ୍ରୀ, ପୁରୁଷ ବାଉରୀ, କଣ୍ଡରା, କେଉଟ, ଚଷା ଆଦିଙ୍କୁ ବହୁ ସାଧ୍ୟ ସାଧନା କଲି ଓ ଧନ ମଧ୍ୟ ଯାଚିଲି । କିନ୍ତୁ ସେମାନେ ମୋ ଆଗରେ ସେମାନେ ଜାଣିଥିବା ଢଗ ଓ ଗୀତ ବୋଲିବାକୁ କୁଣ୍ଠିତ ହେଲେ ଏବଂ କହିଲେ ଯେ ମତେ ଦେଖିବା ମାତ୍ରକେ ସେମାନଙ୍କ କଣ୍ଠସ୍ଥ ବଚନମାନ ସେମାନଙ୍କୁ ପଡ଼ୁନ୍ତୁ ନାହିଁ । ଫଳତଃ ଦେଖିଲି ଯେ ସେମାନେ ଏ ପୁସ୍ତକର ସଂଗ୍ରାହିକା ଶ୍ରୀମତୀ ପୀତାମ୍ବରଙ୍କ ନିକଟରେ ଅସଙ୍କୋଚରେ ଢଗମାନ ପାଣିପରି ବୋଲି ଯାଉ ଥାଆନ୍ତି ଓ ମୁଁ କବାଟର ଆଡ଼ୁଆଳରେ ଲୁଚିକରି

ଶୁଣୁଥାଏଁ, କିନ୍ତୁ ମୁଁ ସେମାନଙ୍କ ଆଗରେ ପହଞ୍ଚିବା ମାତ୍ରକେ ସେମାନଙ୍କର ବାର୍ତ୍ତା କେଉଁଆଡ଼େ ହଜିଯାଏ ଏବଂ ସେମାନେ ଲଜ୍ଜା ଓ ସଙ୍କୋଚରେ ମୂକ ପାଲଟିଯାନ୍ତି । ଏହା ଦେଖି ମୁଁ ନିଜେ ଢଗଆଦି ସଂଗ୍ରହ କରିବା ଚେଷ୍ଟାରୁ କ୍ଷାନ୍ତ ହେଲି ଓ ସେ ଭାର ଏ ପୁସ୍ତକର ସଂଗ୍ରାହିକାଙ୍କଠାରେ ନ୍ୟସ୍ତ କଲି ।

ବର୍ତ୍ତମାନ ଓଡ଼ିଆ ଭାଷାର ଖଣ୍ଡିଏ ଶବ୍ଦକୋଶ ନିମନ୍ତେ ଖାଣ୍ଟି ଓଡ଼ିଆ ଶବ୍ଦ ସଂଗ୍ରହ କରିବା ପ୍ରସଙ୍ଗରେ ଦେଶ ପ୍ରଚଳିତ ଢଗ ଓ ପ୍ରବଚନ ଆଦି ଉପକରଣ ସଂଗ୍ରହ କରିବାର ଆବଶ୍ୟକତା ମୁଁ ଉପଲବ୍ଧି କଲି, ଏବଂ ଢଗ ଆଦିରେ ଥିବା କଥ୍ୟ ଓଡ଼ିଆ ଶବ୍ଦ ଓ Idiom (ବିଶିଷ୍ଟ ପ୍ରୟୋଗ ବା ଢଙ୍ଗ) ମାନ ସାଇତିବାର ଉପାଦେୟତା ମୁଁ ଅନୁଭବ କଲି । ଏହି ପ୍ରସଙ୍ଗରେ ଉପରେ ସୂଚିତ ଅସୁବିଧା ଛଡ଼ା ଆଉ କେତେଗୁଡ଼ିଏ ଜଟିଳ ପ୍ରଶ୍ନ ଆସି ପହଞ୍ଚିଗଲା । ମନେକରନ୍ତୁ ଯେ ମୁଁ କୌଶଳକ୍ରମେ ବା କୌଣସି ସ୍ତ୍ରୀଲୋକଙ୍କ ଦ୍ୱାରା ଇତର ଲୋକଙ୍କଠାରୁ ଓ ସ୍ତ୍ରୀ ମହଲରୁ ଢଗଗୁଡ଼ିଏ ସଂଗ୍ରହ କରିବାରେ କୃତକାର୍ଯ୍ୟ ହେଲି । ଆମ ଦେଶର ଇତର ଲୋକେ ଓ ସ୍ତ୍ରୀମାନେ ଅଶିକ୍ଷିତ ଓ ସେମାନଙ୍କ ରୁଚି ମାର୍ଜିତ ନୁହେଁ; ଏପରି ଅବସ୍ଥାରେ ଆମଦେଶରେ ଅନେକ ଅଶ୍ଳୀଳ ଓ କୁରୁଚିପୂର୍ଣ୍ଣ ଢଗମାନ ଚଳୁଥିବାର ଦେଖାଯାଏ । ଏପରି ଅଶ୍ଳୀଳ ଓ ଅରୁଚିକର ଢଗମାନ ସମାଜରେ ଚଳିବାରେ ଆମ ସମାଜ ବାଧା ଦିଏ ନାହିଁ । ଦୋଳଯାତ୍ରାରେ ବୋଲା-ଯାଉଥିବା ହୁରି ଗୀତ ଓ ଡ଼ାହିକା, ପୁରୀରେ ପ୍ରଚଳିତ ଗୋସାଣିଜାତର ଯାଇ ଗୀତ ଓ ବଚନିକା, ପୁରୀ ଭୁବନେଶ୍ୱରର ରଥମାନ ଟଣା ହେବା ପ୍ରସଙ୍ଗରେ ସାରଥୀମାନେ ରଥ ଟାଣିବା ବ୍ୟକ୍ତିମାନଙ୍କୁ ଉତ୍ସାହିତ କରିବା ନିମନ୍ତେ ଅଙ୍ଗୋପାଙ୍ଗଭଙ୍ଗୀ ସହିତ ବୋଲୁଥିବା ବାକ୍ୟ ଓ ପଦମାନ, କେତେକ ରାହାଙ୍ଗ ବ୍ରାହ୍ମଣ ଶାସନରେ ଶୀତଳ-ଷଷ୍ଠୀ ଜାତ ଉପଲକ୍ଷରେ ଢଆରି ବାଣରେ ବାରୁଦ ଖୁନ୍ଦିବା ବ୍ୟକ୍ତିମାନେ ବୋଲୁଥିବା ବାଣବାଡ଼ିଆ ଗୀତ, ଛିଣ୍ଡାଚଣ୍ଡ ଆଦି ଅନେକ ଧଣ୍ଡ ସଣ୍ଡ ଗୀତ ପ୍ରକାଶ୍ୟତଃ ଆମ କାନରେ ପଡ଼ୁଥାଏ । ଏମାନ ଯେ କୁରୁଚିବର୍ଦ୍ଧକ ଏବଂ ଏମାନ ଶୁଣି ତରଳମତି ଯୁବକ, ଯୁବତୀ ଓ ବାଳକ ବାଳିକାମାନଙ୍କ ସୁକୋମଳ ମତି ଚଗଲା ହେବ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଏ ଗୁଡ଼ିକ ମୁଦ୍ରାଯନ୍ତ୍ର ସାହାଯ୍ୟରେ ପୁସ୍ତକାକାରରେ ପ୍ରକାଶିତ କରିବା ଦ୍ୱାରା ଦେଶର ଓ ସମାଜର କଳଙ୍କକୁ ଅମରାକ୍ଷରରେ ସାଇତା ଯିବ ଓ ଏତଦ୍ଦ୍ୱାରା ଅମଙ୍ଗଳ ଘଟିବ । ମଧ୍ୟ ଏବଂଭୂତ ଆବର୍ଜନାଜଡ଼ିତ ପୁସ୍ତକକୁ ଭାଇ ଭଉଣୀ ହାତରେ ପିତା ମାତା ପୁତ୍ର କନ୍ୟାଙ୍କ ହାତରେ, ଗୁରୁ ଶିଷ୍ୟାଙ୍କ ହାତରେ ଦେବାକୁ ଅବଶ୍ୟ କୁଣ୍ଠିତ ହେବେ । ଏ ଗୁଡ଼ିକ ଛପାକଲେ ସଂଗ୍ରାହକ ଭାରତବର୍ଷୀୟ ଦଣ୍ଡବିଧି ଆଇନର Penal Code) ପିଙ୍ଗଳ ଯୋଡ଼ିକୁ ମଧ୍ୟ ଓଟରି ହେବେ । ଆହୁରି ମଧ୍ୟ ଦେଖାଯାଏ ଯେ କେତେଗୁଡ଼ିଏ ଢଗ (ଛିଣ୍ଡା ଗଣ୍ଡ) ଶୁଣିଲା ବେଳକୁ ଅଶ୍ଳୀଳତାବ୍ୟଞ୍ଜକ କିନ୍ତୁ ତହିଁର ଅର୍ଥ ଅଶ୍ଳୀଳ ନୁହେଁ (ଯଥା 'ପାରିମଣୁଣୀ ଫିଟା କର୍ମ; ଯେଉଁ ପୁରୁଷର

ଯେତେକ ଇଚ୍ଛା' :—ନାଁ । ଢଗ ବା ପ୍ରହେଳିକା; ଏଥିର ଅର୍ଥ ତାଳପତ୍ର ପୋଥିକୁ ଡୋର ଫିଟାଇ ତାହା ପଢ଼ିବାକୁ ବସିବା; 'ଲଇ ପଡ଼ିଲା, ଟିଁ କରି ବୋକ ଦେଲା, ଭିଁ କରି ପୂରେଇ ଦେଲା' :—ପ୍ରହେଳିକା ବା ନାଁ ଢଗ, ଏଥିର ଅର୍ଥ ନିଆଁ ଲୁଣ୍ଠାକୁ ଫୁଙ୍କି ଚୂଲି ମୁହଁ ବାଟେ ପୁରାଇଦେଇ ଚୂଲିରେ କୁହୁଳା ପକାଇବା); ଏପରି ସ୍ଥଳରେ ଏ ଶ୍ରେଣୀର ଢଗମାନ ପରିହାର, ପରିବର୍ତ୍ତନ ବା ସଂଶୋଧନ ନ କଲେ ନ ଚଳେ । ଏଣେ ପରିବର୍ତ୍ତନ କରିବାକୁ ଗଲେ ବା ପରିବର୍ଜନ କଲେ ଏ ଶ୍ରେଣୀର ଢଗ ଓ ବଚନମାନଙ୍କରେ ଥିବା ଉପାଦେୟ ଖାଣ୍ଟି ଓଡ଼ିଆ ଶବ୍ଦ ଓ (Idiom) ଢଙ୍ଗମାନ ଭାଷାରେ ଅନ୍ୟତ୍ର ସହଜରେ ବ୍ୟବହୃତ ନହିଁ । ଉଦାହରଣ ସ୍ୱରୂପ ଦେଖନ୍ତୁ ଯେ 'ଗାଢ଼ନିଦ୍ରା'କୁ 'ଗହ୍ମନନ୍ଦ' ବୋଲଯାଏ । ଗୋଟିଏ ଅଶ୍ଳୀଳ ଢଗରେ (ଟୋକି ଶୋଇଥିଲା 'ଗହ୍ମନନ୍ଦ' ) ଏ ଶବ୍ଦଟି ଅଛି । ଅନ୍ୟତ୍ର ଏ ଶବ୍ଦର ବ୍ୟବହାର ମୋ ଦୃଷ୍ଟିରେ ପଡ଼ିନାହିଁ । ସେ ଢଗଟି ପରିହାର କଲେ 'ଗହ୍ମନନ୍ଦ' ପରି ଉପାଦେୟ ଶବ୍ଦର ମାୟା ତୁଟିବାକୁ ହେବ; ଅଥଚ ଢଗଟିକୁ 'ଯଥାଶ୍ରୁତଂ ତଥା ଲିଖିତଂ' କଲେ ପୁସ୍ତକଖଣ୍ଡି କୁରୁଚି ଦ୍ୱାରା ଦୂଷିତ ହେବ । ଢଗରେ ଥିବା ଉପାଦେୟ ଶବ୍ଦଟି ରଖିବାକୁ ହେବ ଅଥଚ ଢଗର ଭାଷା ଓ ଭାବକୁ ଏପରି ବଦଳାଇବାକୁ ହେବ ଯେ, ଯେପରି ତହିଁରୁ ଢଗର ମୌଳିକତା ଓ ଗ୍ରାମ୍ୟ ସରଳତା ଲୋପ ନ ପାଏ । ଏ ପୁସ୍ତକରେ ଏପରି ଚେଷ୍ଟା କେତେଦୂର ଫଳବତୀ ହୋଇଅଛି ତାହା ସୁବିଜ୍ଞ ପାଠକମାନେ ବିଚାର କରିବେ ।

ପ୍ରତ୍ୟେକ ଭାଷାରେ 'ଗୁଡ଼ିଏ ଲେଖାଏ (Idiom) ବିଶିଷ୍ଟ ପ୍ରୟୋଗ ବା ଢଙ୍ଗ ଅଛି । ଆମ ଭାଷାରେ ମଧ୍ୟ ଅଛି । 'Idiom' ଶବ୍ଦର ପ୍ରତିଶବ୍ଦ ଆମ ଭାଷାରେ ଅବଧି ଚଳି ନାହିଁ । କିନ୍ତୁ ଏହାର ଭାବାର୍ଥ 'ଏକ ଭାଷା ସୁଲଭ ବିଶିଷ୍ଟ ପ୍ରୟୋଗ, ଢଙ୍ଗ ବା ଭଙ୍ଗୀ ।' ଏ ପ୍ରୟୋଗମାନ ପ୍ରତ୍ୟେକ ଭାଷାର ନିଜସ୍ୱ । ଏମାନ ଅନ୍ୟ ଅନ୍ୟ ଭାଷାକୁ ଅନୁବାଦ କରିବାକୁ ବସି ତହିଁର ଆକ୍ଷରିକ ବା ଶବ୍ଦଗତ ଅନୁବାଦ କଲେ ଉକ୍ତରୂପ ଅନୁବାଦ ନିଷ୍ପନ୍ନ ପଦ ବା ବାକ୍ୟ 'କିଂଭୂତକିମାକାର' ହୋଇ ପଡ଼ିବ, କିମ୍ବା ତହିଁର ଅର୍ଥ ଖୋଲସା ହୋଇ ପାରିବ ନାହିଁ । [ଯଥା –ମୁଁ ତାଙ୍କ ସଙ୍ଗେ ସୁଖ ଦୁଃଖ ହେଉଥିଲି ; ସେ ପିଲାଟି ଗୋଟିଏ ଗୁଣ୍ଡିଲରେ ଗଢ଼ା ; ତୋ କାଚ ବଳ, ହଉ; ସେ ମତେ ଭାର ଦେଖି ପାରୁଛି; ସେ ମତେ ସୁଙ୍ଘ ପାଉନାହିଁ; ହାତରୁ ଖାଇ ଘୋଡ଼ା ଆଗରେ ଡେଇଁବା ; ମୁଁ ଚକ୍ଷୁଲଜ୍ଜା ଏଡ଼ି ପାରୁନାହିଁ; ତା ଲାଗି ସୁନା ଉହ୍ନ ଚୂନା କଲି । ଇଂରାଜୀ ଜାଣିବା ପାଠକେ ଏଥିରୁ ଉଓଟି ଗୋଟିଏ ବାକ୍ୟକୁ ଅନ୍ୟ ଭାଷାକୁ ଶବ୍ଦଗତ ଅନୁବାଦ କଲେ ମୋ ମନ୍ତବ୍ୟର ସତ୍ୟତା ଅନୁଭବ କରିପାରିବେ] ବା ପ୍ରୟୋଗମାନଙ୍କରୁ ଭାଷାର ଗଠନ ରୀତି ଓ ଇତିହାସ ଯେ କେବଳ ଜଣାପଡ଼େ ତାହା ନୁହେ । ଏଥିରେ ସମାଜର ରୀତି ନୀତି ପ୍ରତିଫଳିତ ହୋଇ ରହିଥାଏ । (Idiom) ବା ପ୍ରୟୋଗ ବିରୁଦ୍ଧ ବାକ୍ୟମାନ ଉକ୍ତ ଭାଷାଭିଜ୍ଞ ବ୍ୟକ୍ତିଙ୍କ କାନକୁ

କର୍କଶ ଲାଗେ । ନୂଆ ଭାଷାଟିଏ ଶିଖିଯିବା ସହଜ, କିନ୍ତୁ ଭାଷାର ବିଶିଷ୍ଟ ପ୍ରୟୋଗ ବା ଭଙ୍ଗୀ ବା ଢଙ୍ଗଗୁଡ଼ିକ ଆୟତ୍ତ କରିବା କାଠିକର ପାଠ । ପାଶ୍ଚାତ୍ୟ ଶିକ୍ଷାବିସ୍ତାର ସଙ୍ଗେ ସଙ୍ଗେ କଥିଆ ଓଡ଼ିଆ ପ୍ରୟୋଗଗୁଡ଼ିକ କ୍ରମଶଃ ବିକୃତ ଓ ମିଶା ଓ ଅବ୍ୟବହୃତ ହୋଇ ଯାଉଅଛି । ଏହା ମୁଁ ନିଜେ ଅନୁଭବ କରିଅଛି । ମୋର ହେତୁ ପାଇବା ଦିନରୁ ଅର୍ଥାତ୍ ଗତ ୪୦ ବର୍ଷ ଭିତରେ ଗୁଡ଼ିଏ କଥିଆ ଓଡ଼ିଆ ପ୍ରୟୋଗ (Idiom) ଲୁପ୍ତପ୍ରାୟ ହୋଇ ତହିଁ ପରିବର୍ତ୍ତିରେ ଅନ୍ୟଭାଷାର ପ୍ରୟୋଗ ବା ଭଙ୍ଗୀ ଆଧୁନିକ ପଢ଼ିଆଙ୍କ ମୁହଁରୁ ଶୁଣାଯାଉଛି ; ଏମନ୍ତକି ଏପରି ଶିଷ୍ଟ ବହିର୍ଭୂତ ପ୍ରୟୋଗ ମୋ ଗରହୁସିଆରି ବେଳେ ମୋ ମୁହଁରୁ ମଧ ବାହାରି ପଡ଼ୁଅଛି । [ ‘ସୁଖ ପାଇବା’ ସ୍ଥଳରେ ଭଲପାଇବା, ଅସୁକୁମାଡ଼ିବା’ ସ୍ଥଳରେ ଘିନାଲାଗିବା, ‘ଭେଟହେବା ସ୍ଥଳରେ ଦେଖାହେବା, ‘ଅସଜଡ଼ହେବା’ ସ୍ଥଳରେ ବିଗିଡ଼ିବା, ‘ମୂଳପାଠ ଲାଗିବା’ ସ୍ଥଳରେ ‘ମୟୂଷା ଖାଟିବା’, ବେଠି କରିବା’ ସ୍ଥଳରେ ବେଗାରି ଖାଟିବା, ‘ପାଗପଟୁକା ସ୍ଥଳରେ ପୋଷାକ ଇତ୍ୟାଦି ଏଥିର ଉଦାହରଣ ] ଆଧୁନିକ ଶିକ୍ଷା ଓ ପେଟପୋଷା ଓ ଅନୁରୋଧରେ ଆମଦେଶ ଲୋକେ ଯେତିକି ଅନ୍ୟ ଦେଶ, ସମାଜ ଓ ଭାଷା ସଙ୍ଗେ ଗୋଳେଇ ପୋଳେଇ ହେଉଛନ୍ତି ସେତିକି ଅନ୍ୟ ଭାଷାର ପ୍ରଭାବ, ଭଙ୍ଗୀ ଓ ସ୍ୱାତନ୍ତ୍ର (ଭାଷାର କାହିଁକି, ଜାତିର ଓ ସମାଜର ରୀତି, ନୀତି, ବେଶଭୂଷା) ଲୋପ ପାଉଅଛି ଏହା ଅନୁଭୂତ ସତ୍ୟ ଅଟେ । ଏଥିପାଇଁ ଏଗୁଡ଼ିକ ଲିପିବଦ୍ଧ ହୋଇ ଭାଷାର ଭଣ୍ଡାରରେ ଆପାତତଃ ପେଡ଼ିଲୁଗା ଭଳି ଥାଇତା ହୋଇ ରହିବା ଏକାନ୍ତ ଆବଶ୍ୟକ ।

ଏହି ଆବଶ୍ୟକତା ଉପଲବ୍ଧି କରି ଭାଷା ପ୍ରଚଳିତ ଢଗଢ଼ମାଳି ପ୍ରବଚନ ଓ ଭାଷା ସୁଲଭ ପ୍ରୟୋଗ ଓ ବିଶିଷ୍ଟ ପଦଗୁଡ଼ିକ ଯଥାଶକ୍ତି ସଂଗ୍ରହ କରି ରଖିବା ନିମନ୍ତେ ମୁଁ ଅନେକ ଦିନରୁ ମନ ବଳାଇଥିଲି । ବର୍ତ୍ତମାନ ଓଡ଼ିଆ (dictionary) ଶବ୍ଦକୋଶ ସଙ୍କଳନ ଉପଲକ୍ଷରେ ଦେଖିପାରିଲି ଯେ ଶବ୍ଦକୋଷର ବର୍ଣ୍ଣକ୍ରମ ମଧ୍ୟରେ ଏକାଧିକ ଶବ୍ଦବିଶିଷ୍ଟ ଢଗ ବା ପ୍ରୟୋଗମାନଙ୍କୁ କେଉଁ ବର୍ଣ୍ଣ ତଳେ ଭୁକ୍ତେଇବାକୁ ହେବ ? ଏହା ଗୋଟିଏ ବିଷମ ସମସ୍ୟା ହୋଇଉଠିଲା । [ ଯଥା—ବଡ଼ ବଡ଼ ଗଲେ ଫସର ଫାଟି, ସାନ ସାନ ଅଇଲେ ବେପର ବାଟି, ଧନ ତୁଣ୍ଡରେ ଛେଳି କୁକୁର ] ଏମାନ କାହା ତଳେ ଲେଖିବାକୁ ହେବ ? ମୁଁ ଯଦି ଘରସାହାବ ବୁଝାମଣା କରି ମୋ ମରଜି ମୁତାବକ କୌଣସି ଢଗକୁ ଉକ୍ତ ଢଗରେ ଥିବା ଶବ୍ଦବିଶେଷର ଆଦ୍ୟ ବର୍ଣ୍ଣକ୍ରମ ତଳେ ସନ୍ନିବେଶିତ କରିଯିବ, ତେବେ ଯେଉଁ ବ୍ୟକ୍ତି ଡିକ୍‌ସ୍‌ନାରୀରୁ ଢଗଟି ଖୋଜିବେ ସେ କେଉଁ ଶବ୍ଦ ତଳେ ତାହା ହାବୁଡ଼େ ପଡ଼ିବ ବୋଲି ଦର୍ଶିବେ ? ‘ଧନ ତୁଣ୍ଡରେ ଛେଳି କୁକୁର’ ଢଗ ‘ଧନ’ ‘ତୁଣ୍ଡ’ ‘ଛେଳି’, ‘କୁକୁର’, ଏହି ଚାରିଗୋଟି ଶବ୍ଦ ମଧ୍ୟରୁ କେଉଁ ଶବ୍ଦ ତଳେ ପୁରାଇବି, ଏହା ଠିକଣା କରି ନପାରି ଯେବେ ମୁଁ ଏହାକୁ ବୁକ୍ଲେଟି ଯାଗାରେ ଲେଖିବାକୁ ଯାଏଁ, ତେବେ

ଉତ୍କର୍ଷ୍ ନାଗର ଆକାର ବଢ଼ିଯିବ । ଏ ଅସାଧ୍ୟ ସମସ୍ୟାରୁ ଉଦ୍ଧାର ନ ପାଉଣୁ ଆହୁରି ଏକ ଅଖାଡ଼ୁଆ ଧକ୍କା ଆସି ପହଞ୍ଚିଗଲା । ଆମ୍ଭେମାନେ କଥା ପ୍ରସଙ୍ଗରେ ବଙ୍ଗଳା, ହିନ୍ଦୁସ୍ଥାନୀ, ପାରସୀ ଓ ସଂସ୍କୃତ ଆଦି ଭାଷାର ଢଗ ଓ ପ୍ରବଚନମାନ ଉଦ୍ଧୃତ କରିଥାଉଁ । [ଯଥା—(ସଂସ୍କୃତ) ଶିରୋବେଦନାଶ୍ଚି ଶିରୋବ୍ୟଥା, ଅପରେ କିଂ ଭବିଷ୍ୟତି; (ହିନ୍ଦୁସ୍ଥାନୀ) ମାରେ ସିପାହୀ ନାମ୍ ସରଦାରକା, ଗଛମେ କଠଲ୍ ଓଠମେ ତେଲ୍; (ବଙ୍ଗଳା) ଯାର କନ୍ୟେ କରି ଚୁରି ସେଇ ବଲେ ଚୋର୍, ଯୋର୍ ଯାର ମୁଲୁକ ତାର୍, (ପାରସୀ) ଦସ୍ ମିଲ୍କାମେ ଗଲତ୍, ତେରି ମେରି ସବ୍ କ୍ୟା କରତେ କାଜ) ଢଗ ଓ ପ୍ରବଚନ ସଂଗ୍ରହ ମଧ୍ୟରେ ଏଗୁଡ଼ିକ ଭୁକ୍ତ ନହେଲେ ଆମ ଦେଶ ପ୍ରଚଳିତ ଢଗ ଓ ଲୌକିକ ପ୍ରବଚନମାନଙ୍କ ସଂଗ୍ରହ ପୂର୍ଣ୍ଣାଙ୍ଗ ହେବ ନାହିଁ; ଏଣେ ଭାଷାର ଶବ୍ଦକୋଷରେ ଅନ୍ୟ ଭାଷାର ଢଗ ଓ ବାକ୍ୟମାନ ସ୍ଥାନ ପାଇଲେ, ଭାଷାଗତ ଦୃଷ୍ଟିରେ ଭାଷାବିତ୍ (Linguist)ମାନେ ନାକ ଟାଉଁ ଟାଉଁ କରିବେ । ଏହିସବୁ ଦୋଷାଇରେ ପଡ଼ି ମୁଁ ସ୍ଥିର କଲି ଯେ ଲୋକମୁଖରେ ଚଳୁଥିବା ଢଗଢ଼ମାଳି, ପହେଲି, ପ୍ରବଚନ, ପ୍ରବାଦ, ଉକ୍ତିଖବଚନ, ଉପାଣ, ଶ୍ଳୋକାଂଶ ଓ ବିଶିଷ୍ଟ ପ୍ରୟୋଗମାନଙ୍କ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ଓ ସଙ୍କଳନ ଆବଶ୍ୟକ ।

ଆମ୍ଭେମାନେ ଦୈନନ୍ଦିନ ଜୀବନରେ, କଥା ଓ କାର୍ଯ୍ୟ ପ୍ରସଙ୍ଗରେ, ହାସ ପରିହାସରେ, ନାଟ ତାମସାରେ, କ୍ରୀଡ଼ା କଉତୁକରେ, ବ୍ୟଙ୍ଗ ବିଦ୍ରୁପରେ, ଉପଦେଶ, ଗାଳି, ଉଲଗୁଣା ଓ ଉଲ୍ଲାଖ ଦେବାରେ, ସମାଲୋଚନା କରିବାରେ, ଅବୁଝା ମନକୁ ବୁଝାଇବାରେ, ଅବାଗିଆ ଲୋକଙ୍କୁ ବାଗେଇବାରେ, କ୍ଷମର ବାଧାକୁ ଲାଘବ କରିବାରେ, ଋତୁକାଳ ଘଟଣା, କୃଷି ଓ ଗୋ ମେଷାଦିଙ୍କୁ ପରୀକ୍ଷା କରିବାରେ, ପ୍ରଶ୍ନର ଉତ୍ତରରେ, ଠାରଠୁରରେ, ସନାତନ ସତ୍ୟ ଓ ଅନୁଭବମାନ ପ୍ରକାଶ କରିବାରେ; ଶୋକ କରିବାରେ; ଶୁଭକର୍ମ ଅନୁଷ୍ଠାନରେ; ଆଗତ ଭବିଷ୍ୟକୁ କଳନା କରିବାରେ ଯେଉଁ ଯେଉଁ ଢଗ, ପ୍ରବଚନ, ଡାକର୍ଷିବଚନ, ଖନା ବଚନ, 'ଶାହାସ୍'-ବଚନ, ଡାକ, ବୋଲ୍ ପଦ, ଶ୍ଳୋକ, କବିତା, ଢୁଆ, ଦାଇକା, ବଚନିକା କାହଣୀ ଆଦି କହିଥାଉଁ ବା ଶୁଣିଥାଉଁ ସେମାନ ନାନା ସ୍ଥାନରୁ, ନାନା ଦେଶରୁ ନାନା ମୁଖରୁ, ନାନା ଶାସ୍ତ୍ର ପୁରାଣାଦିରୁ, ନାନା କାବ୍ୟ ଗ୍ରନ୍ଥାଦିରୁ ଗୋଟିଆ ଗୋଟେଇ ହୋଇ ଆସିଅଛି । ଏଗୁଡ଼ିକ ପନ୍ଦରପଣ ଉଣେଇଶି ଗଣ୍ଡା 'ପରଭୃକ୍ନଲୀ' ଶାସ୍ତ୍ର, ପୁରାଣ କାବ୍ୟ, ରଚନା ଆଦି ପାଠ କରୁ କରୁ ବା ଶୁଣୁ ଶୁଣୁ ଯେଉଁ ଅଂଶ, ଛନ୍ଦ, ପ୍ରସଙ୍ଗ ବା ଉପାଖ୍ୟାନଟି ଶ୍ରୋତାଙ୍କର କୌଣସି ଉପସ୍ଥିତ ଘଟଣା ବା ମନୋଗତ ଭାବକୁ ଗଛି ହୋଇଯାଏ ଓ ଯହିଁରେ ତାଙ୍କ ମନ ମାନି ଯାଏ ଓ ଯହିଁରେ ଉପଯୋଗିତା ବା ସାରବସ୍ତୁ ସମ୍ବନ୍ଧେ ଏକାଧିକ ବ୍ୟକ୍ତି ଏକମତ ହୋଇ ଯାଆନ୍ତି, ତାହା ଏକ ଲୋକ ମୁହଁରୁ ଅନ୍ୟ ମୁହଁକୁ ଚଳ ପ୍ରଚଳ ହୋଇ ଢଗ ବା ପ୍ରବଚନ ଆକାର ଧାରଣ

କରେ । ଏ ପୁରୁଷରେ ଯାହା ପୋଥିଗତ ବିଦ୍ୟାରୂପରେ ଥାଏ ତାହା ଆର ପୁରୁଷକୁ ଢଗ ପ୍ରବଚନ ବା ମହାଜନ-ବଚନ ଆକାର ଧାରଣ କରି ଦେଶତମାମ ଖେଳେଇ ହୋଇଯାଏ । ଏହି ପ୍ରକ୍ରିୟା ବର୍ତ୍ତମାନ ପୁରୁଷରେ, ଆମ ଆଖି ଆଗରେ ଓ ପରୋକ୍ଷରେ ଚାଲିଅଛି ଓ ଚାଲୁଥିବ । ଏଗୁଡ଼ିକ ଲିପିବଦ୍ଧ ହୋଇ ନ ରହିଲେ ଯୁଗର ଓ ସମାଜର ଗନ୍ଧ ଓ ରୁଚି ପରିବର୍ତ୍ତନ ସଙ୍ଗେ ଏଥି ମଧ୍ୟରୁ ଗୁଡ଼ିଏ ଲୋପ ପାଇଯିବ । ଏଗୁଡ଼ିକ ଖାଲି ସାଉଣ୍ଟା ସାଉଣ୍ଟି କରି ସାଇତିଲେ ହେବ ନାହିଁ, ଅବୋଧ ବା ସନ୍ଦେହଜନକ ସ୍ଥଳରେ ଏଥିର ଅର୍ଥ, ମୂଳ, ପ୍ରସଙ୍ଗ ବା ବ୍ୟବହାରସ୍ଥଳ ସୂଚିତ ନ ହେଲେ ଏ ସଂଗ୍ରହର ମୌଳିକ ଉଦ୍ଦେଶ୍ୟ ସାଧିତ ହେବ ନାହିଁ ।

ଆହୁରି ମଧ୍ୟ ଦେଖାଯାଏ କେତେଗୁଡ଼ିଏ ପଦକୁ ମାଇପେ ଢଗରୂପେ, କେଳା କେଳୁଣୀମାନେ ଗୀତ ଓ ଦାଇକାରୂପରେ, ବାଉରିମାନେ ଘୁମୁରି ସାହାଯ୍ୟରେ, କେଉଟମାନେ ଚଇତିଘୋଡ଼ା ନାଟରେ, ଇତର ଲୋକେ ଝାମୁନାଟରେ, କୃଷକମାନେ ହଳ ବୁଲାଇବା ବେଳେ ବୋଲି ଥାଆନ୍ତି । ଏପରି ସ୍ଥଳରେ ଗୋଟିଏ ବାକ୍ୟକୁ ଏକାଧିକ ସ୍ଥଳରେ ପୁନଃ ପୁନଃ ଉଲ୍ଲେଖ ନ କରି ଗୋଟିଏ ସ୍ଥାନରେ ଲେଖି ଅନ୍ୟ ବ୍ୟବହାର ମାନ ସୂଚନା କରିବା ଆବଶ୍ୟକ ।

ଢଗ ଆଦି ପୁସ୍ତକାକାରରେ ସଂଗ୍ରହ କରିବାକୁ ବସିଲେ ଆଉ ଗୋଟିଏ ସମସ୍ୟା ଆସି ହାବୁଡ଼ିଯାଏ । ଲେଖାରେ ବା ପୁସ୍ତକାଦିରେ ଅନେକ ଶବ୍ଦ ଓ ବାକ୍ୟ ଯେଉଁ ଆକାରରେ ଲିପିବଦ୍ଧ ହୁଏ, କଥା ଭାଷା ବେଳେ ସେମାନ ଭିନ୍ନ କ୍ରମରେ ଉଚ୍ଚାରିତ ହୁଏ ( ଯଥା—ଲେଖା ବେଳେ ଆମ୍ଭେ ସ୍ଥଳରେ କଥାରେ ଅମେ; ତୁମ୍ଭେ ସ୍ଥଳରେ ତୁମେ, ତମେ, ଥମେ, ତେମେ ; ଗଞ୍ଜାଇ ସ୍ଥଳରେ ଗଞ୍ଜେଇ ; ପକାଇବା, ଗଡ଼ାଇବା, ଛଡ଼ାଇବା, ଖୁଆଇବା, ପିଆଇବା, ସ୍ଥଳରେ ପକେଇବା, ଗଡ଼େଇବା, ଛଡ଼େଇବା, ଖୋଇବା, ପେଇବା; ହେବ, ନେବ, ଦେବ ସ୍ଥଳରେ ହବ, ନବ ଦବ ; ସେଠାରେ ସ୍ଥଳରେ ସେଠେଇଁ, ସେଠି, ସେଠିଁ, ସେଇଠିଁ ; ସେଠାରୁ ସ୍ଥଳରେ ସେଠୁ, ସେଠୁଁ, ସେଇଠୁଁ; କେଉଁଆଡ଼େ ସ୍ଥଳରେ କୁଆଡ଼େ, କୋଉଆଡ଼େ; ସଙ୍ଗରେ ସ୍ଥଳରେ ସାଙ୍ଗେ, ସାଙ୍ଗେରେ । ଢଗ ଓ ପ୍ରବଚନ ଆଦି ଯେଉଁ ଆକାରରେ ଲୋକମୁଖରୁ ଶୁଣାଯାଏ ଓ ଘରେଇ କଥା ସାଙ୍ଗରେ Colloqual languageକୁ ଶିକ୍ଷିତମାନେ ମଧ୍ୟ ଯେଉଁପରି ଉଚ୍ଚାରଣ କରନ୍ତି, ସେହି ଆକାରରେ ଲେଖା ନ ହେଲେ ସେମାନେ ସ୍ମୃତି ଓ କଥିତ ବଚନରୁ ପୃଥକ ହୋଇ ପଡ଼ିବ ଓ ସମସ୍ତ ସମୟରେ ପଦରେ ମଧ୍ୟ ଦୋଷ ଘଟିବ ( ଯଥା : 'କହିବ କାହାଗେ ଶୁଣିବ କିଏ, ପଇତା ଅବୁଝା ମାରିବ ସିଏ'; ଧୂଳିଆ ଗୁଣ୍ଡିଟି କାଦୁଆ ଗନ୍ଧା, ଡାକ ବୋଲେ ଥାନ ହାଟକୁ ନମା (ନେମା)'] । ମୋର ମତ ଏହି ଯେ ଲୌକିକ

ବଚନମାନ ଯେଉଁ ଆକାରରେ ଲୋକ ମୁଖରେ ଶୁଣାଯାଏ ଓ ବୋଲଯାଏ ସେମାନ ସେହି ଆକାରରେ ଉଦ୍ଧାର କରିବା ସଂଗ୍ରାହକଙ୍କର କର୍ତ୍ତବ୍ୟ । ଯେଉଁ ଶବ୍ଦ ଓ ବାକ୍ୟାଂଶମାନ ଭିନ୍ନ ଭିନ୍ନ ଅଞ୍ଚଳରେ ଓ ଭିନ୍ନ ଭିନ୍ନ ଲୋକଙ୍କ ମୁହଁରୁ ଏକାଧିକ ଆକାରରେ ଶୁଣାଯାଏ, ପୂର୍ବବାକ୍ୟମାନଙ୍କ ବିଭିନ୍ନ ଆକାରମାନଙ୍କୁ ସ୍ୱତନ୍ତ୍ର ସ୍ୱତନ୍ତ୍ର ଛନ୍ଦରେ ନ ଲେଖି ବନ୍ଧନୀ ପ୍ରୟୋଗଦ୍ୱାରା ଏକଛନ୍ଦ ବା ଧାଡ଼ିଦ୍ୱାରା ଗୋଟିଏ ଢଗର ଏକାଧିକ ଆକାର ଲିପିବଦ୍ଧ କଲେ, ପୁସ୍ତକର କଳେବରର ଅଯଥା ବୃଦ୍ଧିର ଆଶଙ୍କା କମିଯିବ ।

ଯଥା :—

୧ । ଅନ୍ଧାର ଘରେ କାଣୀ ଝମକେ, ଯାହା ପାଏ ତାହା ଅଣ୍ଟାରେ ଯାକେ ।
୨ । ଅନ୍ଧାର ଘରେ କଣା ଝମକେ, ଯାହା ପାଉଥାଏ ଅଣ୍ଟାରେ ଯାକେ ।
୩ । ଅନ୍ଧାର ଘରେ କାଣୀ ବିଲସେ, ଯାହା ପାଏ ତାହା ଅଣ୍ଟାରେ ଖୋସେ ।
୪ । ଅନ୍ଧାର ଘରେ କଣା ବିଲସେ, ଯାହା ପାଉଥାଏ ଅଣ୍ଟିରେ ଖୋସେ ।

ଏହି ଚାରିଗୋଟି ଆକାରକୁ ବନ୍ଧନୀ ସାହାଯ୍ୟରେ ଗୋଟିଏ ଛନ୍ଦରେ ଲେଖା-ଯାଇ ପାରେ ଯଥା:—

"ଅନ୍ଧାର ଘରେ କଣା (କାଣୀ) ଝମକେ (ବିଲସେ), ଯାହା ପାଉଥାଏ ( ଯାହା ପାଏ ତାହା) ଅଣ୍ଟାରେ (ଅଣ୍ଟିରେ) ଯାକେ (ଖୋସେ) ।"

ଶାସ୍ତ୍ରବଚନମାନଙ୍କ ପାଠାନ୍ତର ମଧ୍ୟ ଏହିପରି ବନ୍ଧନୀ ସାହାଯ୍ୟରେ ଲେଖା ଯାଇପାରେ ।

ଏହିଠାରେ ଆଉରି ଗୋଟିଏ ଧନ୍ଦକା କଥାର ସୂଚନା କରିବା । ଢଗ (ଢେଗ) ଢମାଳି, ପହେଳି, ସମସ୍ୟା ଉଲୁଗୁଣା, ଢଗାଣ, ବ୍ୟଙ୍ଗ, ପ୍ରବାଦ, ପ୍ରବଚନ, ଉକ୍ଲାଖ, ନାଁଆଦିଆ କମ୍ବଦନ୍ତୀ, କୁସଂସ୍କାର, ଚୁଆକଥା, ନଥା, ହାସ ପରିହାସ, ଥଟ୍ଟା ତାମସା, ବିଦ୍ରୂପ ନ୍ୟାୟ, ଛାନ୍ଦାଗଣ୍ଡ, ଉପଦେଶ, ଅନୁଭବ ଶାସ୍ତ୍ରବଚନ, ଦାଇକା (ଡାଇକା, ଡାହିକା ଦାୟେକା) ଇତ୍ୟାଦି ଅନେକଗୁଡ଼ିଏ ଶବ୍ଦ ଲୌକିକ ସାହିତ୍ୟର ଅନ୍ତର୍ଗତ ଏଥିରୁ ଅନେକଗୁଡ଼ିଏ ଶବ୍ଦ ଭିନ୍ନ ଭିନ୍ନ ଅର୍ଥ ଓ ଭାବବ୍ୟଞ୍ଜକ, କିନ୍ତୁ ଆଜି ପର୍ଯ୍ୟନ୍ତ କୌଣସି ଶବ୍ଦକୋଷରେ ଏ ଶବ୍ଦମାନଙ୍କର ପ୍ରଭେଦ ସୁସ୍ପଷ୍ଟରୂପେ ସୂଚିତ ହୋଇ ନାହିଁ । ଫଳତଃ ଲୋକେ ଢଗ ସ୍ଥଳରେ ଢମାଳି, ପ୍ରବଚନ ସ୍ଥଳରେ ଢଗ, ପହେଳି ସ୍ଥଳରେ ନାଁଦିଆ ଆଦି ଯଥା ତଥା ଭାବରେ ବ୍ୟବହାର କରିଥାନ୍ତି । ଦେଖାଯାଉ ଯେ 'ପହେଳି' ଶବ୍ଦ ପ୍ରହେଳିକାର ଅପଭ୍ରଂଶ । ପ୍ରହେଳିକାର ଅର୍ଥ ଅବୋଧ୍ୟ ପ୍ରଶ୍ନ ବା ସମସ୍ୟା କିନ୍ତୁ ଦେଖାଯାଏ ଯେ ଉପଦେଶପୂର୍ଣ୍ଣ ଓ ଅନୁଭବସିଦ୍ଧ ପଦମାନଙ୍କୁ ଲୋକେ 'ପହେଳି' ବୋଲି କହନ୍ତି । ଦିନାଇ ଦାସଙ୍କ ଉକ୍ତିରୂପ 'ପ୍ରବଚନ'କୁ ଯେ କେତେ ପହେଳି ବୋଲି

ଭଣିତା କରିଅଛନ୍ତି । ମୁଁ ଏସବୁ ବିଭିନ୍ନ ଭାବବ୍ୟଞ୍ଜକ ଶବ୍ଦମାନଙ୍କର ଅର୍ଥ ବିଶଦରୂପେ ଜାଣେ ବୁଝିପାରି ନାହିଁ, ତେବେ ମୋଟା ମୋଟି ନିମ୍ନଲିଖିତ ଆଶ୍ରୟରେ ମୁଁ କେତେକ ଶବ୍ଦକୁ ଶ୍ରେଣୀଭୁକ୍ତ (clasify) କରିଅଛି । ମୋର ଏ ପ୍ରସଙ୍ଗ ଉତ୍ଥାପନ କରିବାର ଉଦ୍ଦେଶ୍ୟ ଏହି କି, ଆଧୁନିକ ଶିକ୍ଷିତ ସାହିତ୍ୟଭକ୍ତମାନଙ୍କର ଏହି ଅଭାବ ପ୍ରତି ଦୃଷ୍ଟି ପଡ଼ିଲେ ଢଗଢମାଳୀ ଆଦି ଶବ୍ଦମାନଙ୍କର ପ୍ରଭେଦ ଦିନେ ସୁସ୍ପଷ୍ଟ ହୋଇ ପାରିବ । ଦେଖାଯାଏ ଯେ 'ଢଗ'ମାନଙ୍କରେ ଯତିପାତ ଓ ଉପଧା ମିଳାଇବାର ଚେଷ୍ଟା କରା ଯାଇଥାଏ, ଏମନ୍ତ କି ଶେଷପଦର ଯତି ଓ ଉପଧା ମିଳାଇବା ନିମନ୍ତେ ଗୋଟିଏ ନିରର୍ଥକ ପ୍ରଥମ ପାଦ ମଧ୍ୟ 'ଢଗ'ରେ ବୋଲାଯାଇଥାଏ [ଯଥା :—କୁକୁଡ଼ାକୁ ଦେଲି ଚାଉଁ, ମୁଖ ଦରଶନ କରିବି ବୋଲି ଜାଣେ ମାଗୁଥିଲି ଜାଉଁ ; ଉନ୍ମଳ ମନ୍ତ୍ରି, ତୋ ପାଇଁ ହେଲଣି କେତେ ଗର୍ଜ୍ଜି ; ନଈରେ ପଡ଼ିଲା ବେଲ; ମୁଁ ତ ଖୋସିଛି ମନ୍ଦାରଫୁଲ, ତତେ ଲାଗିଅଛି ଗେଲ] । 'ଢମାଳୀ'ରେ ଯତି ବା ଶେଷବର୍ଣ୍ଣ ମେଳ ନହୋଇ ବାକ୍ୟ ବ୍ୟବହାର କରାଯାଇଥାଏ [ଯଥା : —କାଲି ଗାଈର ଭିନ୍ନେ ଗୋଠ; ଜ୍ୱର ହୋଇ ଫେର ପାଇକପଣ ! ବଗର ପୁଣି ଗୁଡ଼ଖାଇ ]। 'ପହଳୀ' ପ୍ରହେଳିକା ଶବ୍ଦର ଅପଭ୍ରଂଶ ହେଲେ ମଧ୍ୟ ତାହା 'ଢଗ' ସ୍ଥାନରେ ବ୍ୟବହୃତ ହୁଏ । ନାଁ' ଦିଆ, ସମସ୍ୟା ଓ ପ୍ରହେଳିକା'ରେ ବକ୍ତା କୂଟ ପ୍ରଶ୍ନ କରି ଶ୍ରୋତାଠାରୁ ଉକ୍ତ ପ୍ରଶ୍ନର ମୀମାଂସାସୂଚକ ଉତ୍ତର ଅପେକ୍ଷା କରନ୍ତି । 'ନ୍ୟାୟ', 'ଉଲ୍ଲାଖ'ରେ ଉପସ୍ଥିତ ଘଟଣା ସଙ୍ଗେ ବକ୍ତା ଅନ୍ୟ ଘଟଣାକୁ ବା ଗଳ୍ପକୁ ତୁଳନା କରନ୍ତି ବା ଉପମା ଦେଇ ଥାଆନ୍ତି । [ଯଥା;—ପାଣିରେ ଘର କରି କୁମ୍ଭୀର ସାଙ୍ଗେ ଅପ୍ରୀତି ହେବା ନ୍ୟାୟ; ଛିନ ତୁଣ୍ଡରେ ଛେଳି କୁକୁର ନ୍ୟାୟ ; ତା କଥା ପାଣିରେ ଗାର] । 'ବ୍ୟଙ୍ଗ', 'ବିଦ୍ରୂପ'ରେ ବକ୍ତା, ଶ୍ରୋତାଙ୍କୁ ବା ଉପସ୍ଥିତ ଘଟଣାକୁ ବା ବ୍ୟକ୍ତିବିଶେଷଙ୍କୁ କଟାକ୍ଷ କରି ବାକ୍ୟ ପ୍ରୟୋଗ କରନ୍ତି । 'ଗଞ୍ଜଣା', 'ଛଳ' 'ଢିଲୁଗୁଣା', 'ଉଘାଣ', ସ୍ତ୍ରୀମାନେ କଳହ ଉପଲକ୍ଷରେ ପରସ୍ପର ପ୍ରତି ପ୍ରୟୋଗ କରିଥାନ୍ତି । 'ଖନାବଚନ', 'ଡାକର୍ଷିବଚନ' ଆଦି କୃଷି, ବର୍ଷା, ଜ୍ୟୋତିଷ ଆଦି ସମ୍ବନ୍ଧେ ପୂର୍ବର ମହାଜନମାନଙ୍କରେ ପଦ । 'ପ୍ରବାଦ' 'କିମ୍ବଦନ୍ତୀ'. 'ଲୌକିକ ବିଶ୍ୱାସ', 'ସଂସ୍କାର' ଏମାନ ସାଧାରଣଙ୍କ ମନରେ ଦୃଢ଼ବଦ୍ଧ ଧାରଣା । ଉପଦେଶ, ପ୍ରବଚନ, ନୀତିବାକ୍ୟ, ସତ୍ୟ ଅନୁଭବ ଓ ସାର ବଚନ' ଏମାନେ ଏକ ଶ୍ରେଣୀର ଓ ଏଥିରେ ଅନୁଭବସିଦ୍ଧ ବିଷୟମାନ ସଞ୍ଚିତ ହୋଇଥାଏ । 'ଅନୁଚିନ୍ତା, ଅନୁଶୋଚନା, ବିଳାପୋକ୍ତି' ଏମାନ ମଧ୍ୟ ଏକ ଶ୍ରେଣୀର; 'ହାସ ପରିହାସ ଥଟ୍ଟା କୌତୁକ, ସ୍ଥାନ ଓ ବ୍ୟକ୍ତିଙ୍କ ନାମାନୁପ୍ରାସରେ ରଚିତ ପଦ । ଯଦୁମଣି, ଗୋପାଳ ଭାଣ୍ଡ ଆଦିଙ୍କ ରସିକତାଯୁକ୍ତ ବା ବିଦ୍ରୂପଯୁକ୍ତ ବାକ୍ୟମାନ ଏକ ଶ୍ରେଣୀର । 'ଛିଣ୍ଡାଗଣ୍ଡି' ଏକ ଶ୍ରେଣୀର ସମସ୍ୟା ଅଟେ । ଏହା ପ୍ରଥମେ ଶୁଣିବାକୁ ଅଶ୍ଳୀଳତା ବ୍ୟଞ୍ଜକ, କିନ୍ତୁ ଏଥିର ଅର୍ଥ ବା ମର୍ମ ଅଶ୍ଳୀଳ ନୁହେଁ । ମୁଁ ଯେଉଁ ଯେଉଁ ଶବ୍ଦମାନଙ୍କର ସଙ୍ଗ୍ୟା ଓ ଅର୍ଥ

ଦେବାକୁ ଚେଷ୍ଟା କଲି ଏମାନ ମୋର ମନଗଢ଼ା କଥା; କିନ୍ତୁ ଏ ସମ୍ବନ୍ଧେ ସାହିତ୍ୟ-ରସିକମାନଙ୍କ ଦ୍ୱାରା ଆଲୋଚନା ହେଲେ ଏ ଶବ୍ଦମାନଙ୍କର ସ୍ୱାତନ୍ତ୍ର୍ୟ ଉତ୍ତମ ଉଦ୍‌ଘାଟିତ ହେବ ବୋଲି ମୁଁ ଏତଦ୍ୱାରା ସୂଚନା କଲି ମାତ୍ର ।

ବହୁକାଳରୁ ଏଗୁଡ଼ିକ ସଂଗ୍ରହ କରିବାର ବାସନା ମୋ ମନରେ ଉଦିତ ହୋଇଥିଲେହେଁ ତହିଁରେ ମୁଁ ଉପରୋକ୍ତ କାରଣମାନଙ୍କରୁ ଅଗ୍ରସର ବା କୃତକାର୍ଯ୍ୟ ହୋଇ ପାରି ନ ଥିଲି ଓ ଏ ଆଶା ଶୀଘ୍ର ଫଳବତୀ ହେବାର ସୁବିଧା ମତେ ମିଳି ନ ଥିଲା । ଲୋକମୁଖରୁ ଏ ଶ୍ରେଣୀର ପଦଗୁଡ଼ିକ ସଂଗ୍ରହ କରିବାର ଭାର ମୁଁ ମୋର କନିଷ୍ଠା ଭଗିନୀ ପ୍ରତିମା ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କଠାରେ ଅର୍ପଣ କରିବାରୁ ସେ ଆଗ୍ରହ ସହକାରେ ତାହା ଗ୍ରହଣ କଲେ । ମୋ ସଙ୍କଳିତ ଶବ୍ଦ-କୋଷର ବର୍ଣ୍ଣମାଳାର ସ୍ୱରବର୍ଣ୍ଣର ଶବ୍ଦମାନ ମୁଁ ସଂଗ୍ରହ ନ କରୁଣୁ ଶ୍ରୀମତୀ ପୀତାମ୍ବରୀ ବହୁ ଯତ୍ନ, ଅଧ୍ୟବସାୟ ଓ ପରିଶ୍ରମ ସହକାରେ ପୁରୀଜିଲ୍ଲାର ସତ୍ୟବାଦୀ ଅଞ୍ଚଳରୁ ତାଙ୍କର ଘାଇ-ପଡ଼ିଶୁଣୀ ଚଷା ଗୁଆଣୀ, କେଉଟ, ଗଉଡ଼, କେଳା କେଳୁଣୀ, ବାଉରୀ, କଣ୍ଡରା, ଚକୁଳିଆପଣ୍ଡା, ଆଦିଙ୍କଠାରୁ ବର୍ଣ୍ଣକ୍ରମ ଅବଲମ୍ବନ କରି ସହସ୍ର ସହସ୍ର ଢଗ, ଗୀତ, ପ୍ରବଚନ, ପହେଲି, ନାଁଦିଆ କୃଷକମାନଙ୍କ ଗୀତ, ଭଜନ, ଝାମୁନାଟଗୀତ, ଚଇତଘୋଡ଼ା ଗୀତ, ଘୁମୁରା ଗୀତ, ଶିଶୁଗୀତ ଆଦି ୬ ମାସ ମଧ୍ୟରେ ସଂଗ୍ରହ କରି ମତେ ଅର୍ପଣ କଲେ । ଏ ସଂଗ୍ରହ-ଗୁଡ଼ିକ ଓଡ଼ିଆ କାବ୍ୟ, ପୁରାଣ ଆଦିରୁ ସର୍ବଦା କଥା ପ୍ରସଙ୍ଗରେ ଉଦ୍ଧୃତ ଛନ୍ଦମାନ ମିଶିଲେ ଉତ୍ତମ ହେବ ବୋଲି ମୁଁ ଇଙ୍ଗିତ କରିବାରୁ, ପୀତାମ୍ବରୀ ଓଡ଼ିଆ ଭାଗବତ, ମହାଭାରତ, ରାମାୟଣ, ନୃସିଂହପୁରାଣ, ପଦ୍ମପୁରାଣ, ଦାର୍ଢ୍ୟତାଭକ୍ତି, ଗରୁଡ଼ପୁରାଣ ଓ ପ୍ରାଚୀନ କବିମାନଙ୍କ ସରଳକାବ୍ୟ ଓ ଚଉତିଶା ଆଦିରୁ ଉଦ୍ଧୃତ ହେଉଥିବା ସହସ୍ରାଧିକ ଛନ୍ଦମାନ ମଧ୍ୟ ସଂଗ୍ରହ କଲେ । ପୀତାମ୍ବରୀଙ୍କ ସଂଗୃହୀତ ପଦମାନଙ୍କରେ ମୁଁ ଆମ ଦେଶରେ ଲୋକମୁଖରୁ ସର୍ବଦା ଶୁଣାଯାଉଥିବା ଶ୍ଳୋକାଂଶ ଓ ହିନ୍ଦି, ବଙ୍ଗଳା ପ୍ରବଚନ ଓ ଢଗମାନ ଯୋଗ କଲି ଏବଂ ଆଜି ପର୍ଯ୍ୟନ୍ତ ଯେତେଗୁଡ଼ିଏ ଢଗପୁସ୍ତକ ପ୍ରକାଶିତ ହୋଇଅଛି ସେମାନଙ୍କ ସଙ୍ଗେ ପୀତାମ୍ବରୀଙ୍କ ସଂଗ୍ରହକୁ ମୁଆଜା ମୁକାବିଲା କରି ଏ ସଂଗ୍ରହରେ ନଥିବା ପଦମାନ ଯୋଗ କଲି । ଫଳତଃ ଦେଖିଲି ଯେ ଏ ସମସ୍ତ ପୁସ୍ତକରେ ଯେତେଗୁଡ଼ିଏ ଢଗ ଓ ପ୍ରବଚନ ଅଛି, ତାହା ପ୍ରାୟ ସମସ୍ତ ପୀତାମ୍ବରୀ ସଂଗ୍ରହ କରିବାରେ ସମର୍ଥ ହୋଇଅଛନ୍ତି । ପ୍ରାୟ ୨୦୦ ରୁ ୩୦୦ ବଚନ ମତେ ଅନ୍ୟାନ୍ୟ ପୁସ୍ତକରୁ ଯୋଗ କରିବାକୁ ପଡ଼ିଅଛି ମାତ୍ର ।

ମୋର କେତେକ ବିଶିଷ୍ଟ ବନ୍ଧୁଙ୍କୁ ଏ ସଂଗ୍ରହଟି ଦେଖାଇବାରୁ ସେମାନେ ମତ ଦେଲେ ଯେ, ସଂଗୃହୀତ ବଚନମାନଙ୍କୁ ଭିନ୍ନ ଭିନ୍ନ ଶ୍ରେଣୀରେ ବିଭାଗ କରି ଏକାଧିକ ସ୍ୱତନ୍ତ୍ର ପୁସ୍ତକ ପ୍ରକାଶ କଲେ ପୁସ୍ତକର କଳେବର ଅଯଥା ବଡ ହେବ ନାହିଁ ଓ ସାଧାରଣ ଲୋକଙ୍କ ମଧ୍ୟରେ ଏହା ଖଣ୍ଡଶଃ ଚଳିବାର ସୁବିଧା ହେବ । ବନ୍ଧୁମାନଙ୍କ

ପ୍ରସ୍ତାବ ଅନୁସାରେ ମୁଁ ସଂଗୃହୀତ ପଦ ଓ ପ୍ରୟୋଗମାନଙ୍କୁ ନିମ୍ନଲିଖିତ ପାଞ୍ଚଗୋଟି ବିଭାଗରେ ବାଣ୍ଟିଅଛି ।

୧ । ଢଗ, ଢମାଳି, ହାସ ପରିହାସ, ଅଣ୍ଟ କୌତୁକ ବଚନ, ବ୍ୟଙ୍ଗ ବିଦ୍ରୁପ, ପ୍ରଶଂସାବଚନ, ଗାଳିମନ୍ଦ, ଠିଆ ପ୍ରହେଳିକା, କଳି କଜିଆ, ଆଶୀର୍ବାଦ ନାମ ଓ ବାକ୍ୟାନୁପ୍ରାସରେ ରଚିତପଦ, କନ୍ୟା ଓ ବଧୂ ଓ ସ୍ୱାମୀ ସ୍ତ୍ରୀ ଆଦିଙ୍କର ଅନୁଚିନ୍ତା ଓ ଅନୁଶୋଚନା, ଉଲୁଗୁଣା ଉଚ୍ଛାଣ । (ନୋଟ୍‌-ଦିନାଇ ଦାସଙ୍କ 'ପହେଲି' ନାମତଃ 'ପହେଲି' ହେଲେ ମଧ୍ୟ ତାହା ଅନୁଭବ ଓ ଉପଦେଶାତ୍ମକ ଥିବାରୁ ତାହା ଏ ଶ୍ରେଣୀଭୁକ୍ତ କରାଯାଇ ନାହିଁ)

୨ । ପ୍ରବଚନ, ପ୍ରବାଦ, ଅପ୍ରବଚନ ଶାସ୍ତ୍ରବଚନ ନୀତିବାକ୍ୟ, ଉପଦେଶ, ଅନୁଭବ-ସିଦ୍ଧ ବଚନ, ଡାକବଚନ, ଖନାବଚନ, ସତ୍ୟ, ଉଦାହରଣ, ନ୍ୟାୟ, ହିଙ୍ଗ୍ଲାଶ, ସଂସ୍କୃତ ଶ୍ଳୋକ ଓ ଶ୍ଳୋକାଂଶ ହିନ୍ଦି ବଙ୍ଗଳାଦି ଭାଷାର ପ୍ରବଞ୍ଚନ, ଭଜନ ରସିକତାଯୁକ୍ତ ପଦ ଓ ରଚନା, ପୌରାଣିକ ଓ ଐତିହାସିକ ଘଟଣା ବା ଉପଖ୍ୟାନ ସମ୍ବନ୍ଧୀୟ ପଦ, କୃଷି ବର୍ଷା ଜ୍ୟୋତିଷ ପଶୁଆଦିଙ୍କ ସମ୍ବନ୍ଧୀୟ ବଚନ ବ୍ରତ ଓଷାକଥା । (ନୋଟ୍‌-ଦିନାଇ ଦାସଙ୍କ 'ପହେଲି' ଏହି ଶ୍ରେଣୀଭୁକ୍ତ କରାଯାଇଅଛି)

୩ । କୁଞ୍ଚକ, ଶଗଡ଼ିଆ, ଗଉଡ଼ ନାହୁର, ବୋଝିଆ, ପାଣିବୁହାଳିଙ୍କ ଗୀତ, ଡାକ, ଉଳୁଟ, ଉଗାଳ ଓ ପଦ ରଥଟଣା, ବାଣ ବାଡ଼ିଆ, ଢିଙ୍କିକୁଟା, କାଞ୍ଚିଗୀତ; ହାଟଗୀତ, କୋଠାଗୁଡ଼ବାଡ଼ିଆ ଟୋକାଙ୍କ ଗୀତ, ଚକୁଳିଆପଣ୍ଡା, ଯୋଗୀଭାଟ ଆଦିଙ୍କ ଗୀତ; କେଳା କେଳୁଣୀଙ୍କ ଗୀତ, ଡାହକା, ଝାମୁନାଟ, ଚଇତିଘୋଡ଼ା ଗୀତ, ଶାଗ ମାଛ ସମ୍ବନ୍ଧେ ଗୀତ, ସାପଖେଳା ବା ପଦ୍ମତୋଳା ଗୀତ; ବାଉରି କଣ୍ଡରା ଧୋବା କେଉଟ ଆଦିଙ୍କ ଗୀତ, ଘୁମୁରା ମାଦଳ ଧୂଡ଼ୁକ ଗୀତ ।

୪ । ଶିଶୁକ୍ରୀଡ଼ା ଗୀତ ଓ ପଦ, ଶିଶୁରଞ୍ଜନ ଗୀତ, କାହାଣୀ ଗୀତ, ପିଲାଙ୍କ ଦୋଳି ଗୀତ ଓ ପଦ ପିଲାମାନଙ୍କ ନାମାନୁପ୍ରାସରେ କଥିତ ପଦମାନ ।

୫ । Idiom ବା ଭାଷାସୁଲଭ ବିଶିଷ୍ଟ ପ୍ରୟୋଗ ଭଙ୍ଗୀ, ଢଙ୍ଗ ଓ ବିଶିଷ୍ଟ ଅର୍ଥରେ ବ୍ୟବହୃତ ବାକ୍ୟ ଓ ଶବ୍ଦମାନ (ଯାହାକି ସାଧାରଣ ଶବ୍ଦ-କୋଶରେ ମିଳିବ ନାହିଁ) ।

ଏହି ୫ଗୋଟି ଶ୍ରେଣୀ ବିଭାଗ ମଧ୍ୟରୁ ୧ମ ଶ୍ରେଣୀର ପଦମାନ ପ୍ରଥମେ ବର୍ତ୍ତମାନ ଏହି ପୁସ୍ତକରେ 'ପ୍ରଥମ ଭାଗ' ରୂପେ ପ୍ରକାଶିତ ହେଲା । ମୋ ଶ୍ରେଣୀ-ବିଭାଗ ପ୍ରମାଦଶୂନ୍ୟ ନୁହେଁ ବୋଲି ମୁଁ ପୂର୍ବରୁ ସୂଚନା କରୁଅଛି ।

ଯେଉଁ ଯେଉଁ ସ୍ଥଳରେ ଗୋଟିଏ ବାକ୍ୟ ଏକାଧିକ ଆକାରରେ ଶୁଣାଯାଏ ଓ ଶାସ୍ତ୍ରବଚନମାନଙ୍କର ପାଠାନ୍ତର 'ବନ୍ଧନୀ, ( ) ସାହାଯ୍ୟରେ ପ୍ରକାଶ କରାଯାଇଅଛି ।

ଯେଉଁ ଯେଉଁ ବଚନ ଓ ପଦମାନଙ୍କର ଅର୍ଥ ବା ବ୍ୟବହାରସ୍ଥଳ ସାଧାରଣତଃ ବୁଝାଯିବାରେ କଷ୍ଟବୋଧ ହେବ, ତନ୍ନିମିତ୍ତେ [ ] ବନ୍ଧନୀ ମଧ୍ୟରେ ମୁଁ ଟୀକା, ନୋଟ ବା ସୂଚନା ମାତ୍ର କରିଅଛି ।

ଉପରୋକ୍ତମତେ ମୁଁ ଯୋଗ କରିଥିବା ଶ୍ଳୋକାଂଶ ବଚନ ଓ ଟୀକା ଛଡ଼ା ଏ ପୁସ୍ତକର ସନ୍ନିବେଶିତ ପଦଗୁଡ଼ିକ ପୀତାମ୍ବରଙ୍କ ପରିଶ୍ରମ ପ୍ରସୂତ । କିନ୍ତୁ ଉପରୋକ୍ତ ଶ୍ରେଣୀ ବିଭାଗ କରିବାକୁ ମୁଁ ଦାୟୀ । ଏ ପୁସ୍ତକରେ ଅନେକ ତ୍ରୁଟି ଓ ଅସମ୍ପୂର୍ଣ୍ଣତା ରହିଥିବାର ମୁଁ ନିଜେ ଉପଲବ୍ଧି କରୁଅଛି । 'ନାହିଁ ମାମୁଁଠାରୁ କଣା ମାମୁଁ ଭଲ' ଏଥିପାଇଁ ଏ ସଙ୍କଳନକୁ ଆମ ଦେଶର ସାହିତ୍ୟସେବକମାନେ ସ୍ନେହ କରିବେ ବୋଲି ଆଶା କରୁଅଛି ।

ଲଘୁ ସାହିତ୍ୟ ଓ ଲୋକମୁଖରେ ପରିଚିତ ବଚନ ଓ ପ୍ରୟୋଗମାନଙ୍କୁ ସଞ୍ଚୟ କରି ରଖିଯିବାର ମୋର ବହୁକାଳପୋଷିତ ବାସନାକୁ କାର୍ଯ୍ୟରେ ପରିଣତ କରିଥିବାରୁ ମୁଁ ପୀତାମ୍ବରଙ୍କୁ ଜ୍ୟେଷ୍ଠ ଭ୍ରାତାର କ୍ଷୁଦ୍ର ହୃଦୟର ଆଶୀର୍ବାଦ ଅର୍ପଣ କରୁଅଛି । ସେ ଯେଉଁ ଶ୍ରେଣୀର ବ୍ୟକ୍ତିମାନଙ୍କ ମୁହଁରୁ ଏଗୁଡ଼ିକ ସଂଗ୍ରହ କରି ପାରିଅଛନ୍ତି ମୁଁ ତାହା କରି ପାରି ନ ଥାନ୍ତି । ଫଳତଃ ମୋର ଏ ବାସନା ଅପୂର୍ଣ୍ଣ ରହି ଯାଇଥାନ୍ତା । ଏଗୁଡ଼ିକ ସଂଗ୍ରହ ହେବାଦ୍ୱାରା ସଂଗ୍ରାହକମାନେ ମୋର ସଂକଳିତ ଡିକ୍ସନାରୀର ଶବ୍ଦ-ସଂଗ୍ରହରେ ମଧ୍ୟ ବିଶେଷ ସାହାଯ୍ୟ କରିଅଛନ୍ତି । ତାଙ୍କର ଏ ବଚନ ସଂଙ୍କଳନ ଓ ପ୍ରଣୟନରେ ନିଷ୍ଠା ଓ ପରିଶ୍ରମ ଏବଂ ତାଙ୍କର ରଚିତ କାହାଣୀ, ଭଜନ ଓ ଶିଶୁଗୀତମାନଙ୍କର ରଚନାଭଙ୍ଗୀ ଦେଖି ମୁଁ ଆଶା କରୁଅଛି ଯେ ଈଶ୍ୱର ତାଙ୍କୁ ସାହିତ୍ୟ-ସେବାରେ ଉତ୍ତରୋତ୍ତର ଉତ୍ସାହିତ ଓ ଅଗ୍ରସର କରାଇବେ ।

ସ୍ୱର୍ଗୀୟ ପଣ୍ଡିତ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ, ପଣ୍ଡିତ ଶ୍ରୀ ନୀଳମଣି ବିଦ୍ୟାରତ୍ନ, ମୁନସୀ ସେଖ ଅବଦୁଲ ମଜିଦ୍, ପଣ୍ଡିତ ଶ୍ରୀ ଚନ୍ଦ୍ରଶେଖର ବାହିନୀପତି ଓ ପଣ୍ଡିତ ଶ୍ରୀ ଭଗବାନ ହୋତା, ଶ୍ରୀ ବାବୁ ରାଘବାନନ୍ଦ ଦାସ, ସ. ଡେ: କଲେକ୍ଟରମାନଙ୍କ ସଂଗୃହୀତ ବଚନମାନଙ୍କ ସହିତ ଏ ସଂଗ୍ରହର ବଚନମାନଙ୍କୁ ମିଳାଇବାର ସୁବିଧା ମିଳିଥିବାରୁ ଓ ଏ ସଂଗ୍ରହରେ ପ୍ରଥମରୁ ନଥିବା ବଚନମାନ ସେମାନଙ୍କ ପୁସ୍ତକରୁ ଏଥିରେ ପୂରଣ କରିଥିବାରୁ ମୁଁ ସେମାନଙ୍କଠାରେ କୃତଜ୍ଞତା ଅର୍ପଣ କରୁଅଛି ।

ସାଧାରଣ କଥୋପକଥନରେ ବ୍ୟବହୃତ ଦଶେଟି ସଂସ୍କୃତ ଶ୍ଳୋକାଂଶ ଓ ବଚନମାନଙ୍କର ପୂର୍ଣ୍ଣଶ୍ଳୋକ ଟୀକା ସହିତ ଅନ୍ୟଖଣ୍ଡିଏ ପୁସ୍ତକରେ ପରେ ପ୍ରକାଶ କରିବାର ବାସନା ରହିଲା ।

କଟକ
୧–୧–୧୯୨୭ } ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

# ଏ ପୁସ୍ତକଟରେ ବ୍ୟବହୃତ ସାଙ୍କେତିକ ଶବ୍ଦ ଓ ପଦମାନଙ୍କ ବିବରଣ

—※—

( ) ଓ { } = ଏ ଦୁଇ ବନ୍ଧନୀର ମଧ୍ୟସ୍ଥ ଅଂଶମାନ ପବଂସ୍ଥ ପଦ ବା ଅକ୍ଷର ମାନଙ୍କର ପାଠାନ୍ତର ।

[ ] = ଏ ବନ୍ଧନୀର ମଧ୍ୟସ୍ଥ ଅଂଶମାନ ମୋର ଟୀକା ବା ନୋଟ୍ ।

ସଂ = ସଂସ୍କୃତ

ବ = ବଙ୍ଗଳା

ହି = ହିନ୍ଦୁସ୍ଥାନୀ

ପୁ = ପୁରାଣ

ଭା = ଭାଗବତ (ଏଥିସଙ୍ଗେ ସଂଖ୍ୟାର ଅର୍ଥ ଉକ୍ତ ସ୍କନ୍ଧ)

ମହା = ମହାଭାରତ (ଏଥିସଙ୍ଗେ ସଂଖ୍ୟାର ଅର୍ଥ ପର୍ବ)

ରମା = ରାମାୟଣ (ଏଥିସଙ୍ଗେ ସଂଖ୍ୟାର ଅର୍ଥ କାଣ୍ଡ)

ନୃ: ପୁ = ନୃସିଂହ ପୁରାଣ (ଏଥିସଙ୍ଗେ ସଂଖ୍ୟାର ଅର୍ଥ ରତ୍ନାକର)

ମା.ପୁ = ମାର୍କଣ୍ଡେୟ ପୁରାଣ

ଲ:ପୁ = ଲକ୍ଷ୍ମୀ ପୁରାଣ

ଅ:ପୁ: = ଅଗ୍ନି ପୁରାଣ

ପ:ପୁ = ପଦ୍ମପୁରାଣ

ଗ:ପୁ = ଗରୁଡ଼ ପୁରାଣ

ଦାର୍ଢ୍ୟ = ଦାର୍ଢ୍ୟତାଭକ୍ତି

ଗୀତା = ଭଗବଦ୍‌ଗୀତା (ଏଥି ସଙ୍ଗେ ସଂଖ୍ୟାର ଅର୍ଥ ଅଧ୍ୟାୟ)

ନ୍ୟାୟ = ଉଦାହରଣ, ତୁଳନା, ଉପମା ବା ମିତଗଳ୍ପ ଛଳରେ ବ୍ୟବହୃତ ପଦ

ଉଲ୍ଲେଖ = ତୁଳନା ବା ଉପମା

ଶାସ୍ତ୍ର = ଶାସ୍ତ୍ର ବଚନ

ସତ = ଅନୁଭବ ସିଦ୍ଧ ବା ସାରବଚନ

ଗାଳି = ଭର୍ତ୍ସନାରେ ବ୍ୟବହୃତ ବଚନ

ଅନୁଚନ୍ତା = ଅନୁପସ୍ଥିତ ବ୍ୟକ୍ତି ବା ବିଷୟ ସମ୍ବନ୍ଧରେ ଭାବନା ବା ଶୋଚନା





# ଢଗ-ଢମାଳି ବଚନ

## ପ୍ରଥମ ଭାଗ—ଢଗଢମାଳି

### ଅ

୧ । ଅଇରି ଖପରା ବଇରି ବାଆ ।
[ଯେଉଁ ବ୍ୟକ୍ତିର କିଛିମାତ୍ର ସମ୍ବଳ ନଥାଏ ]

୨ । ଅଇଲତ ବନ୍ଧୁ ଭଲକଲ, ଦାଣ୍ଡରେ ହୋଇଲ ଠିଆ,
ପାଣି ମୁନ୍ଦେ ଦଅନ୍ତ ବନ୍ଧୁ ! ଦଦରା ମାଠିଆ ।
ପୀଢ଼ାଖଣ୍ଡିଏ ଦଅନ୍ତ ବନ୍ଧୁ ! ବଢ଼େଇ ଘରେ ଭିଆ (ବାହ୍ୟା) ।
ପଇଡ଼ଟିଏ ଦଅନ୍ତ ବନ୍ଧୁ ! ବାନ୍ଦର ଖାଇଛି ମାଡ଼ି,
ଯେଉଁ ବାଟେ ବାଟେ ଆସିଛ ବନ୍ଧୁ ! ସେହି ବାଟେ ବାଟେ ଫେର (ବାହୁଡ଼)
[ଘରକୁ ସମାଗତ ବନ୍ଧୁଙ୍କୁ ମୁହେଁ ମୁହେଁ ମିଷ୍ଟ ବଚନଦ୍ୱାରା ବୋଧ ସୋଧ କରି ବିଦାୟ ଦେବା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୩ । ଅଇଲା ରାବଣ ହରିଲା ସୀତା; ଏଥିପା (ପେ)ଇଁ କିଆଁ ପୋଥି ଘାଣ୍ଟୁଛ ? [ଢଗ]

୪ । ଅଇଲା ସଙ୍କରାନ୍ତି ଜାଣି, ପୁନିଅ ପରବ ସାଙ୍ଗରେ ଘେନି ।
[ନାଁ ହୁଆ; ଦକ୍ଷିଣାୟନ ବା ଶ୍ରାବଣ ସଂକ୍ରାନ୍ତି]

୫ ।ଅଇଲି ଗନ୍ଧ; ଯାହା ଦେଖିଥି(ଥେ)ଲି ତାହା କହିଲି । [ଢଗ]

୬ । ଅଇଲି ମୁହିଁ (ଧାଇଁ); ଚୁଟି ପିଠିକରି ଧଇଲି ଯାଇଁ ।
[କୌଣସି କଥା ନବୁଝି ହଠାତ୍ ଆସି ଘରେ ପଶୁଛି ମାଡ଼ ମାରିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ

୭ । ଅଇଲେଣି ବଡ଼ ଘରଣୀ; ତାଙ୍କୁ ଦିଅ ପୀଢ଼ା ପାଣି ।
ଅଇଲାଣି ଦୁଃଖୀ ରାଣ୍ଡୀ; ତାକୁ ଦିଅ ଅରଟଖଣ୍ଡି ।
[ଧନୀକୁ ଆଦର ଓ ଗରିବକୁ ଅନାଦର, ବ୍ୟଙ୍ଗ]

୮ । ଅଇଲେ ନାରଦ ଋଷି (ମୁନି), କଳିଧୋକଡ଼ିକ କାଖରେ ଘୋସି (ଘେନି)
[ଅନ୍ୟ ବ୍ୟକ୍ତିମାନଙ୍କ ପରିବାରରେ କଳି ଲଗାଇ ଦେବା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୯ । ଅଇଲେ ପଣ୍ଡୁ ମଲେ ମଶା; ଗୋଡ଼ ଫାଟୁ ଦେଲେ ମୁରୁକି ହସା,
[ନାଁ ହୁଆ; ମାର୍ଗଶୀର ବା ପଣ୍ଡୁ ପୂର୍ଣ୍ଣିମା; ସେହିଦିନଠାରୁ ଶୀତ ଆରମ୍ଭ ହୁଏ ମଶା କମିଯାନ୍ତି ଓ ଶୀତଋତୁରେ ଗୋଡ଼ ଫାଟୁଆ ଲୋକଙ୍କର ଗୋଡ଼ ଫାଟିବାରୁ ସେମାନେ ଫାଟଗୋଡ଼ରେ ଚାଲିଲାବେଳେ ପୀଡ଼ା ହେବାରୁ ଦାନ୍ତ ନକୁଟନ୍ତି]

୧୦ । ଅଇଲ ଧାଇଁ, ପଡ଼ିଲି କାହିଁ, ସୁଆଦ ଶବଦ ଟିକଏ ନାହିଁ । [ବ୍ୟଙ୍ଗ]

୧୧ । ଅଇଲେ ଅମିନ ମାଇଲେ ମେଖ, ବାରହାଣ୍ଡିଆଙ୍କ ଘୁଡୁଘା (ତାରଫି) ଦେଖ ।
[ବ୍ୟଙ୍ଗ—ସେଟଲମେଣ୍ଟ ଅମିନମାନେ ଭୂମି ମାପକର ସୀମାରେ କିଲା ମାରନ୍ତି । ସେମାନେ ଏକସ୍ଥାନରେ ବହୁତ ଦିନ ରହି ପାରନ୍ତି ନାହିଁ, ସେଥିପାଇଁ ସେମାନଙ୍କୁ ବାରହାଣ୍ଡିଆ କହନ୍ତି ]

୧୨ । ଅଇଲେରେ ବାବା ଅମିନବଗ୍ଗୁ, କର ଚରଗ୍ଗୁ, ଦିଅ ଖରଗ୍ଗୁ, ନିଅ ପାରଗ୍ଗୁ ।
[ସେଟଲମେଣ୍ଟ ଅମିନଙ୍କର ଉତ୍କୋଚ ନେବା ସମ୍ବନ୍ଧରେ ବ୍ୟଙ୍ଗ]

୧୩ । ଅଉଲପଦ୍ମ ବଉଲ ବାଆ, କୋଲି ଗଣ୍ଡାକର ଘର;
ଷାଠିଏ ଟଙ୍କାର ବଳଦ ବାନ୍ଧି, ନାଥେ ହେଲେ ହରବର ।
[ପ୍ରଥମ ପାଦକ ନିରର୍ଥକ; ବହୁମୂଲ୍ୟ ଗାଈକୁ ଆଣି ଘରେ ବାନ୍ଧି ତାକୁ ଉପଯୁକ୍ତରୂପେ ପାଳନ କରିବାକୁ ଅସମର୍ଥ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୧୪ । ଅକର୍ମଶୀଳା; କୁଳ ବାଳୁଙ୍ଗା ।
[ଗାଳି—ଯେଉଁ ପଥର ଖର ଟାଣ ଓ ଶାସ୍ତ୍ରାଦିରେ ଯାହା ଭାଙ୍ଗେନାହିଁ, ତାକୁ ଅକର୍ମଶୀଳା ପଥର ବୋଲିଯାଏ ।]

୧୫ । ଅକାଳନନ୍ଦ, ବାଳଗୋବିନ୍ଦ, ଦାଳ କେରା କେରା ପକାଏ ଛନ୍ଦ । [ଢଗ]

୧୬ । ଅକର୍ମଶୀଳା ମିସ୍ତିରି, ତିନି ଟଙ୍କା ଦରମାକୁ ଦଶ ଟଙ୍କା (ମୂଳ) ଦସ୍ତୁରି । [ବ୍ୟଙ୍ଗ]

୧୭ । ଅକସ୍ମାତ୍ ବଜ୍ରପାତ୍ । (ଆକସ୍ମିକ ବିପଦ)

୧୮ । ଅକାମାବୈ, ପାନଗୁଆ ଖାଇ,
ପାନ ଗୁଆ ତୋର, ମାସକ ଧରମ ମୋର ।
[ସ୍ତ୍ରୀମାନେ ଆଷାଢ଼, କାର୍ତ୍ତିକ, ମାଘ ଓ ବୈଶାଖରେ ପ୍ରାତଃସ୍ନାନ କରି ପୂର୍ଣ୍ଣିମା ଦିନ ସ୍ନାନ କଲାବେଳେ ପାଣିରେ ପାନ ଗୁଆ ଫିଙ୍ଗି ଏହି ପଦ ବୋଲନ୍ତି; ଏହି ଘର ଧର୍ମ—ମାସର ପ୍ରଥମ ଅକ୍ଷର (ଅ, କା, ମା, ବୈ) ମାନଙ୍କ ନାମଧରି ଏ ପଦ ବୋଲି ପାଣିକୁ ପାନ ଗୁଆ ଫିଙ୍ଗନ୍ତି]

୧୯ । ଅକାମିକା, କାମ କରୁଛୁ (କରୁଥାଏ) ବଙ୍କାଢ଼(ଟ)ଙ୍କା । [ଗାଳି]

୨୦ । ଅକାଳଯୋଗୀ ସକାଳେ !
[ବ୍ୟଙ୍ଗ—ଯେଉଁ ବ୍ୟକ୍ତିର ଆଗମନ ଆଶା କରାଯାଇ ନ ଥାଏ ତାକୁ ଦେଖିଲେ ବୋଲାଯିବା ଢଗ]

୨୧ । ଅକାଳେ ଗୋଦଣ୍ଡି କଲା ବେଉଷା,
ଲାଭ ଖାଇଗଲେ ଚୁଟିଆ ମୂଷା
(କାଉ ଖାଉଥାଏ ଟାଙ୍ଗିଆ ପଣା) । [ବ୍ୟଙ୍ଗ]

୨୨ । ଅକାଳେ ଗଳ୍ପ ଘସି ଯାଉଁଛି, ଘରେ ଥିଲେ ସୁଖ ପାଉଥାଆନ୍ତ ।[ ଡଗ]

୨୩ । ଅକାଳେ ପୁଣି ଗରୁଡ଼ (ଗୋବିନ୍ଦ) ଦ୍ୱାଦଶୀ । [ବ୍ୟଙ୍ଗ]

୨୪ । ଅକାଳେ (ଅକାଳେ ସକାଳେ) ମାଇଲି ଘାଏ,
ଗଳ୍ପ ଶିଖିବଣ (ଶିଖିବଣ ଖେଦୁଅ) ଯାଏ । [ବ୍ୟଙ୍ଗ]

୨୫ । ଅଖାଡ଼ ଖାଇଲା, ଖାଉ ଖାଉ ଖଡ଼ା ବାଡ଼ିକ ଖାଇଲା (ସରଲା), ସୁଆଦ ନ ପାଇଲା । [ବ୍ୟଂଗ]

୨୬ । ଅଖାଇ କରୁଛୁ ଓଷା, ତୋଲ୍ଲିକ ଗୁଡ଼ଲ ଓଳକେ ଖାଇଲା, ଦାନ୍ତ ଅଛୁ ଦରଘଷା । [ବ୍ୟଙ୍ଗ]

୨୭ । ଅଖାଇ (ଉଦାସୀ, ଉଦାସୀ) ଗଉସି ପାନ ଖାଇଛୁ, ଦଇବଳ ପିକ ବୋହି ପଡ଼ୁଛୁ (ଯାଉଛୁ) [ବ୍ୟଙ୍ଗ]

୨୮ । ଅଖାଇ ନାମି ଖାଇ ମନ କଲା, ବାରବାଟୀ ଘୁଷ ଧୋଇରେ ଗଲା [ବ୍ୟଙ୍ଗ]

୨୯ । ଅଖାଇ ନାମି ସରୁ କାଟେଣୀ, ବସିଥାଏ ଚନ୍ଦ୍ରମୁଣ୍ଡେ;
ଘଇତା ପଛରେ (ଆଗରେ) ଶକେଇ କନ୍ଦେ (କେନ୍ଦୁ ପଛରଲେ ସାଗରେ କନ୍ଦେ), କଛୁ ଦେଇନାହିଁ ଭୁଣ୍ଡେ। [ବ୍ୟଙ୍ଗ]

୩୦ । ଅଖାଇ ନାମିର ବାର ବରତ, ସକାଳୁଁ ଖାଇଲା (ମାଇଲା) ପଖାଳ (କଂସାକ) ଭାତ । [ବ୍ୟଙ୍ଗ]

୩୧ । ଅଖାଇ ରଙ୍କୁଣୀ ନ ଖାଏ ଭାତ, ମାରଦେ(ଦ)ଉଥାଏ ପିହ୍ଲାଣ ସାତ । [ବ୍ୟଙ୍ଗ]

୩୨ । ଅଖା ଧୋଉଥା (ଥିବ, ଅବୁ), ଗୁଣ ଗାଉଥା (ଥିବ ଅବୁ) [ବ୍ୟଙ୍ଗ]

୩୩ । ଅଖା ପଟକ; ଏ ଦେଶରେ ଭବ ନାହିଁ, ଯିବା କଟକ । [ଡଗ]

୩୪ । ଅଗଡ଼ ମଗଡ଼ (ବଗଡ଼) ଖାଏ ଯେ, ଶଗଡ଼ ଭଳିଆ ହୁଏ (ଫୁଲେ; ବଢ଼େ) ସେ । [ବ୍ୟଙ୍ଗ]

୩୫ । ଅଗଣି ଖଟୁଆ; ଗୁଆ ନାହିଁ, ପାନ (ଗୁଣ୍ଡି) ନାହିଁ, ଖାଲି (ଭୁଛା) ବଟୁଆ । [ବ୍ୟଙ୍ଗ]

୩୬ । ଅଗସ୍ତି ଦେଲେ ଦାନ (ଆଛା ଦାନ), କଞ୍ଚାଗୁଆ (କଞ୍ଚାଗୁଆକୁ) ସଢ଼ା (ପଚ୍ଚ) ପାନ ।

୩୭ । ଅଘଟ କଥା ଘଟଇ ଦେଖ, ପେଜ ପିଆଠେଇଁ (ଠାରେ) ବାଜଇ (ବାଜୁଛୁ) ଶଙ୍ଖ । [ବ୍ୟଙ୍ଗ]

୩୮ । ଅଘଟ ଘଟା, ମଲ୍ଲୀ ଫୁଲଟାରେ ଉଠିଛୁ କଣ୍ଟା । [ବ୍ୟଙ୍ଗ]

୩୯ । ଅଘଟ ଘଟେଇ ଜନ୍ମୁଛୁ କଥା; ଗୋଟାଏ ଗଣ୍ଡିକ ଘୁରଟା ମଥା । [ବ୍ୟଙ୍ଗ]

୪୦ । ଅଜଗରକୁ ଦାଢ଼ାସାପ, ମୁଖେ ପଡ଼ିଲେ ସାପ୍ ନାମ୍ ।
[ନିଷ୍କର୍ମା ବା ଅଳସୁ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୪୧ । ଅଡୁଆ ବାଳକୁ ଖଣ୍ଡିଆ (ଦନ୍ତରା) ପାନିଆ;
ସ୍ତ୍ରୀକୁ ଦେଖି ନନ୍ଦୋ ଗୁନିଆ । [ବ୍ୟଙ୍ଗ]

୪୨ । ଅଡ଼ା ବସିଛନ୍ତି ଗେଲ୍ହା ପୁଅ; ବାଘ (ବଳଦ) ଦୁଧ ଆଣି ଟୋପା(ପି)ଏ ଦଅ । [ବ୍ୟଙ୍ଗ]

୪୩ । ଅଡ଼ୁଆ ସୂତାରୁ ଖିଏ; ଆମ ଦାଦାଙ୍କର ଲାଗିଛି କଳି, ଏ କଳି ଖଣ୍ଡିବ କିଏ ? [ଢଗ]

୪୪ । ଅଢ଼େଇ; ମୁଣ୍ଡ ଧରକର ବାଡେଇ । [ଢଗ]

୪୫ । ଅଢ଼େଇ ଦିନକୁ ବଢ଼େଇ ଘଇତା [ବ୍ୟଙ୍ଗ]

୪୬ । ଅଢ଼େଇ ଦିନକୁ ବଢେ(ଢ଼େ)ଇ କଥା, ଝୁରି ମରିବାକୁ କଳି ବଧାତା । [ବ୍ୟଙ୍ଗ]

୪୭ । ଅଢ଼ଙ୍ଗରେ ଢଙ୍ଗ ନାହିଁ, କଟକ ବାଉଦ ଶୁଭେ ନାହିଁ ।
[କଟକ ଜିଲ୍ଲାର ଅଢ଼ଙ୍ଗ ନାମକ ଗ୍ରାମ ସମ୍ବନ୍ଧେ । [ବ୍ୟଙ୍ଗ]

୪୮ । ଅଣ, କଅଁ ବଣ (ମାଛ ଉଅଣ) । [ପରିହାସ]

୪୯ । ଅଣ କୋଇଲି (ଖୋଇଲି); ବାପ ନାହିଁ, ପୁଅ କାହୁଁ ଅଇଲା ? [ବ୍ୟଙ୍ଗ]

୫୦ । ଅଣପୁରୁଷା (ମଣିଷା); ନଡ଼ ଘିଅ ଖାଉ (ଘିଇ ପିଠା), ନଡ଼ ରୁଷା । [ବ୍ୟଙ୍ଗ]

୫୧ । ଅଣ୍ଟା ଖୋସା (ଗୁଞ୍ଜା) ଧନ ରଖିଦେ, ତୋ କାମ ତୁ ବୁଝିନେ ।
[ଉତ୍କୋଚ ଦେବା ନେବା ଲୋକ ସମ୍ବନ୍ଧେ ବ୍ୟଙ୍ଗ]

୫୨ । ଅଣ୍ଟାଭଙ୍ଗା ଗୁଆକାଠ; ପାଖରେ ବସାଇ ପାନ ଖୁଆନ୍ତି,
ନୁହନ୍ତି ଆପଣା ଜାତ । [ଢଗ]

୫୩ । ଅଣ୍ଟା ଦବିଣ୍ଡିଲ କଉଡ଼ି ନାହିଁ, ଦୁଧ ଦହି ଗଲା ଦୁଆର ଦେଇ (ଡେଇଁ) । [ଢଗ]

୫୪ । ଅଣ୍ଟାରେ ନ ଥାଏ ଧନ, ପୁଅ ବାଦୀ (ଭଆ, ବଭା) କଣ ମନ ! [ଢଗ]

୫୫ । ଅଣ୍ଡିରପୁଅ ଉର୍ଦ୍ଧ୍ୱ । [ସୁପରିଚ୍ଛଦଧାରୀ ଅଯୋଗ୍ୟ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୫୬ । ଅତି ଅଲଜୁକ ଚଳଣା ଗେର, ଅଣ୍ଡି ନ ପୂରିଲେ ଆଣ୍ଠୁର ତୋଳେ । [ଢଗ]

୫୭ । ଅତି ଗଉରବ କଲେ; କଳସ କାନ୍ଥିକି ଟଙ୍କ ପଖାଳ, ଦେହ ଟୋରପାଏ
(ସୋଡ଼କାଏ) ଦେଲେ । [ଢଗ]

୫୮ । ଅତି ଚଲାଖ (ଚତୁର) କୁଆ ଗୁହ ଖାଏ । [ବ୍ୟଙ୍ଗ]

୫୯ । ଅତି ସୁନ୍ଦରୀ ବାଳୀ ଦୁହିତା, କେମନ୍ତେ ବରିବେ ଯୋଗୀ ଘଇତା ।
[ରାଜକନ୍ୟା ପାର୍ବତୀ ଶର୍ବ ମହାଦେବଙ୍କୁ ବିଭା ହେବା ସମ୍ବନ୍ଧେ ଢଗ]

୬୦ । ଅତି ସେରନ୍ତାରେ ସେରନ୍ତା, ଝିଅ କାନ୍ଦନା,
ଲୁଉଲ ପଛକେ ଖାଇବା, ଖାଉ ରାନ୍ଧନା [ବ୍ୟଙ୍ଗ]

୬୧ । ଅତି ସେରନ୍ତାରେ ସେରନ୍ତା, ଗୁଡ଼ କୋଚଲି ଖାଇଲେ ମରନ୍ତା [ବ୍ୟଙ୍ଗ]

୬୨ । ଅଦା ଘେ (ଘି)ନ ଖାଇବ, ଓଉ ଘେ (ଘି)ନ ଖାଇବ;
ଏତେ଼ ବଡ଼ ମହାକାର୍ତ୍ତିକ, ଆଉ କାହିଁ (ହୁଁ) ପାଇବ ?
[ବିଧବାଙ୍କର ହବିଷ୍ୟ ସମ୍ବନ୍ଧେ ଅନୁଚିନ୍ତା]

୬୩ । ଅଦା ବେପାରି ଜାହାଜ (ବୋଇତ) ଖବର ନେଉଛୁ ! [ବ୍ୟଙ୍ଗ]

୬୪ । ଅଢଆ, ଫେ ର (ତା ଉପରେ) ବନ୍ଧଣା !
[ଅଦାଛା ଓ ନଷ୍ଟ୍ରଭର୍ଷୀ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୬୫ । ଅନେକ କୁହୁଡ଼ି କଲି, ପଢ଼ା ଶାଗକୁ ମୋ କଏ ସେ ନେଲା, ବନସ୍ତରେ ଘର ଦେଲି । [ଢଗ]

୬୬ । ଅଦଆ ମୁଣ୍ଡରେ ଥୁକ୍ (ଥୁକ୍ଇଥା, ଥୁତ୍‌କଇଥା) । [ଗାଳି]

୬୭ । ଅଦନେ ଆମ୍ବ ନଉଲ; କାଖ କର ନେବ, ଯାତ ଦେଖାଇବ, ଭୁବନେଶ୍ୱର (ଭୋବନଶ୍ୱର) ଦେଉଳ । [ଢଗ]

୬୮ । ଅଢନେ କହ୍ନି ଗଲଇତା; ଚନ୍ଦ୍ରମା ବଦନ ଶୁଖି ଯାଇଛୁ, ଆଜକ ଫେର ଯାଇଥା [ଢଗ]

୬୯ । ଅଦୃଷ୍ଟେ ଅଛୁ ତୋର ଚୋରଲ ଫୁଲ, ଭୃଙ୍ଗି ବସି ରୁ କମ୍ପା ହେଉ ବକଳ ।
[ଦୁଃଖ ଭୋଗ କରୁଥିବା ବ୍ୟକ୍ତି ର ଆତ୍ମବୋଧ]

୭୦ । ଅଧଢ଼ ଧଡ଼(ଅଦଢ଼ ଦଢ଼), ଘରେ ଭାତ ନାହିଁ ବୁଡ଼ିକି (ବୁଢ଼ାକୁ) ଉଡ଼! [ବୃଦ୍ଧ ବୃଦ୍ଧାଙ୍କୁ ପରିହାସ]

୭୧ । ଅଧା ଭୋଜନ, ବୁଢ଼ି ଗାଈ ଦାନ । [ବ୍ୟଙ୍ଗ]

୭୨ । ଅନଲ ନଲ, ଓଦା କଞ୍ଚା ସବୁ ଜଲ । [ବ୍ୟଙ୍ଗ]

୭୩ । ଅନଲ ନଲା, ଧଲା ବଲଦକୁ କରୁଛୁ କଲା [ବ୍ୟଙ୍ଗ]

୭୪ । ଅନା ପତରକୁ ବନା ପତର, ମୂଳ ଲାଗୁଥାଏ ପର ଖେତର, ପିଠି ଖାଉଥାଏ ଝଗ ; (ଆଗେ) ଅଣ୍ଡା ନଥିଲା ତ କୁଣ୍ଡା ଚଲୁଥି, (ଏବେ) ରୁଚୁନାହିଁ ବଗବଗ । [ବ୍ୟଙ୍ଗ]

୭୫ । ଅନା ନା ରୁ ବନମାଳିକ. ଟାଣି (କାନ) ଝିଙ୍କି ନବ ବନଥଳିକ (ଝିଙ୍କିଗୁଲିକ) । [ଢଗ]

୭୬ । ଅନା ମନା ପତର, ଖଡ଼ ଭିତରେ ମୂଷା କାଟେ କଟର କଟର । [ଢଗ]

୭୭ । ଅନାଲେ ! ଯମୁନାକୁ କଲା (ହେଲା) ମନା ଲେ । [ଢଗ]

୭୮ । ଅନେଇ ଦେଲି, ଦନେଇ ଦାଦରୁ ପୁଲା(ଳି)ଏ ନେଲି ।
[ଦନେଇ ନାମକ ବାଳକ ପ୍ରତି ବିଦ୍ରୂପ]

୭୯ । ଅନ୍ନେ (ଅନ୍ନରେ) କପଟ ମୁଣ୍ଡରେ ଜଟ, ଶୋଇ ପଡ଼ୁଥାଏ ଲଟପଟ (କୁଆ ହଗିଦେଲା ଲଟପଟ) । [ବ୍ୟଙ୍ଗ]

୮୦ । ଅନ୍ତରେ ଗୁନ୍ଦ, ଆଖିରେ ଲୁହ । [ବ୍ୟଙ୍ଗ]

୮୧ । ଅନ୍ଧାର (ଅବୁଝ) ନଗରୀ ଅବୁଝା (ବେବୁଝା) ରଜା,
ଟଙ୍କା ସେର ଖଜା ତ, ଟଙ୍କା ସେର ଜଜା । [ବ୍ୟଙ୍ଗ]

୮୨ । ଅନ୍ଧାରକଣା, ଯେତେଣ ଗଲେ ତେତେଣ ବଣା । [ବ୍ୟଙ୍ଗ]

୮୩ । ଅନ୍ଧଗାଁକୁ ଏକଆଖିଆ ରଜା [ବ୍ୟଙ୍ଗ]

୮୪ । ଅନ୍ଧାରଘରେ କାଣୀ (କଣା) ଝ ମଟକ (ବିଲେଇ), ଯାହା ଥାଏ (ପାଏ) ତାହା ଅଣ୍ଟାରେ ଯାକେ (ଖୋସେ) । [ଢଗ]

୮୫ । ଅନ୍ଧାର ଘରକୁ ଜକ୍‌ଜକ୍‌ଲା ଦୀପ, ସୁନ୍ଦର ବ (ବୁ) ଶନ୍ତ ବାଙ୍ଗର (ବାଙ୍ଗୁରା) ଲୋକ । [ଢଗ]

୮୬ । ଅନ୍ଧାରୁଆ ଗଳା ଚୋଟା; ଅନ୍ଧାରୁଆ ଜଳ ଭିତରେ ଅଣ୍ଟା ଧୁକୁଳ ଢମରପଟା; (ଚୋଟାରେ ଭେଟିଲି ସାଇ ପଡ଼ଣା, ମନୁ ଗୁଣ୍ଡିଗଲା ଦକା ) । [ଢଗ]

୮୭ । ଅନ୍ଧୁଳି ଦେଶକୁ ବେବୁଝା ରଜା, ଟଙ୍କା ସେର ଖଜା ତ ଟଙ୍କାସେର ଖଜା । [ବଙ୍ଗଳା ପ୍ରବାଦର ଅନୁବାଦ]

୮୮ । ଅପମାନ ପାଇ ଅଳସୀ ସ୍ୱାଗେ, କଥା ନ କହିଲା ଗୁ (ଗୌରସ୍ତ ସଙ୍ଗେ(ଆଗେ) । [ହାସ୍ୟତରଙ୍ଗ]

୮୯ । ଅପଣାତର, ବଲେଇ ବେଗଚ୍ଛ ପୋଇପତର । [ବ୍ୟଙ୍ଗ]

୯୦ । ଅପରତ୍ତ ଡମ୍ଭୁ ପାଗ(ଡ଼ି) ଗଲା ସତରଟି ।
[ଅପର୍ତ୍ତି ନାମକ ବାଳକ ପ୍ରତି ବ୍ୟଙ୍ଗ]

୯୧ । ଅପସନ୍ଦ କଥା ଶୁଣ ମାଇପେ, ଧାନ ଶୁଖୁଥିଲା ବଖଣାଟାକେ । [ବ୍ୟଙ୍ଗ]

୯୨ । ଅପା, ତୋଳ ଯାଉ (ବସୁ) ଥାଉ କପା । [ବ୍ୟଙ୍ଗ]

୯୩ । ଅପାଟବ (ପ) କଥା, ମନେ ହଏ ବଥା (ନାହିଁ ବାଡ଼ ବତା) । [ବ୍ୟଙ୍ଗ]

୯୪ । ଅପୂର୍ବ କାନ୍ତ, ରୂପ ଦେଖି କର ମାଡ଼ୁଚ୍ଛ ବାନ୍ତ । [ବ୍ୟଙ୍ଗ].

୯୫ । ଅବା(ବେ)ଇଜ । [ଗାଳି]

୯୬ । ଅବାଣୀ କାଟଲ ଝୋଟ, ଠାଏ ସବୁ ଠାଏ ମୋଟ । [ବ୍ୟଂଗ]

୯୭ । ଅବଲୀ ଘୋଡ଼କୁ ବଲା ଗଲା, ବଲା ଦୋଇଲା ମୋ ପ୍ରାଣ (ଜୀବନ) ଗଲା । [ବ୍ୟଂଗ]

୯୮ । ଅବଲା ବଲା, ଘରେ ଭାତ ନାହିଁ ଦାଣ୍ଡକୁ ପଲା । [ଢଗ]

୯୯ । ଅବଧାନ ! ଆଗ (କାଳୀ) ମାଇପକୁ ଚଢ଼ଗୁପଡ଼ (ଗୁପୁଡ଼, ଗୁପୁଡ଼ା, ଗୁପୋଡ଼ା), ପଛ (ଗୋଶା) ମାଇପକୁ ସାବଧାନ । [ଢଗ]

୧୦୦ । ଅବଧାନେ ଗୁମୁ ! ବଲେଇ ତୁମର ମାମୁ, କୁକୁର ତୁମର ଅଜା, ଖାଇବ ଖଣ୍ଡ ଜଜା । [ଗୃହଶାଳୀ ଅବଧାନଙ୍କୁ ବୟସ୍କମାନଙ୍କର ବଦ୍ରୁପୋକ୍ତି]

୧୦୧ । ଅତେ(ଅଭସ୍ଥ)ବର ଦେ ମତେ, ଘଣ୍ଟ ଘୋଡ଼େଇ ରଖିବ ତତେ ।

[ନିର୍ଦ୍ଦଗ୍ରସ୍ତ ବ୍ୟକ୍ତି ଅନ୍ୟ ବ୍ୟକ୍ତି ନିକଟରେ ଅନୁଗ୍ରହପ୍ରାର୍ଥୀ ହୋଇ ଭବିଷ୍ୟତରେ ପରୋପକାର କରିବାର ଆଶା ଦେଖାଇବା ସ୍ଥଳରେ ବ୍ୟଙ୍ଗ ।]

୧୦୨ । ଅସ୍ତ୍ରାଗ୍ୟ କାଳେ ବିପରୀତ ବାଣୀ, ଗ୍ଭଳରୁ ମୂଷା ଗଡ଼ି (ପଡ଼ି) ମାରନ୍ତି କହୁଣୀ । [ଢଗ]

୧୦୩ । ଅଗ୍ରାଗ୍ୟ କାଳକୁ, ଗ୍ଭେର ପଳା(ଲେ)ଇଲେ ଡଳମାଳକୁ । [ଢଗ]

୧୦୪ । ଅଭିଆଡ଼ୀ, ଅମଙ୍ଗୁଳୀ, ନାହିଁ ନାହିଁ ଭୁଣ୍ଡୀ; ଅପାଳକମୁଣ୍ଡୀ, ଖଇଚଢ଼ାଖୁଣ୍ଟୀ, ଦାନ୍ତନକୁଟୀ, ଲେହେବରମୂଖୀ, ଏ ସାତଙ୍କ ନାଆଁ ଧରନ୍ତେ, ଆଜ ଘର ସୁଫଳେ ପାଆନ୍ତେ ।

[ ସ୍ତ୍ରୀଲୋକମାନେ ଘରରେ ଶୋଇବା ପୂର୍ବରୁ ବୋଲିବା ବଚନ । ବ୍ରହ୍ମାଙ୍କର ଉପଦେଶ୍ୟ ନାମ ଓ ଗୁଣଧାରିଣୀ ସାତୋଟି କନ୍ୟାଙ୍କ ନାମ ଧରି ଶୋଇଲେ ସକାଳ ପର୍ଯ୍ୟନ୍ତ ନିଦ୍ରିତ ବ୍ୟକ୍ତିକୁ କୌଣସି ଆପଦ ଘଟେ ନାହିଁ ବୋଲି ଲୌକିକ ବିଶ୍ୱାସ ଅଛି । ]

୧୦୫ । ଅଭିଆଣରେ ଭିଆଣ ଦେଖ, ପେଜପିଅଠାରେ(ଠେଇଁ) ବାଜୁଛି ଶଙ୍ଖ । [ ବ୍ୟଙ୍ଗ ]

୧୦୬ । ଅଭିଆଡ଼ୀ ସୂତା କାଟିଲେ ଘଣ୍ଟେ, ଅଭିଆଣ କଥା ଦେଖିଲେ ଦାଣ୍ଡେ । [ବ୍ୟଙ୍ଗ]

୧୦୭ । ଅଭିଳ ଭଲ, ଅଭିଲ ଦେଇଛ ମାଙ୍କଡ଼ (ବିଗୁଡ଼ି) ପିଲା । [ଢଗ]

୧୦୮ । ଅମମା ମାଇପ ମନ କରଛୁ, ମନର ମାଇପ ଶେଯ ପାରଛୁ, ବେହ୍ମ ବ୍ୟାହ୍ମ ମାଇପର ପାଳ, ଥୋଇଲି ମାଇପ ବନ୍ଧାପନା ଦନ ଘଇଡା ବସିଛୁ ଭଲ ।

[ବହୁବିବାହିତ ସ୍ୱାମୀର ହଟହଟା ପ୍ରତି ବ୍ୟଙ୍ଗୋକ୍ତି ]

୧୦୯ । ଅମୁକ ଦେଶରେ ଘର, ଅମୁକେଇଙ୍କର ପୋ(ପୁଅ), ଅମୁକେଇ, ଭଲ ପିଲା ।

[ ଆଧୁନିକ ସରକାରୀ ଶିକ୍ଷା ସାଙ୍ଗ କରି ପରୀକ୍ଷାରେ ପାଶ କରିଥିବା ବାଳକକୁ ସାର୍ଟିଫିକେଟ ମିଳିବା ସମ୍ବନ୍ଧେ ମରହଟ୍ଠୀମାନଙ୍କ ବର୍ଣ୍ଣନା ]

୧୧୦ । ଅମୁକ (ଯଥା ଗୋପାଳ, ଗୋବିନ୍ଦ, ଭାଗବତ ନରହରି ଦାସ)ଙ୍କ ଘୋଡ଼ା, ସେଥିକି ତିନି ଜଣ ଲୋଡ଼ା; ଜଣେ ଚଢ଼ା, ଜଣେ ଓଡ଼ା (ଅଡ଼ା); ଜଣେ ବାଟ କଢ଼ା । [ଘୋଡ଼ା ଚଢ଼ି ନ ଜାଣିବା ବ୍ୟକ୍ତି ପ୍ରତି ବିଦ୍ରୂପୋକ୍ତି ]

୧୧୧ । ଅମମା ମାଇପ ମନ କଲି, ଜଟିଆ ବାବାଜି ସାଂଗରେ ଗଲା । [ବ୍ୟଙ୍ଗ]

୧୧୨ । ଅମୃତରେ ଅରୁଚି ହଉଛି । [ବ୍ୟଙ୍ଗ]

୧୧୩ । ଅରଜି ନ ପାରି ଗରଜି ଖାଏ (ଗରଜୁଥାଏ) । [ବ୍ୟଙ୍ଗ]

୧୧୪ । ଅରଜି ନ ପାରେ ମୁଣ୍ଡ, ଭଲ ଲୋଡ଼ି(ଖୋଜୁ)ଥାଏ ତୁଣ୍ଡ (ଗରଜି ପାରେ ତୁଣ୍ଡ ।) [ବ୍ୟଙ୍ଗ]

୧୧୫ । ଅରଡ଼ ଚଢ଼େଇ ବରଡ଼ ପକ୍ଷୀ, କେଉଁ ଚଢ଼େଇର ଷାଠିଏ (କାହ୍ନାଣେ) ଆଖି?
[ପ୍ରହେଳିକା ବା ଢ଼ଁାଢ଼ଆ ଉତ୍ତର: - ଗୁଲୁଣୀ]

୧୧୬ । ଅରଟ କପାଖାଇ ଗୁଡ଼ ନାହିଁଟି, ଘଇତା ହେ(ହ)ବାର ଅସୁ ନାହିଁଟି । [ଢଗ]

୧୧୭ । ଅରୁଆ ଗ୍ରହଳ ଖିଆ, ଝୁଣ୍ଟିଆ ଶବଦ କମେଇ ଦେଲ, ଏହ୍ଳ ବାଟେ ଗଲ ଗୋଷ୍ଠ । [ଢଗ]

୧୧୮ । ଅରୁଆ ଗୃହଳ ଖିଆଇ; ଆମ ଗ୍ରଇଜର ନୋହୁରେ କାଳିଆ, କେତେ ଅନା(ନ)ଉକୁ ନରକ୍ଷି । [ଢଗ]

୧୧୯ । ଅଲଙ୍କାର ମଇଧେ ନମୁକାଠି ଥାନେ ।
[ ବାପଘରୁ ଅତି ସାମାନ୍ୟ ଅଲଙ୍କାର ପିନ୍ଧି ଆସିଥିବା ନୂଆବୋହୂ ପ୍ରତି ପଡ଼ିଶାଙ୍କର । [ବ୍ୟଙ୍ଗ]

୧୨୦ । ଅଲଣା ପଖାଳ ଖିତ, ନଡ଼ ପାନଷିଆ ଆମ ସାଆନ୍ତ, ଖଇଲେ ଯାଚନ୍ତୁ ଦାନ୍ତ ।
[ବ୍ୟଙ୍ଗ]

୧୨୧ । ଅଲକାପାଟି, ପିନ୍ଧ ନଥାପି ଥୋପି ବନ୍ଧୁପଡ଼ୁଛି ( ଓଢଣା ଭିତରେ ଦଣୁଛି ଫୁଟି, ଲୁଗା କାଢ଼ିଦେଲେ ଦଣେ ନହେଁଟି) । [ବ୍ୟଂଗ]

୧୨୨ । ଅଳ୍ପ (ଅଲପ) ଜାଣେ, ବହୁ ବଖାଣେ, ମଲବା ଜୀଇଁବା ଦୁଇ ନ ଜାଣେ ।
[ ଢ଼ଁାଢ଼ଆ, ଜ୍ୟୋତିଷ ବିଦ୍ୟା ]

୧୨୩ । ଅଳ୍ପ (ଅଲପ) ଢନକୁ ବହୁତ କଥା, ଝୁଣ ମଶବାକୁ କଲା ବିଧାତା ।
[ ଶରଦ୍ଧଣୀର ଅନୁଚନ୍ତା ]

୧୨୪ । ଅଳିଆଯାକ, ଲୁଣ୍ଡିଭ ପୁଣ୍ଡେଇ ଅଣ୍ଟିରେ ଯାକ । [ବ୍ୟଂଗ]

୧୨୫ । ଅଲପା(ପେ)ଇସିଆ ପୁଅକୁ ଭଆଁସିଆ ଝିଅ । [ବ୍ୟଂଗ]

୧୨୬ । ଅଲସୀ ମାରଇ ଫାଲୁଆ ଗୁଣ୍ଡା, ଷ୍ଟିହିଁ ରହୁଥାଏ ଗ (ଗୁ)ରୁ ହୁଣ୍ଡା ।
[ହାସ୍ୟତରଂଗ]

୧୨୭ । ଅଲ(ଲେ)କ୍ଷ'ଖେ)ଣା ପୁଂ, ଅଲ(ଲେ)କ୍ଷ(ଖେ)ଣୀ (ସ୍ତ୍ରୀ) ।
[ସ୍ତ୍ରୀମାନଙ୍କର ଗାଳି, ମନ୍ଦପ୍ରକୃତିବଶିଷ୍ଟ ବ୍ୟକ୍ତି ପ୍ରତି ]

୧୨୮ । ଅଲସୁଆ ଆଉ ତାଠଉଁ ନାହିଁ, କୁଣ୍ଟାକୁ ଢଙ୍କଣ କରଇ ନାହିଁ । [ହାସ୍ୟତରଂଗ]

୧୨୯ । ଅଲଜୁକକୁ ଲଜ ନାହିଁ, ସଭାରେ ବସିଛୁ ଗୋଡ଼ ଲମ୍ବା(ମ୍ବେ)ଇ । [ଗାଳି]

୧୩୦ । ଅଲଜୁକ ଗାଣ୍ଡିରେ ବଥ ହେଲା, ସେ ବୋଲେ ମତେ ଗ୍ରୁଇ ହେଲା । [ବ୍ୟଂଗ]

୧୩୧ । ଅଲଜୁକ ଘର ମଣ୍ଡାଗ, ପୋକ ଖାଇଗଲେ ଝିଙ୍ଗାଷୀ । [ବ୍ୟଂଗ]

୧୩୨ । ଅଲଅଲ ହୋଇ ବଢ଼ିଛୁ ଝିଅ, ଝିଅକୁ ମୁନ୍ଦଏ ତୋରଣୀ ଦଅ । [ବ୍ୟଂଗ]

୧୩୩ । ଅଲେଇଟାଏ । ଅଲେଇ ପାଖରେ (ଦୁଆରେ) ବାଲେଇଟାଏ ।

୧୩୪ । ଅଲେଇମେଣ୍ଡ, ଖାଲେ ପାଉଥାଏ ପଡରଖଣ୍ଡ । [ବ୍ୟଂଗ]

୧୩୫ । ଅଷ୍ଟବଙ୍କା ଖୋଳେ ମାଟି, ଗାଣ୍ଡି ଟେକେଟା ଛଅଟା ଆଖି ।

[ନାଁଦିଆ ହଳ ବୁଲିବା]

୧୩୬ । ଅସନା କଥା, ଗୋଡ ନାହିଁ ଖାଲି (ଭୁଞ୍ଜା) ହାତ ଦଉଟା [ଢଗ]

୧୩୭ । ଅସଲ କଥା, ମୋ ଗାଈ ବେଇଛି ଛେଳି (ଦୁଇଟା) । [ବ୍ୟଂଗ]

୧୩୮ । ଅସଲକୁ ଠିକ୍ ନାହିଁ ଖାସ୍ ଡହଲୁଛି ? [ବ୍ୟଂଗ]

୧୩୯ । ଅସୁନ୍ଦରୀ ଜନ୍ମ ହେଲେ କାହିଁକି ? ସୁନ୍ଦରୀଙ୍କ ଦାହୁନବା ପାଇଁକି ? [ବ୍ୟଂଗ]

୧୪୦ । ଅବ୍ଧି, କାଳ (ଳ)ଣ, ଚନ୍ଦ୍ର, ଟଙ୍କାର, ତଳସ୍ଥ, ପବନ, ଯବ, ଶଶୀ, ପରମାଣ ।
ଅଂଗୁଠି ଦେଖାଇ ମାପ କରିବ ବଖାଣ ।

[ଅଦ୍ୱଠାରନାମକ ଠାର ଠାଣବାର ନିୟମ]

---

# ଆ

୧ । ଆଇଁଷ, ପରମାଇଷ । [ବ୍ୟଂଗୋକ୍ତି -- ମାଛ ଖାଇଲେ ପରମାୟୁ ବଢ଼େ ]

୨ । ଆଇଁଷି ମନ୍ତ୍ର କାଇଁଷି ମନ୍ତ୍ର ପିଠାକୁ (ହଗାକୁ) ମନ୍ତ୍ର ଜୁଆଣି, ତୁମେ ଯାହିଁ ପାଇଁ ନସର ପସର, ଆମେ ସେ ଭଥାଟି ଜାଣି ।

(ମୋଠଉଁ ଯେ ମନ୍ତ୍ର ଶିଖିବ ତେନବେଳେ ତନ କହୁଣୀ)

[ ମନ୍ତ୍ର ଯନ୍ତ୍ର ବାକ୍ୟମାନଙ୍କ ବ୍ୟଂଗାନୁକରଣ ]

୩ । ଆଉ କ ଅଛି ? ମୋ ପିଣ୍ଡାରେ ତୋ ଗାଈ ବେଇଛି (ତୋ ପିଣ୍ଡାରେ ମୋ ଗାଈ ବେଇଛି) [ଦୈବାଘଟଣା ଛଳରେ ବନ୍ଧୁତା ସ୍ଥାପନ କରିବା ବ୍ୟକ୍ତି ପ୍ରତି ବ୍ୟଂଗ]

୪ ।ଆକଟ ପଡ଼ିଲେ ଅପାକୁ ଡାକ (ଡାକସି । [ ବ୍ୟଙ୍ଗ

୫ । ଆଖିକେ ସମ ସମ, ଆଖିକେ ଡାମରା କୁଆ (କାଉ) [ବ୍ୟଙ୍ଗ ]

୬ । ଆଖିରେ ପକେଇ ଦଉଛି ଧୂଳି, ମାଡ଼ ମାଉ ଫେର କରୁଛି କଳି । [ବ୍ୟଙ୍ଗ ]

୭ । ଆଖି ଥାଉଁ ଥାଉଁ ଅନ୍ଧ (କଣା ) । [ଗାଳି]

୮ । ଆଖି (ଆଖିଟି) ବଡ଼, ପେଟ (ପେଟଟି) ସାନ ।

[ବ୍ୟଙ୍ଗ — ଯାହାର ଲୋଭ ବେଶି କିନ୍ତୁ ବହୁତ ଖାଇ ପାରେ ନାହିଁ]

୯ । ଆଖୁବାଡ଼ିରେ ଜନ୍ମ ; ଆଖୁଆ ମାଇପ ଦୋପିଚନ୍ଦନ, ଯାଉଁ ଆସୁ ଦରଶନ ।[ଢଗ]

୧୦ । ଆଖେଇଲୁ, ଆଖଉ ଆଖଉ ପାଖେଇଲୁ । [ବ୍ୟଙ୍ଗ ]

ଆଖଉଚ, ଆଖଉ ଆଖଉ ପାଖଉଚ । [ବ୍ୟଙ୍ଗ ]

୧୧ । ଆଗ କାଳିଆ । (ମଧୁଆ; ମାଧିଆ, ଯୋଗିଆ) କ

କାଳିଆ [ମଧୁଆ, ମାଧିଆ, ଯୋଗିଆ] ହାତରେ ଟଙ୍କାଟୋକର

(ପଇସା କଉଡ଼ି) ! କାଳିଆ, ମନଷ ଚିହ୍ନଇ କ ? [ବ୍ୟଙ୍ଗ]

୧୨ । ଆଗ(ଆଗେ )ଥୋ, ଗୋଡ଼ ଧୋ । [ବ୍ୟଙ୍ଗ]

୧୩ । ଆଗେ ରେ କାଳିଆ, ନାହିଁ କରୁଥିଲୁ
(ଗର୍ଜ୍ଜି ମାରୁଥିଲୁ) ଶିଂଗା(ଘା) ଣି ନାକ ଦେଖି ;
ଏବେ ରେ କାଳିଆ, ଝୁଂରି ମରୁଅଛୁ ଥନ ଯଉବନ ଦେଖି । [ବ୍ୟଙ୍ଗ]

୧୪ । ଆଙ୍ଗୁଠି ଭିତରେ ମଳି, ଭିତେରେ ଭିତେରେ ଶାହ୍ଳାସୁତର, (କବାଟ କଣରେ ଛେନା ଚକଟା)ବାହ୍ୱାରେ ଲଗିଚ୍ଛ କଳି । [ବ୍ୟଙ୍ଗ]

୧୫ । ଆଗେ ନାତ୍‌ ପଛେ ବାତ୍‌

୧୬ । ଆଗେ ମାଡ ପଛେ ବସ୍ଥର ।
[ସାମାନ୍ୟ କଥାରେ ରଗିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୧୭ । ଆଙ୍ଗୁଆ ; ଅଳପକେ ରଗୁଆ ।

୧୮ । ଆଙ୍ଗୁଆଟାଏ ' ଅଳପ କଥାରେ ରଗୁଆଟାଏ ।

୧୯ । ଆଙ୍ଗ୍ ଆଙ୍ଗ୍‌, କାମ କଥାକୁ ଖାଙ୍ଗ୍ ଖାଙ୍ଗ୍‌ ।
[କାମ କରିବାକୁ ଅନିଚ୍ଛୁକ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୨୦ । ଆଂଗେଇ ଆଂଗେଇ ହଉଛୁ; କାମ ନ କରି ରୁକ୍ଷ କଥାରେ ଆଖିକି ରଙ୍ଗେଇ ଦଉଛୁ । [କାମ କରିବାକୁ ପଶ୍ଚାତ୍ପଦ ବ୍ୟକ୍ତି ପ୍ରତି ବ୍ୟଂଗ]

୨୧ । ଆଜହୁଁ (ଆଜୁଁ) ଏଡ଼େ ! ବୁଡ଼ି ପଶିଗଲେ ( ଦାନ୍ତ ମୁଣ୍ଡ ହେଲେ, ପାଣି ପଡ଼ିଗଲେ ) ହୋଇବ (ହୋଇବୁ) କେଡ଼େ ?
[ଦୁଷ୍ଟ ବାଳକ ବାଳିକାମାନଙ୍କ ପ୍ରତି କଟାକ୍ଷ]

୨୨ । ଆଜି ନାଟ କି ନାଟ ? କାଲି ନାଟ ସିନା ନାଟ ;
କା ପାଇଁ ଆସିବ ଠେଙ୍ଗା ପାହୁରାଣୀ, କା ପାଇଁ ଆସିବ ଖଟ ।
[ଗଲ୍ପ ଗୋଟିଏ ବାଘ ଓ ବଳଦ ଏକସ୍ଥାନରେ ପଙ୍କରେ ଲାଖିଯାଇ ଉଠି ନ ପାରି ପଡ଼ି ରହିଲେ । ବଳଦ ବାଘକୁ ଲକ୍ଷ୍ୟ କରି କହୁଛି, ମୋତେ ପଙ୍କରୁ ଉଠାଇ ନେବାକୁ ଲୋକେ କାଲି ଖଟ ଧେନ ଆସିବେ, ତୋତେ ମାରି ପକାଇବାକୁ ଠେଂଗା ପାହାର ଆଣିବେ]

୨୩ । ଆଜି କାଲିକା ଟୋକାଟାକଙ୍କ ବଳ (ଜବାବ) ନାହିଁ ।
[ଆଧୁନିକ ଯୁବକଙ୍କ ପ୍ରତି ବୃଦ୍ଧଙ୍କର ବିରକ୍ତି ବଚନ]

୨୪ । ଆଜି ମଂଗଳ କାଲି ବାହା, କଣ କରୁଛ କନ୍ୟା (କନିଆ) ନାଆ । [ଢଗ]

୨୫ । ଆଜି କାଲି କହୁ ହେଲା ବରଷେ,
ପଅର ଦିନକୁ ହେବ (ହବ) ପୂରୁଷେ । [ବ୍ୟଙ୍ଗ]

୨୬ । ଆଜି ଖୁଦ ଯାଉ କାଲି ଗଇଣ୍ଠା,
ପଅର ଦିନକୁ ଦାଶ (କୁଆ) ଅଇଣ୍ଠା । [ବ୍ୟଙ୍ଗ]

୨୭ । ଆଟିକା ଢ଼ଉଟି ଧୋଇ ଥୋଇଲି ଲୋ, ଝଗିଡ଼ ପଡ଼ିଲା ଘିଅ;
ଲୋକେ ପଚ୍ଛରିଲେ କ ବୋଲି କହିବ ଲୋ, ମୁଁ ତ ଗାଁ ଆ ମକଦମା
ଝିଅ । [ବ୍ୟଂଗ]

୨୮ । ଆଟିକା । ଗୋରୁ ମାଉଁସ ଗୃଟିଖା (ହାଡ଼ରୁ ମାଉଁସ ଗୃଟିଖା) ।
[ ପିଲାଙ୍କୁ ପିଲାଏ ଚଡ଼ାଇବା ପଦ ]

୨୯ । ଆଟୁ ମାଟୁ; ଖେକ (ଝ) ରେ ହଉଚ ପାଟୁ ପାଟୁ । [ଢଗ]

୩୦ । ଆଠଖଣ୍ଡି କାଠିକ ଷୋଳ ଖଣ୍ଡି ଯନ୍ତ୍ରୀ,
ଅଗ୍ରୁଝାମଣା ରାଇଜରେ (ରଜା ସାଂଗକୁ ପାଳବଣ୍ଡା ମନ୍ତ୍ରୀ)
ପାଳବଣ୍ଡା ମନ୍ତ୍ରୀଙ୍କର ଗୋଟିଏ ଆଖି କଣା,
ଗୁଡ଼ି ପଳେଇବାଏ ରାଇଜ, କୋଦଣ୍ଡା ଗୁଝାମଣା । [ଢଗ]

୩୧ । ଆଡ଼ଢପଡ ସାଇଲି, ମୁହଁ ମାଡ଼ି କରି ଶୋଇଲି ।
[ ଅଭିମାନୀ ବଧୂର ଅନୁଚନ୍ତା ]

୩୨ । ଆଡ଼ଢପଡ ସାରିଲି, ବାଡ଼ିଆଡ଼େ କାହ୍ନ ପାରିଲି । [ ବ୍ୟଂଗ ]

୩୩ । ଆଣରେ ପିଲାଏ ମାଳି, ଚଡା କାଟି କରି ଜଟା ବାନ୍ଧଦବା ଦହରେ ପାଉଁସ
ବୋଳି [ ଭେକଧାରୀ ବାବାଜିଙ୍କ ପ୍ରତି ବ୍ୟଂଗ ]

୩୪ । ଆଡଢପଡ ସାରି ଅଇଲି, ହେଁସ କାନକ ଧରି ଶୋଇଲି (ପେଜ ପାଣି କରି
ପେଟେ ପିଇଲି) [ ଢଗ ]

୩୫ । ଆଦର ପଡ଼ିଛି ସାଦରକୁ (ସୋଦରାକ)
କୁଆ ନେଇଗଲା ଗୋଦରକୁ (ଗୋଦରାକ) । [ ବ୍ୟଂଗ ]

୩୬ । ଆଦର ପଡ଼ିଛି ଦୋଦରାକ, କୁଣ୍ଡା ପିଠା ଦେଇ ସୋଦରାକ । [ ବ୍ୟଂଗ ]

୩୭ । ଆଦର ପଡ଼ିଛି କୁଣ୍ଡାଖାଇକ, କୁଣ୍ଡା ଖାଇଯାଏ ଆର ସାଇକ । [ ବ୍ୟଂଗ ]

୩୮ । ଆଦରି ଆଦରି ବାହାକୁ, ବାନ୍ଦରମୁହାଁ କାହାକୁ ? (ପାଇଲି ବାନ୍ଦରମୁହାଁକୁ) ।
[ଅସୁନ୍ଦରୀ ବଧବା ବା ଅସୁନ୍ଦର ମୃତଦାର ପୁନର୍ବାର ବିବାହ ବା ଦ୍ୱିତୀୟ ହେବା
ଉପଲକ୍ଷରେ ବ୍ୟଂଗ ]

୩୯ । ଆପ୍ କଥାକୁ ଇଲାଜ କଥା ,
ଆପଣା କଥାକୁ ଇଲାଜ କଥା ! [ବ୍ୟଂଗ ]

୪୦ । ଆପଣା ବେଳ (ପୁଅ)କୁ ଫାଲୁଆ ଗୁଣ୍ଡା, ପରବେ (ପୁଅ)କୁ
ଗୋବର ଲଣ୍ଡା । [ବ୍ୟଙ୍ଗ]

୪୧ । ଆପଣାର ସାଚ ପୁତ, ପରର ଦେଖିଲେ କାଠ ଭୂତ! [ବ୍ୟଙ୍ଗ]

୪୨ । ଆପଣା ପୁଅ ସୁନ୍ଦର, ପରପୁଅ ବାନ୍ଦର । [ବ୍ୟଂଗ]

୪୩ । ଆପଣା ବେଳକୁ ପାଞ୍ଚକଡ଼ା, ପର ବେଳକୁ ଉନକଡା । [ବ୍ୟଂଗ]

୪୪ । ଆପଣା ସୁନା ତ ଭେଣ୍ଡୀ, ପର ସାଂଗେ କଥାଁ ବାଳ (ଚୁଟି)ଧରାଧରି [ବ୍ୟଂଗ]

୪୫ । ଆପୁ ଜଡ଼ାତେଲ କରଞ୍ଜ ବକଲ, ଗୁଆ ଦହି ସଂଗେ ଖାଉ (ଥା) ।
ମର ଆନନ୍ଦରେ ସାଇଙ୍କ କାନ୍ଧରେ ମଶାଣି ଭୂଇଁକି ଯାଉ (ଯା) । [ଗାଳି]

୪୬ । ଆପେ ଖାଇବ ( ବୁ ) ନାହିଁ, କି ପରକୁ ଖୁଆଇ ଦବ(ବୁ) ନାହିଁ । [ଗାଳି]

୪୭ । ଆପେ(ଆପଣା) ସାଆନ୍ତ କଟକ ଯାଏ ଭଣ୍ଡାରି ହାତରେ ଖବର
(ଚିଟଉ) ହଏ । [ବ୍ୟଂଗ ]

୪୮ । ଆମ ଉଖୁଡ଼ା ସେରକ ଦଅ ତୁମର ନାଁଆଁ ଫେରା (ରେ) ଇ ନଅ । [ବ୍ୟଂଗ]

୪୯ । ଆମ୍ଭ ବାପାଙ୍କ ଅମଳରେ ଅଣ୍ଡକରେ ଘିଅ ପରଶା ହଉଥିଲା । [ବ୍ୟଂଗ]

୫୦ । ଆମ୍ଭ ବଡ଼ ବଡଙ୍କେ ଏକଥା ନ ଥିଲା, (ଦେଖା ନ ଥିଲା,
ଶୁଣା ନ ଥିଲା ) । [ଖେଦୋକ୍ତି]

୫୧ । ଆମର ଏତେ ଗହ୍ୱରରେ ସ୍ନୁଷ କଥାଁ ? ସାଡ ପାହୁଲେ ହବ
ପୁଅ (ବାହା) ଭଆ ! [ଢଗ]

୫୨ । ଆମେ ! ନା-ବାଣପୁରଆ ହାଣ୍ଡି (ମଧୁପୁରଆ ଡମ)
[ଆତ୍ମଗର୍ବୀ ନଗଣ୍ୟ ବ୍ୟକ୍ତିକୁ ବ୍ୟଙ୍ଗ]

୫୩ । ଆମେ ଗୋରୁ ଚରଉଛୁଁ ଆପଣ (ତମେ, ତେମେ, ତୁମେ, ମଣିମା) ମଣିଷ
ଚରଉଛ । [ସ୍ତୁତି ବଚନ]

୫୪ । ଆମ୍ଭ ଗଛର ଆବୁ ; ମତେ କହୁଅଛୁ (ନ କହ ତୁ) ସାନ ବୋଲୁ, ମୁଁ ତ
ଯୋଡ଼ାକର ବାବୁ । [ଢଗ]

୫୫ । ଆମ୍ଭ ତାହ ଖଣ୍ଡି ନହକଲା ; ହାଟକୁ ଯାଉଛୁ ରୁକୁଣୀ ନାନୀ, (ବାଟେ ଯାଉଥିଲା
ଗେନ୍ଦେଇ ନାନୀ), ଗଭା ମଲ୍ଲୀଫୁଲ ମହକଲା । [ଉକ୍ତ ନାମ୍ନୀ ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୫୬ । ଆମ୍ଭ ଫଳେ ଚେପ୍ଟା ଚେପ୍ଟା, କମ୍ୱାଁ ଫଳେ ବଙ୍କା ; ପୁଅ ଯାଇଥେଲା କଲିକତା,
ଆଣିଛୁ ମୁଠିଏ (ଅଞ୍ଜିଏ) ଟଙ୍କା । [ଢଗ]

୫୭ । ଆମ୍ଭ ତାହ ଖଣ୍ଡି ବଙ୍କା ; ମୋତେ କାହିଁପାଇଁ (କୋଉ କଥାପେଇଁ) ମୁହଁଟା
ବଙ୍କା, କାଲି ପିନ୍ଧେଇବ ଶଙ୍ଖା । [ଢଗ]

୫୮ । ଆମ୍ଭକ (ଆମ୍ଭ) ଦନେ ପଣସ, କଥା ନ କହନ୍ତି ମଣିଷ । [ଢଗ]

୫୯ । ଆମ୍ଭକଷି ; କଥା ନହସରେ ପଶି ଅଇଲ (ବାହାରିଗଲା, ଅଇଲ ପଶି), ମତେ
ନ ବୋଲିବୁ ବଳପଶି (ବଳେପଶି) । [ଢଗ]

୬୦ । ଆମ୍ଭପାଇଁ ଗଲି, ଅବାଟେ ପଶିଲି, ହଟେଇଲି ଗୋଡ଼ ମୁଦ ;
ସରୁ ସରୁ କରି ସୂତା କାଟୁଥିବୁ, ବୁଣିଦେବ କଳା ଖଦ । [ଢଗ]

୬୧ । ଆମ୍ଭଗଛ ଝନକନା ; କୁଣିଆ ପଡ଼ିଲେ ବୋଲି ଏବେ କଲୁ, ଭାତ ସୁହଲିଆ
ଫିନା । [ଢଗ]

୬୨ । ଆମ୍ବ ଧଇଲା ବଉଳ ; କାଖ କରନେବ, ହଅ ଦେଖେଇବ, ଭୋବନଶ୍ବର ଦେଉଳ (ଢଉଳ) । [ଢଗ]

୬୩ । ଆମ୍ବ କୋଇଲି ; ମୋ ଧନକୁ ଖଟୁଛନ୍ତି ଯୋଡ଼ା ପୋଇଲି ।
[ବିଳାସିନୀ ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୬୪ । ଆମ୍ବ ବଉଳ ! ସରଗଲା (ଗ୍ଭର୍ଙ୍ଗିଗଲା) ତୁମ୍ଭ ଆମ୍ଭର ମେଳ (ଖେଳ) ।
[ଶାଶୁ ଘରକୁ ଯାଉଥିବା ଝିଅର ସଙ୍ଗିନୀମାନଙ୍କ ନିକଟରେ ବାହୁନା]

୬୫ । ଆମ୍ବଗଛର ଶିଅ ; ବୁଢ଼ା ଆଗେ ବୁଢ଼ୀ ସକେଇ କାନ୍ଦେ, (ମୋ) ଖଣ୍ଡୁ ବଦଳେଇ ହଅ । [ଢଗ]

୬୬ । ଆମ୍ବଗଛରେ ଆମ୍ବ ନାହିଁ, ଫୋପଡ଼ କାହିଁକି ମାରୁ ? ଅଣ୍ଟା ଗୁଣପାଖେ ପଇସା ନାହିଁ, ଆଖି କାହିଁପାଇଁ ଠାରୁ ? [ଢଗ]

୬୭ । ଆମ୍ବିଳ ଡରେ, ଯାଇ ପଶିଗଲି ତନ୍ତୁଳି ଘରେ । [ଢଗ]

୬୮ । ଆମ୍ବୁଲ ମାଠିଆ ଯେଉଁଠି; (ବୁଢ଼ା) ଗଣ୍ଡ ଗଣ୍ଡ ଯାଇଁ ସେଇଠି । [ବ୍ୟଙ୍ଗ]

୬୯ । ଆମ୍ବୁଲ ମାଠିଆ କଣା ; ଝାଳ ଟୋପି ଟୋପି ନାକରେ ଗୁଣା, ଖଗ୍ଭବେଳେ ପାଣି ଅଣା (ହେଲ ବଣା) । [ଢଗ]

୭୦ । ଅମ୍ବୁଲ ମାଠିଆ ପେଟ ; ଛମାସ ଜଗିଲି ଦେଉଳ ବାଟ (ଯମୁନା ଘାଟ), ଦିନେ ନ ପାଇଲି ଭେଟ । [ଢଗ]

୭୧ । ଆମ୍ବୁଲ ମାଠିଆ ଫଟା ; ଗୁଣ୍ଡିର ଗାଈକୁ ଗୋଡ଼େଇ ଗଲି, ମାଡ଼ିଲି ବାଉଁଶ କଣ୍ଟା । [ଢଗ]

୭୨ । ଆରମ୍ଭ ଭୁବନାନନ୍ଦ, ଆଚରଣ (ପ୍ରକୃତ) ହାଣ୍ଡି ବାଉଁଶରୁ ମନ୍ଦ । [ବ୍ୟଙ୍ଗ]

୭୩ । ଆର ଜନମରେ ସଉତୁଣୀ, ଏ ଜନମରେ ଶାଶୁ, ବଅସ (ବୟସ) ଦିନେ ଲୁହ ଗଡ଼ୁଥି(ଥୋ)ଲା, ବୁଢ଼ୀଦିନକୁ (ବୁଢ଼ୀଦିନେ ଏବେ) ହସୁ ।
[ବୋହୂ ପ୍ରତି ନିଷ୍ଠୁର ବ୍ୟବହାରକାରିଣୀ ଶାଶୁ ସମ୍ବନ୍ଧେ ଲାଞ୍ଛିତା ବଧୂର ଅନୁଚିନ୍ତା]

୭୪ । ଆରତ ମାଲୁ ; ଖାଏ କନ୍ଦମୂଳ ହଗେ ସାରୁ । ମାଇପ ବୋଇଲା ଏ କଅଣ ? ଆଲୋ କଳାମୁଣ୍ଡି ! ମୁଗ ତଅଣ । [ଢଗ]

୭୫ । ଆରେ ଅଳସୁଆ ମଠ କର, ଯେତେବେଳେ ହେଲେ ତୋହୋ (ତୋ) ଉପର । [ଢଗ]

୭୬ । ଆରେ ଆରତ ! ଗାଈ ଦୁହୁଁ ଦୁହୁଁ ମାଇଲା ନାତ ।
[ଆର୍ତ୍ତ ନାମକ ବାଳକ ପ୍ରତି ବିଦ୍ରୂପ]

୭୭ । ଆରେ ଆରତା, ମାଆ ମରିଗଲା ଦେ ବାରତା (ବାପ ମରିଗଲେ ହବୁ କରତା)
[ଆରତ ପ୍ରତି ବିଦ୍ରୂପ]

୭୮ । ଆରେ ଓପକା ! (ଅଲଖା) ! ଗାଣ୍ଡି ସଲ ସଲ (ସୁଲୁ ସୁଲୁ) କଥାଁକୁ ଦେଖା । [ବ୍ୟଙ୍ଗ]

୭୯ । ଆରେ କରୁଣା ! ନୂଆ ଦେଖି ପାଶୋରିଲୁ ପୁରୁଣା । [ବ୍ୟଙ୍ଗ]

୮୦ । ଆରେ କାଉ ! ମଲାଢିପରେ ଶଗଡ଼ ଘାଉ । [ବ୍ୟଙ୍ଗ]

୮୧ । ଆରେ ଘରଣା ! ଖିଚ ଥାଉ ଥାଉ ଗୁଡ଼ଲ କଣା [ବ୍ୟଙ୍ଗ]

୮୨ । ଆରେ ଚଇତା । ଦ ମାଇପର ଘଇତା ! ଚଦଚ (ଚଚଲ) ଖାଇବୁ କି ପଖାଳ ଖାଇବୁ ? ବେଲ ଥାଉଁ ଥାଉଁ କହୁଥା । [ବ୍ୟଙ୍ଗ]

୮୩ । ଆରେ ଚେଙ୍ଗୁପୋ ମିସ୍ତ୍ରି ! ବାରପଣ ପାଇଁ ଗୁଡ଼କଣ୍ଡି କରି, କାହ୍ନାଣେ ଦଉଚ୍ଛୁ ଦସ୍ତୁର । [ବ୍ୟଙ୍ଗ]

୮୪ । ଆରେ ନବୀନା ! ଗୁହ ମାଡ଼ିଗଲେ ଗୋବର ସିନା । [ବ୍ୟଙ୍ଗ]

୮୫ । ଆରେ ଚେମଣା (ଚମଣା) ! ବୁଲି ବୁଲି ଆସି (ଫେରି) ସେହି ଅଗଣା । [ବ୍ୟଙ୍ଗ]

୮୬ । ଆରେ ବଧାତା ! ଆପେ ଜାଣିଥିଲେ ପୁଅ ଘଇତା । [ଢଗ]

୮୭ । ଆରେ ଖଇ ! ଅରଜି ପାରିଲେ ଗରଜି ଖାଇ । [ଢଗ]

୮୮ । ଆରେ ମେର ବାପରେ ! ଅଠାଗାଣ୍ଡିରେ କାଦୁଅ ମେଞ୍ଚାଏ, କଢ ନଢ ମାପରେ [ଢଗ]

୮୯ । ଆରେ (ହେ) ରସିକ ! କଖାରୁ ଫୁଲକୁ ପାରୁଡ଼ା ପୋକ । [ବ୍ୟଙ୍ଗ]

୯୦ । ଆରେ ରସିକା ! ପେଟ•କଲ କଲ ବଇଦ ଦେଖା (ପିଚ୍ଛୁ ଫଡ଼ ଫଡ଼ କଥାଁକୁ ଦେଖା) । [ରସିକା ନାମକ ବ୍ୟକ୍ତିକୁ ବିଦ୍ରୂପ]

୯୧ । ଆରେ ରଣା (ରାବଣା) ! ବୁଲି ବୁଲି ଫେର ସେହି ଅଗଣା । [ବ୍ୟଙ୍ଗ]

୯୨ । ଆରେ ରାବଣ ! ଅଲପ କଥାରେ ଗଲା ତୋ ପ୍ରାଣ (ଆପଣା ଗ୍ରାଏଁ ହରେଇଲୁ ବଡ଼ ପଣ) । [ଢଗ]

୯୩ । ଆରେ କଲଠା ! ହବି ଗନ୍ଧଦେଲେ ପିନ୍ଧନ୍ତୁଁ ମଠା [ଢଗ]

୯୪ । ଆରେ ମୋହନା ! ଦାପ ଶିରାଧକୁ ସିଁଥିଆ ଦନା ।
[ ମୋହନ ନାମକ ପିଲାକୁ ବିଦ୍ରୂପ ]

୯୫ । ଆରେ ଭିକା ! ପେଟ ପୋଡ଼ିଗଲା ପାଟିକି ପକା ।
[ଭିକାରି ନାମକ ପିଲାକୁ ବିଦ୍ରୂପ]

୯୬ । ଆରେ ଲଣ୍ଡା ! ମୋ ଭାତ ଖାଇ ମୋତେ ଖଣ୍ଡା । [ବ୍ୟଙ୍ଗ]

୯୭ । ଆଲ୍ ବୋଇଲେ କାଲ ଶୁଝେ (ଶୁଭେ), ଘରପୋଡ଼ି ବୋଇଲେ ବଣପୋଡ଼ି ଶୁଝେ (ଶୁଭେ) [ବ୍ୟଙ୍ଗ]

୯୮ । ଆଳି ରାଇଜର କେନ୍ଦୁ ; ଆଳିଆ ଲେଖାରେ ବାଳିଆ ବନ୍ଧୁ,
କେତେ ବାହୁନେଇ କାନ୍ଦୁ । [ଢଗ]

୯୯ । ଆଲ ରାଜ୍ୟ (ରାଇଜ) କୁ ସମ୍ବଲପୁର ବାଟ । [ ବ୍ୟଙ୍ଗ ]

୧୦୦ । ଆଜ୍ଜୁ ବାଇଗଣ ସାରୁ ପଣସ, ଗୋଦର ଗୋଡ଼କୁ ହଲେଇ ଦବା । [ବ୍ୟଂଗ]

୧୦୧ । ଆଜ୍ଜୁ ପତରକୁ ସାରୁ ପତର, ପିଠ ଖାଉଥିଲ ଖର ; ଆଗେ ଅଣ୍ଟୁ ନଥିଲ (ଖାଉଥିଲୁ) କୁଣ୍ଡା ଚକୁଳି, ଏବେ ରୁଚୁନାହିଁ (ଫଙ୍ଗୁଆଉ) ବରବର । [ବ୍ୟଙ୍ଗ]

୧୦୨ । ଆଜ୍ଜୁ ବାରପଲ. ସାରୁ ବାରପଲ, ବାର୍ ବାର୍ ପଲ ଚଵଶିପଲ ।
[ର, ଲ ର ଅନୁପ୍ରାସଯୁକ୍ତ ପଦ]

୧୦୪ । ଅଲେ କାଲୀ, ବେକେରେ ପିନ୍ଧିଛୁ କୋଚଲାମାଲ ଉହିଁକ (ରେ) ହୋଇଛୁ ରାନ୍ଧଣାପାଲ । [କାଲୀ ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୧୦୫ । ଆଲେ ଅନ୍ଧ ! ଆଖୁ ଚେକ ଚେକ ରେବେଇ ଖାଇ ।
[ପାକୋଇ ଆଇକୁ ପିଲାମାନଙ୍କ ବ୍ୟଙ୍ଗ]

୧୦୬ । ଆଲେ ମାଗୁଣି! ମାଆ (ଆଇ)ଟି ତୋହର ବୁଢ଼ୀ ବାଘୁଣୀ ।
[ମାଗୁଣୀ ନାମ୍ନୀ ବାଳିକାକୁ ବ୍ୟଙ୍ଗ]

୧୦୭ । ଆଲେ କମଳା ! ସାନ ଦନକୁ ଲୁଗା ପିନ୍ଧୁ (ପିଲାଟି ଦନେ ଲୁଗା ପିନ୍ଧ ଥ ଉ) ବଡ଼ ଦନକୁ ଲଙ୍ଗଳା । [ନାଁ ଦଆ ; ବାଉଁଶ ଗଛ]

୧୦୮ । ଆଲେ ଅଲସୀ ! ଖଡ଼ୁ ସନ୍ଧରେ ତୋ ମଳ ଲାଗିଛି ! ନାଁ, ଥାଏ ସିନା, ଖାଡ ପଖାଳିଲେ ଯାଏ ସିନା । [ଅପରିଷ୍କୃତା ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୧୦୯ । ଆ (ଆ ଆ ଲେ ମୁରୁଖ, ( ସଙ୍ଗୀତ ବଉଳ ) ଶୋଇବା ; ତୁ ତ ମୁରୁଖି, ମୁଁ ତ ମୁରୁଖ ଶେଜ କାହିଁପାଇଁ ଧୋଇବା ? [ବ୍ୟଙ୍ଗ]

୧୧୦ । ଆଲେ ମୁକୁତ ! ଗୁରୁବାର ଦନ ହବୁ ପୋଖତ; ପୁଅ ନାଆଁ ଦବୁ ଚକରଧର, ମୁଡ ପକେଇବ ଚରୁ ଚର । [ମୁକ୍ତା ନାମକ ବାଳିକା ପ୍ରତି ବିଦ୍ରୂପ ]

୧୧୧ । ଆଲେ ଗେନ୍ଦେଇ ! କେତେ ହଉଥାଉ ନୋଥ (ଳୋଥ) ହଲେଇ !
[ଗେନ୍ଦେଇ ନାମ୍ନୀ ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୧୧୨ । ଆଲେ ଲେ ଜାନକୀ ନାମୀ, ରାଜ୍ୟ ବାର୍ତ୍ତା କଥା କହ ; ତୋତେ ତ ଦେଖିଲେ ମୋର ବୁଲଉ ଅଛୁଟି ଦହ । [ସଂସ୍କୃତ ଶ୍ଲୋକ ରଚନା ପ୍ରତି ବ୍ୟଙ୍ଗ]

୧୧୩ । ଆଲେ ମୁକୁତ ! ବାରବରଷରେ ହବୁ ପୋଖତ
ଆଲେ ମୁକୁତା, ତୋପେଇଁ ଆଣିବ କପଡ଼ା ଛତା ।
ଆଲେ ମୁକୁତା, କୁହୁଲା ଲୁଣ୍ଡା (ଚୂଲ) ଫୁଙ୍କୁଆ ।
[ମୁକ୍ତା ନାମ୍ନୀ ବାଳିକାକୁ ବିଦ୍ରୂପ]

୧୧୪ । ଆଲେ ସଖ ! ବଡ଼ ଦେଉଳକୁ(ରେ) ପିମ୍ପୁଡ଼ି ଗିଲଲ କୁଆଁରେ ଗଳିଲ ନଉତ । [ଡଗ]

୧୧୫ । ଆଲେ ଶିଖ ! ପତର ଗଲଣି ଚଶ, କାହିଁରେ ଖାଇବୁ ଖିସ ।
[ଶିଖ ବା ଶ୍ରୀମତୀ ନାମ୍ନୀ ବାଳିକାକୁ ଚିଡ଼େଇବା ଗୀତ ]

୧୧୬ । ଆମ୍ଭେ ବୋଉ ! ଖୁଦୁଯାଉ ସାଂଗେ ସିଝା ଓଉ [ଢଗ]

୧୧୭ । ଆସନ୍ତା କାଲ ବାଡ଼ୀ ଖାଆନ୍ତା ମୋତେ, ଖବର ଯାଆନ୍ତାଟି ସାଙ୍ଖିତ (ଡିଗିଦ) ହାତେ । [ଶାଶୁ ଘରେ ଉତ୍ପୀଡ଼ିତା ବଧୂର ମାନସିକ ଚନ୍ତା]

୧୧୮ । ଆସରେ ପିଲାଏ ଦେଖିବ ଭଲ ! ହେଁସ ବେଇଅଛୁ (ମୁନ୍ଦୁସ୍ତ ବେଇଛୁ) ବୁଗୁଡ଼ (ବିଲେଇ) ପିଲ । [ବ୍ୟଙ୍ଗ]

୧୧୯ । ଆସ ଯାଆ କରୁଥା, କର୍ମ ଘିନ ବୁଲୁଥା । [ବ୍ୟଙ୍ଗ]

୧୨୦ । ଆସିଲ ତ ବନ୍ଧୁ ଭଲ କଲ, ବସିବାକୁ ନାହିଁ ଠାଆ,
ପାଣି ମୁନ୍ଦାଏ ଦଅନ୍ତ ବନ୍ଧୁ, ଦଦରା ମାଠିଆ ;
ପିଢ଼ା ଖଣ୍ଡେ ଦଅନ୍ତ ବନ୍ଧୁ’ ବଢ଼େଇ ଘରେ ବାନ୍ଧା [ଭିଆ]
ପଇଡ଼ଟିଏ ଦଅନ୍ତ ବନ୍ଧୁ, ବାଉଶ ଖାଇଛୁ ମାଡ଼
ଯେଉଁ ବାଟେ ବାଟେ ଆସିଛ ବନ୍ଧୁ, ସେହି ବାଟେ ବାଟେ ଫେର
ସେହି ବାଟରେ ବାହୁଡ଼ । [ବ୍ୟଙ୍ଗ]

୧୨୧ । ଆସିବୁ ସିବୁରେ କଳାମାଣିକ, ଦଶୁ ନାହିଁ ମତେ ବାଟ ;
ତୋହୋ'ର ଲାଗି ମୋ ନଡ ଗଞ୍ଜଣା ପିଠିରେ ଉଲୁଲା ଗ୍ରୁଟ ;
ନଡ ବରକୋଲି ଗ୍ରୁଟ ; ନଡ ଲାଗିଛୁ ନାଟ ; ନଡ ଗରଜାଇ ଗ୍ରୁଟ ;
ତୋଲାଗି ପଡ଼ିଲା ବାଟ । [ଢଗ]

୧୨୨ । ଆସିଲେ ଆସୁ, ନ ଆସିଲେ ଆସୁ, ଆସିଲେ ବୋଲିବୁ ଯା, ଯା; ଉଠିଥିଲେ ସିବ, ବସିଥିଲେ ସିବ, ଶୋଇଲେ ନଯିବ କହଯା [ଢଗ]

୧୨୩ । ଆସିଲ ଏକା, ସିବ ଏକା, ସାଙ୍ଗରେ ନଯିବେ ପିଲା ପିଚକା । (ଜନ୍ମ ମୃତ୍ୟୁ)

୧୨୪ । ଆଯୁଥି(ଥୋ)ଲ କଥା ଲେଉଟିଗଲା, ଭାଇବୋହୂ ଥାଇ ଅଡ଼ୁଆ କଲା (ହେଲ) । [ବ୍ୟଙ୍ଗ]

୧୨୫ । ଆହା କରବାକୁ ସାହା କେହି ନାହିଁ, କାହାଗେ କହିବ ଦୁଃଖ ?
ବାହା କରବାକୁ ଯାହାକୁ ଡାକଲି, ତାକୁ ନ ଲାଗଇ ସୁଖ । [ଆହା’ର ଅନୁପ୍ରାସ]

୧୨୬ । ଆହା କ ହେଲ ! ବାଲୁତ କନଆ(ସେରଲାର ଝିଅ, ଗେହ୍ଲା ଝିଅ ମୋର) ପୁଅ ବେଇଲା, (ପୋଖରୀ ହେଲ, ପୁଆଣ୍ଡି ହେଲ) । [ବ୍ୟଙ୍ଗ]

୧୨୭ । ଆହା କ ହେଲ ! ସଞ୍ଚି ରଖିଥି (ଥେ)ଲି, ଖଣ୍ଡ ଖାଇଲା କାପାଇଁ ରଖିଲି କଏ ଖାଇଲ ? କଏ ସଞ୍ଚିଥିଲା କଏ ଖାଇଲା ? କଏ କମେଇଲା କଏ ସେ ନେଲା ? [ଅର୍ଥ ଅପବ୍ୟୟରେ 'କୃପଣର ଚନ୍ତା]

୧୨୮ । { ଆହାର ଉପରେ ପାହାର,
ଏଥି କ ଗୁଣ କାହାର ? [ବ୍ୟଂଗ]

୧୨୯ । ଆହା ମୋ ଜୀବଜୀବନ ; ପାନ ଖଣ୍ଡେ (ଖିଲେ) ଦେଇ ରଖ ପରାଣ (ଜୀବନ), ତୋ ଠାଉଁ ନଗ୍ରଡ଼େ ମନ । [ଗୀତ]

୧୩୦ । ଆହାର ମୁହଁରେ ପାହାର ଦବ ; କୁଟୁଥିଲେ ଧାନ ଉପେଇଁ ଦବ । [ବ୍ୟଙ୍ଗ]

୧୩୧ । ଆହାଲେ ଜଗତଜିତା ! ଝଲେଇ ଦଉଛୁ କାନମଲକଟି, ଦେଖଉଛୁ (ଦେଖେଇ ଦଉଛୁ) ବାହାଚତା(ଚତା) । [ଉଧାଣ]

୧୩୨ । ଆହେ ଅଜା ! ମୁଚି ନ ନଡ଼ିଆ କେଡ଼େ ମଜା !
[ଦାନ୍ତ ନ ଥିବା ବୁଢ଼ା ଅଜାଙ୍କୁ ବ୍ୟଙ୍ଗ]

୧୩୩ । ଆହେ ରସିକ ! କଖାରୁ ଫୁଲକୁ ପାରୁଡ଼ାପୋକ । [ବ୍ୟଙ୍ଗ]

—*—

## ଇ

୧ । ଇସ୍ ମିସ୍ କରମ୍ ଠିସ୍, ଠାର୍ ଠୁର୍ ଉଣେଇଶି ବିଶ୍ ।
[ଉପସ୍ଥିତ ତୃତୀୟ ବ୍ୟକ୍ତିର ଅବୋଧ୍ୟ ଭାଷାରେ ଦୁଇ ଜଣଙ୍କ କଥୋପକଥନ ଓ ଭାବର ଆଦାନ ପ୍ରଦାନ]

୨ । ଇଟା ମାଟି ହୁକୁ ହୁକୁ ; କିଏ ନେଇଗଲା ସୁନା ଫୁଲକୁ ମୋ, ତଳମାଳ ରାଇଜକୁ ।
[ସୁକୁମାରୀ ଗେହ୍ଲାଝିଅ ଦୂର ରାଜ୍ୟରେ ବିଭା ହେଲେ ତା ପ୍ରତି ବ୍ୟଙ୍ଗ ବଚନ]

୩ । ଇସ୍କୁଲ୍—ଏ କୂଳ—ସେ କୂଳ ।
(ମରହଟ୍ଠୀ ଲୋକଙ୍କ ଉକ୍ତି :—ଇଂରାଜୀ 'ସ୍କୁଲ୍' ଶବ୍ଦ ଭାଷାରେ 'ଇସ୍କୁଲ' ବୋଲି ଉଚ୍ଚାରିତ ହୁଏ । ପ୍ରଥମେ ପ୍ରଥମେ ସ୍କୁଲପଢ଼ୁଆ ନବ୍ୟ ଶିକ୍ଷିତ ଯୁବାମାନେ ଖ୍ରିଷ୍ଟାନ ବା ବିଧର୍ମୀ ହେବାରୁ ପ୍ରାଚୀନ ବ୍ୟକ୍ତିମାନେ 'ଇସ୍କୁଲ୍' ଶବ୍ଦ (ଅର୍ଥାତ୍ ହିନ୍ଦି ଭାଷାରେ ଏହି କୁଳ ବା ବଂଶ)ର ଏହି ବ୍ୟଂଗାର୍ଥ କଲେ । ଏଥିର ମର୍ମ ଏହିକି ଯେଉଁ ପିଲା ସ୍କୁଲରେ ପଢିବ ସେ ଇସ୍କୁଲରୁ (ଏ କୁଳରୁ ଅର୍ଥାତ୍ ଆମ ହିନ୍ଦୁ କୁଳରୁ) ଯାଇ ସେ କୁଳ (ଅର୍ଥାତ୍ ଖ୍ରିଷ୍ଟାନ କୁଳ)ରେ ପଶିବ ।

—*—

## ଉ

୧ । ଉଚ (ଉଚ୍ଚ) ପିଣ୍ଡା ଦେଖି ବନ୍ଧୁ କଲ (କଲି), ଝିଅକୁ (ଝିଅଟିକି) ନେଇ ଯମକୁ ଦେଲ (ଦେଲି) । [ବ୍ୟଙ୍ଗ]

୨ । ଉଞ୍ଚ ପିନ୍ଧିଥିବ କୁଞ୍ଚ ପିନ୍ଧିଥିବ, ପିନ୍ଧିଥିବ ଜଗମୋହନ ; ବାନ୍ଧବୀର କଥା ମନେ ପଡ଼ୁଥିବ, ବାଟ ଭୁଲୁଥିବ ଗହନ । [ଗୀତ]

୩ । ଉଠ୍‌ରେ ମକ୍ତୁ ପଥ୍ୟ କରବୁ, ଶିଳପୁଆ ଭଳି ଗୁଣ୍ଡା ବଳବୁ ।
[ରୋଗ ଛଳନା କରୁଥିବା ବ୍ୟକ୍ତି ପ୍ରତି ବ୍ୟଂଗ]
୪ । ଉଠି ପଡ଼ି ଧାଇଁ ଥି (ଥୋ)ବ, ସୁନ୍ଦର ବଦନ ଗୁହିଁ ଥି (ଥୋ)ବ ।
[ବ୍ୟଂଗ—କଷ୍ଟ ଓ ଦଣ୍ଡ ପାଇ ସୁଦ୍ଧା ପ୍ରେମିକକୁ ପାଖରୁ ଗ୍ରାଡ଼ିବ ନାହିଁ]
୫ । ଉଠିବ ! ଚୁଟି ଧରିକରି କୁଟିବ, (ଗୋଟାକେତେ କୁଟିବ ଧୁଲ୍‌ଦାଲ କୁଟିବ, ଧୁମ୍‌ଧାମ୍‌ କୁଟିବ ) [ଧମକାଣ]
୬ । ଉଠି ନ ପାର ମାରେଂଗା, (ମାରୁଂଗା, ମାରେଂଗା)
[ବକ୍ରୋକ୍ତି ; ବସିବା ସ୍ଥାନରୁ ଉଠିବାର ଦୈହିକ ଶକ୍ତି ନାହିଁ, ମୁହଁରେ ଆସ୍ଫାଳନ କରୁଛି 'ମୁଁ ମାରିବି' ]
୭ । ଉଠ୍ ଉଠ୍ (ଉଠୁ ଉଠୁ) ; ମୋ ଧନ ହଉଛି କୁଟ୍ କୁଟ୍ (କୁଟୁ କୁଟୁ) । [ବ୍ୟଂଗ]
୮ । ଉଡ଼ିଗଲେ ଗେଣ୍ଡାଳିଆ ଗ୍ରାଡ଼ିଗଲେ ପର, ଜେମା ଦେଇ କାନ୍ଦୁଛନ୍ତି ଦେଖି ବୁଢ଼ା ବର । [ବୃଦ୍ଧକୁ ବାଳିକା ବିବାହ ହେବା ସ୍ଥଳରେ ବ୍ୟଂଗ]
୯ । ଉଡ଼ିଗଲେ ଗେଣ୍ଡାଳିଆ ପଡ଼ିଗଲା ଗ୍ରାଇ, ଆସ ଆସ ଗଜାମୁଗ ଖଞ୍ଜଣୀ ବଜାଇ । [ବ୍ୟଙ୍ଗ]
୧୦ । ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର, ଭୁ ଗ୍ରାଡ଼ିଲୁ ବାପ ଭାଇ ମୁଁ ଗ୍ରାଡ଼ିଲି ଘର । [କୁଳଟା ସ୍ତ୍ରୀ ପ୍ରତି ବ୍ୟଂଗ]
୧୧ । ଉଡ଼େଇଦେଲେ ଗୋଡ଼େଇ ଖାଏ, ବଞ୍ଚ(ବୁଣି)ଦେଲେ ଗୋଟେଇ ଖାଏ । [ବ୍ୟଙ୍ଗ]
୧୨ । ଉଦୁ ଉଦୁମା ବସେଇ ଦେବ, ହାତଗୋଡ଼ ପଙ୍ଗା ଖସେଇ ଦେବ । [ଧମକାଣୀ]
୧୩ । ଉପକା (ଗା)ଗ୍ରାଙ୍କ ମୁହଁରେ ପାହାର (ବାଡ଼ି ମାଡ଼) । [ବ୍ୟଂଗ]
୧୪ । ଉପର ବରଡ଼ା ହସୁଛି, ତଳ ବରଡ଼ା ଖସୁଛି ; ମଝି ବରଡ଼ା ଥାଇଁ ବୋଇଲା ମୋ ଧନ କାଳ ଆସୁଛି । [ବ୍ୟଂଗ]
୧୫ । ଉ (ଓ) ପରେ ଉ (ଓ) ପରେ ଲାଗିଛି କଳ, ଭିତରେ ଭିତରେ (ହାପୁରି ହାପୁରି) କବାଟ କଳ । [ବ୍ୟଂଗ]
୧୬ । ଉଲୁପୀ, ସୁଲୁପୀ, ବାଇଡଙ୍କ ; ପେଜନଳା, ହାଣ୍ଡିକଳା ।
[ସମ୍ବନ୍ଧରହିତ, ଅବୋଧ୍ୟ ପଦମାନଙ୍କ ସମାବେଶ ; ୫ । ୬ ଜଣ ସମବୟସ୍କା ଯୁବତୀ ସାଂଗହୋଇ ବସିଥିଲେ ବର୍ଷୀୟସୀ ସ୍ତ୍ରୀମାନେ ଏ ପଦ ବୋଲିଥାନ୍ତି ।]
୧୭ । ଉ(ଓ) ପରେ ଉ (ଓ) ପରେ ଝଟାପଟା, କବାଟ କଣରେ ଛେନାଚକଟା (ଲଟାପଟା) [ବ୍ୟଂଗ]
୧୮ । ଉଷୁନା ଚାଉଳ ମଣ୍ଡା ; ଗାଳି ନ ଦିଅନ୍ତି ମାଡ଼ ନ ମାରନ୍ତି (ଦିଅନ୍ତି), ବଚନରେ କଲେ (କଥାରେ କରନ୍ତି) ଗୁଣ୍ଡା [ଢଗ]
୧୯ । ଉଷୁନା ଧାନ, ଘଣ୍ଟ ମାଇପର ବଡ଼ ଖାହାନ, (ସାତ ଢିଅଣ, ଅର୍ଣ୍ଣିରେ ଧନ) ।
[ବ୍ୟଙ୍ଗ]

———

## ଋ

୧ । ଋଣିଆକୁ ଋଣ ଯେତେ, କହୁଣିଆକୁ କହୁଣୀ ତେତେ (ସେତେ), [ଢଗ]

୨ । ଋଣ ବଢୁଛି. ନାଁ, ପୁଅ ହିଁଅ ଶୁଝିବେ । [ବ୍ୟଙ୍ଗ]

୩ । ଋଣଝୁଣ୍ଟୁ ହୋଇ ଯାଉଛୁ ସ୍ଥୂଳ, ଦେଖିଲା ବେଳକୁ କାଳୀକୋତସା (ହିପଣ୍ଡ କାଳୀ) । (ଅଲଙ୍କାର ପିନ୍ଧିଥିବା କାଳୀ ସ୍ତ୍ରୀ ପ୍ରତି ବ୍ୟଂଗ)

୪ । ଋଷି ଘରକୁ ମହାଋଷି ଗଲେ, ଜାଗ୍ର ଭିତର୍ ଶିଗ୍ର କାଢ଼ିଲେ । [ବ୍ୟଙ୍ଗ]

—※—

## ଏ

୧ । ଏଇ ଟୋକାଟି କଏରେ ! ମୋ ନଡ଼ିଆ ପୁଞ୍ଜା(ଗୁଞ୍ଜି)କୁ ଢଏ (ଢେଏ)ରେ । [ପରିହାସ ବଚନ]

୨ । ଏ ଅବୁଝାମଣା ସ୍ୱଇଜରେ (ଘରେ) ପାଣି ଛୁଇଁ କରି ନାହିଁ (ଦନ୍ତେ ରହ କରି ନାହିଁ) । [ବ୍ୟଙ୍ଗ]

୩ । ଏଇ କଥାକୁ ନାଆ (ନାହା) ପେଲଦେଲ କଲିକତାକୁ ! [ବ୍ୟଙ୍ଗ]

୪ । ଏଇ (ଏହି) କଥା ! ଏଇଥି ପେଇଁକି ମଥା ବଥା ? [ବ୍ୟଙ୍ଗ]

୫ । ଏଇ (ଏହି) କଥା କି ଜଥାରେ ଲେଖା ? ଆଉ କଥା ଥିଲେ ଦାଣ୍ଡରେ ଦେଖା (ପକା) [ବ୍ୟଙ୍ଗ]

୬ । ଏଇ (ଏହି) ପଦକ ଶୁଣୁଥିବ, ସୁନ୍ଦର ବଦନ ଗ୍ରହୁଁଥିବ, ଲୁଣ ଘିନ ଭାତ ଖାଉଥିବ । [ବ୍ୟଙ୍ଗ]

୭ । ଏଇ (ଏହି) ଟୋକାଟି ଝିଲକଝାଉଁ, ଆସୁଥିଲା ପାନଖିଲକ ପାଇଁ; ମୁହ ହଜା (ଜେ) ଇଲା କାଦୁଅଠେଇ, ଖୋଜ ଖୋଜ ଏବେ ପାଇଲା ନାହିଁ [ବ୍ୟଙ୍ଗ]

୮ । ଏଇଠେଇଁ ଯେବେ ପାଇଲ ଜଳ ଆଉ କଆଁ ଯିବ ସାରଙ୍ଗ ଯୋଡ଼ି ? [ବ୍ୟଙ୍ଗ]

୯ । ଏଇ ପିଲାଟା (ଟୋକାଟା) କାହାର ବେଟା ? [ବ୍ୟଙ୍ଗ]

୧୦ । ଏକଆଖିଆ କଣା, ତାର ନାହିଁ ବୁଝାମଣା । [ବ୍ୟଙ୍ଗ]

୧୧ । ଏଇ ଟୋକଟି (ପିଲାଟି) କାହାର ବେଟୀ ? [ବ୍ୟଙ୍ଗ]

୧୨ । ଏକରୁ ଦୁଇ ନାହିଁ, କି ଛୁଉ(ଣ୍ଡି) ଗଲେ ଗଇଁଠେଇବାକୁ ନାହିଁ (ହଜିଗଲେ ଖୋଜ ଯିବାକୁ ନାହିଁ) । [ଅନୁଚନ୍ତା]

୧୩ । ଏକ (ଓପର) ବରଡ଼ା ଖସୁଛି, ଏକ (ତଳ) ବରଡ଼ା ହସୁଛି, ଏକ (ମଝି) ବରଡ଼ା ଥାଇ ବୋଲୁଛି (ବୋଇଲା), ମୋ (ତୋ) ଦିନକାଳ ଆସୁଛି । [ଢଗ]

୧୪ । ଏକ ସହସ୍ର ବତା, ଦୁଇ ସହସ୍ର କତା, ତିନି ସହସ୍ର ଗଣ୍ଠି, ଏ ନାଆଁଟି ଯେ କହିଦେବ, ତାକୁ ଦେବି ସୁନା କଣ୍ଠି । [ନାଁ । ଦିଆ, ଘରଗୁଳ]

୧୫ । ଏକା କରେ ଦ୍ୱିକରେ ସ୍ତ୍ରୀ କରଧରି ଚତୁଷ୍ଟର ଦର୍ଶନକୁ ପଞ୍ଚକରେ ଷଡ଼କରେ ଯାଉଅଛନ୍ତି ।
[କାର୍ତ୍ତିକ ମାସ ପଞ୍ଚକରେ ସ୍ତ୍ରୀ ପୁରୁଷମାନେ ସ୍ନାନ ବଡ଼ଦାଣ୍ଡରେ ହାତ ଧରାଧରି ହୋଇ ଜଗନ୍ନାଥ ଦର୍ଶନକୁ ଯିବାର ଦେଖି ଯଦୁମଣି କବିଙ୍କ ଅନୁପ୍ରାସ ବଚନ]

୧୬ । ଏକା କାଳୀଗାଈ ଶୋଇଛୁ, ସହସ୍ରେ ବାଛୁରୀ ପିଉଛୁ, (ଶହେ ବାଛୁରୀଙ୍କି ପେଉଛୁ) ।
[ନାଁଦଅ, ଘରର ମଥାନର ଶେଣୀ ଓ ତହିଁରୁ ଲମ୍ବିଥିବା ରୁଅ]

୧୭ । ଏକା କହ୍ନା ଲାଗି ଶୋଉ ଗୁହାଳ [ପ୍ରଶଂସା ବଚନ]

୧୮ । ଏକା କାଳଗାଈ ଲାଗି ଗୋଠ । [ପ୍ରଶଂସା ବଚନ]

୧୯ । ଏକାଦଶୀ ନବଦ୍ୱାର, ଭିତରେ ଭିତରେ ଚୁଡ଼ା (ଚକଟା ମାର) ।
[ଆମ ଦେଶରେ ଏକାଦଶୀ ଦିନ ଫଳାହାର ରୂପ ପୂର୍ଣ୍ଣ ଚୁଡ଼ାଦହି ଭୋଜନ ପ୍ରଥା ପ୍ରତି ବ୍ୟଂଗୋକ୍ତି ।

୨୦ । ଏକା ବିଧାକେ କରିବ ସିଦ୍ଧା(ଧା) । [ଧମକାଣି]

୨୧ । ଏକା ଗଛର ଧାନ, କେହି କାହାକୁ ନୁହଁନ୍ତି ଆନ୍ । [ବ୍ୟଙ୍ଗ]

୨୨ । ଏ କି କଥା ? ଏକ୍ଇ କଥା । [ଅନୁପ୍ରାସ ଭଂଗ ବା ପରିହାସ]

୨୩ । ଏ କୂଳରୁ ଯାଇ ସେ କୂଳରେ ପଶ୍ । ଏ ଗୋତ (ଗୋତ୍ର)ରୁ ଯାଇ ସେ ଗୋତ (ଗୋତ୍ର)ରେ ବସ୍ ।
[କନ୍ୟା ବିବାହିତା ହୋଇ ଏକ ବଂଶରୁ ଯାଇ ଅନ୍ୟ ବଂଶଭୁକ୍ତା ହେବା ସମ୍ବନ୍ଧରେ ବିଦ୍ରୂପୋକ୍ତି ]

୨୪ । ଏକୁଟିଆ ବାହାଘ, ମୁଣ୍ଡି ସାହାଡ଼ା (ଘ) । [ଗାଳି]

୨୫ । ଏକେଇ (ଏକ), ଘଣ୍ଟ ତା ଘରେ ପୁଣି ତିନିଘଣ୍ଟ । [ବ୍ୟଙ୍ଗ]

୨୬ । ଏକଘଣ୍ଟ, ଦୁଇଘଣ୍ଟ, ତିନିଘଣ୍ଟ, ଦାଣ୍ଡ ଦାଣ୍ଡ ।
[ଯେଉଁ ପରିବାରରେ ଏକାଧିକ ବିଧବା ବାସକରନ୍ତି ସେ ପରିବାରରେ କଳି ଲାଗି ଦାଣ୍ଡକୁ ଶୁଭିବ ଅନୁଭବ ବଚନ]

୨୭ । ଏକେଇ ବାଇ ; ତହିଁ ପାଳକର, ଗଞ୍ଜେଇ ଖାଇ । [ବ୍ୟଙ୍ଗ]

୨୮ । ଏକେ ଖନ ; ତହିଁ କାଡ଼ୁଆ ଗୋସେ(ସା)ଇଁ ପରଶନ । [ବ୍ୟଙ୍ଗ]

୨୯ । ଏଡ଼େ ବଡ଼ ଖଟ (ପଡ଼ିଛି),କେହି ଶୋଉନାହାନ୍ତି ; ଏଡ଼େ ବଡ଼ ଭେଣ୍ଡା ମରିଛି (ପଡ଼ିଛି), କେହି କାନ୍ଦୁନାହାନ୍ତି । [ନାଁଦଆ, ମଲ୍ଲବାଦ]

୩୦ । ଏତକ ହେଲା, କିଛି ନଆଣି ମୋ ଭାଇ (ପୁଅ) ଅଇଲା ।
[ବିଦେଶରୁ କିଛି ଅର୍ଜନ ନକରି ଫେରି ଆସିବା ଅଯୋଗ୍ୟ ଭାଇ ବା ପୁଅ ପ୍ରତି [ବ୍ୟଙ୍ଗ]

୩୧ । ଏକେ (ଏକେଇ)କାଳୀ, ଘେନଛୁ (ନାଇଛୁ) କାଚ କୋଚଲ୍ମାଳ, ପିନ୍ଧିଅଛୁ ପୁଣି ନେଳିଆ ଶାଢ଼ୀ ତହିଁରେ ହେଇଛୁ ଘନ୍ଦଣା ପାଳ ।- [ବ୍ୟଙ୍ଗ]

୩୨ । ଏ ଗାଁଆଁ ଗାଆଁରେ ଲେଖା ନାହିଁ, ଜଣେ ଭେଣ୍ଡିଆ ଦେଖା ନାହିଁ । [ବ୍ୟଙ୍ଗ]

୩୩ । ଏ କ୍ୟା ଫୁଲ୍ ? ନାଁ, କଆ ଫୁଲ ।
[କିଆଫୁଲ ସମ୍ବନ୍ଧେ ପରିହାସ ବଚନ]

୩୪ । ଏ ଗୋତରୁ ଯାଇ ସେ ଗୋତରେ ପଶ, ଏ ଚୁଲି ମୁଣ୍ଡରୁ ଯାଇ ସେ ଚୁଲି ମୁଣ୍ଡରେ ବସ ।
[କନ୍ୟା ବିବାହିତା ହୋଇ ପିତୃଗୋତ୍ରକୁ ଯିବା ସମ୍ବନ୍ଧରେ ବିଦ୍ରୁପ]

୩୫ । ଏ ଘରେ ମୁଁ ରହିବ ନାହିଁ, ଏ ଗଞ୍ଜଣା (ବୋଲଣା, ଉଦ୍ଧାଣ, ଉଲୁଗୁଣା କହଣା) ମୁଁ ସହିବ ନାହିଁ । [ଧମକାଣ]

୩୬ । ଏ ଘରେ ମୁଁ ରହିବ ନାହିଁ, ଖଣ୍ଡିଆ ପଥୁରି ଧୋଇବ ନାହିଁ, (ଛାଟି କଳା ମାଡ଼ ସହିବ ନାହିଁ) । [ଧମକାଣ]

୩୭ । ଏ ଘରେ ମୁଁ ରହିବ ନାହିଁ, ଏ ଗହଣା ମୁଁ ନାଇବ ନାହିଁ । [ଧମକାଣ]

୩୮ । ଏଡ଼ିକ (ଏଡ଼େ) ଭଲ! ପେଜ ପିଆ ଠେଇଁ ଲାଗିଛୁ କଳି । [ବ୍ୟଙ୍ଗ]

୩୯ । ଏଡ଼ିକ ଯୋଗ ! କୁଣ୍ଡା ଖାଇବ ନରସିଂହ (ପ) ଖ୍ରୋତ ? [ବ୍ୟଙ୍ଗ]

୪୦ । ଏଡ଼େରୁ ଏଡ଼େ ! ବଅସ (ବୟସ) ବେଳକୁ ହବ (ହବୁ)ଟି କେଡ଼େ ? [ବ୍ୟଙ୍ଗ]

୪୧ । ଏଡ଼େ (ଏତେ) ମନରେ ତ-ଦଉଳି ତବତ (ଗରମ, ତତଲା) !
[ବ୍ୟଙ୍ଗ—ଦୁଃଖୀ ହୋଇ ସୁଦ୍ଧା ଦୁଇଉଳି ବୁଝେଇ କରିବା ବ୍ୟକ୍ତି ପ୍ରତି]

୪୨ । ଏଣୁ (ଏଣେ) ମାଇଲେ ଗୋ-ହତ୍ୟା, ତେଣୁ (ତେଣେ) ମାଇଲେ ବ୍ରହ୍ମହତ୍ୟା ।
[ବିଷମ ସମସ୍ୟାରେ ମନୁଷ୍ୟ ପଡ଼ିବାବେଳେ ଭାବନା]

୪୩ । ଏତେ କରି କରି ଫାଟରେ ଗଲା । ବୁଢ଼ା ବସି ବସି ସନ୍ତାପ କଲା । [ଢଗ]

୪୪ । ଏତେ କରି କରି ନୋହିଲା କାଛୁ, ପଛନ୍ତକୁ (ପଶ୍ଚାନ୍ତକୁ) ହେଲା ଗୁହାଳପୋଛୁ (ଅଧିକାର କଲା ଗୁହାଳପୋଛୁ) । [ଅନୁଚନ୍ତା]

୪୫ । ଏତେ ଖାଇ ଖାଇ ନ ପୁରିଲା ପୁରେ ପେଟ, ବିରି ଓଳିଆରେ ମାଇଲା (ମାରୁଛୁ) ଅଣ୍ଟି (ହାତ) । [ବ୍ୟଙ୍ଗ]

୪୬ । ଏତେ ଛଦ୍ରମ (ଛନ୍ଦ, ଛନ୍ଦମନ୍ଦ) କଏ ଜାଣିଥିଲା ?
[ସରଳ ଲୋକର ଅନୁଶୋଚନା]

୪୭ । ଏଥର ମଲେ ସାହେବ (ସାହାବ, ସାହିବ) ହେବି, ଲାଲ୍ ମୁଣ୍ଡରେ କାପ୍ (କ୍ୟାପ୍ cap)ଦେବି । [ଗୋବିନ୍ଦରଥ, ଫିଉଚର ସାହେବ]

୪୮ । ଏ ଦଶାରୁ ସେ ଦଶା ବଳେ, ଦଦରା ହାଣ୍ଡିରେ ପେଜ ନଗଲେ । [ବ୍ୟଙ୍ଗ]

୪୯ । ଏ ଦୁଃଖୀ ଆଗରେ ସେ ଦୁଃଖୀ କହେ, ଆଖିରୁ ଲୁହ ଝର ଝର ବୁହେ । [ବ୍ୟଙ୍ଗ]

୫୦ । ଏ ନଅାଁ ଲଗା ଘରେ ଉଆଁସ ନାହିଁ, କ ସଙ୍କ୍ରାନ୍ତ (ଗୁରୁବାର)ନାହିଁ ।
[ନବାଗତା ଗୃହିଣୀର ବିରକ୍ତିଜନକ ବଚନ ବା ଗାଳି]

୫୧ । ଏପଟେ ଡାକଇ ଘୁଣୀ, ସେ ପଟେ ଡାକଇ ଘୁଣୀ, କହ୍ନାଘରେ ଆଛୁ ଢାକର ପାଣି । [ନାଁଦିଆ, ମାଲପା]

୫୨ । ଏ ପଟେ ସେ ପଟେ ଡାକଇ ଶୁଆ, କାହା ଘରେ ଅଛୁ ନଦା ଗୁଆ ।
[ନାଁଦିଆ, ଟଙ୍କା]

୫୩ । ଏ ପଟରେ ମଡ଼ା ମଲା, ସେ ପଟରେ (କୁ) ବାସନା କଲା (ଗଲା) ।
[ନାଁଦିଆ, ପଣସ]

୫୪ । ଏ ପଟରେ (ପାଖରେ) ଲଗା (ଗେ)ଇଲା ଲାଉ, ସେ ପଟକୁ (ପାଖକୁ) ଡଙ୍କ ଯାଉ (ଯାଉ ଡଙ୍କ ) । ଏ ନାଁଟି ଯେ କହିଦବ (ଯାକୁ ଯେ ଚେଇଁଉଠେଇ ଆଣିବ), ତାଙ୍କୁ ଦେବ ସୁନାର ଶଙ୍ଖ । [ନାଁ ଦିଆ, ଘାଟଡଙ୍ଗା ପବନ;

୫୫ । ଏବ କା ଟୋକାଏ ମାନ ମହତ ସବୁ ପୋଡ଼ି ଖାଇଲେଣି ।
[ମିରହଣ୍ଡି, ପୁରାତନ ବ୍ୟକ୍ତିମାନଙ୍କର ନବ୍ୟଶିକ୍ଷିତ ଯୁବକମାନଙ୍କ ପ୍ରତି ବିରକ୍ତି ବଚନ]

୫୬ । ଏମନ୍ତେ ବସ୍ତୁରୁ ବସ୍ତୁରୁ, ଆସି ମିଳିଲା (ଡେଣୁ ଆସିଲ) ବୋଝେ ସାରୁ । ସାରୁ ସିଝିଲା (ସିଝିବ) ଯତ୍ନ କରି, ଖାଇଲା (ଖାଇବ) ତାହା ପେଟ ଭରି ।
[ଭାଗବତ ପଦ ଅନୁକରଣରେ ପରିହାସ ପଦ୍ୟ]

୫୭ । ଏମନ୍ତ ମାରି ମାରି ଗଲା (ଗଲିଣି) କାଳକ, ବାଙ୍ଗା ରହିଗଲା ଫାଳକ ।[ବ୍ୟଙ୍ଗ]

୫୮ । ଏରେଣ୍ଡା କେରେଣ୍ଡା କୋଳି ; କଉଡ଼ି ନଦେଲେ ନ ଦେବ କାଳି, ଶାଶୁଘର ଦେବେ ଗାଳି । [ଢଗ]

୫୯ । ଏ ହାତକୁ ସେ ହାତ, ଖଣ୍ଡିଆ ହାତକୁ ଜଗନ୍ନାଥ । [ଢଗ]

୬୦ । ଏହି ଠିକ କଥାକୁ; ନାହା ପେଲିଦେଲ କଲିକତାକୁ ।
[କୌଣସି ସାମାନ୍ୟ ବିଷୟକୁ ଲକ୍ଷ୍ୟ କରି ବ୍ୟଙ୍ଗ]

୬୧ । ଏହି ବାଟେ ଯାଉ କଥା ଓ ନ କହୁ, କଥା କି କାମୁଡ଼ି ଖାଇବ ? ରଙ୍ଗ ଟହି ଟହି ସିମିଳି ଫୁଲ , ସବୁ ଦିନେ ଏ କି ରହିବ ? [ବ୍ୟଙ୍ଗ ]

୬୨ । ଏହି ମୁହଁକୁ କ (ପୁଣି ) ଡଟଲା (ଡବଡ ) ଭାତ !

୬୩ । ଏହି ମୁହଁକୁ ପୁଣି ଢ'ପଟା ନଣ (ମୁଛ) । [ବ୍ୟଙ୍ଗ]

---

# ଓ

୧ । ଓଜାଲ ଖାଇ , ଯାହାର ଖାଇବ ( ଖାଇବି ) ତାହାର ଗାଇ । [ବ୍ୟଙ୍ଗ]

୨ । ଓଟମୁହାଁ ବୋହୂଟାଏ । [ ଓଢଣା ନ ପକାଇବା ବା ମାଇଜ ନ କରିବା ବଧୂ ପ୍ରତି ବର୍ଷିୟସୀମାନଙ୍କ ଉକ୍ତିଗୁଣା ]

୩ । ଓଢଣା ପଡ଼ିଚ ( ଛୁ ) ନାକ ସଣକ , ତୁଣ୍ଡ ( ପାଟି ) ଶୁଭୁଅଛୁ ଶୁଦୁଅଛୁ , କମ୍ପୁଅଛୁ ) ଚଉପାଡ଼ି କ । [ବ୍ୟଙ୍ଗ]

୪ । ଓଧ ଖାଇଲା ( ଖାଉଛୁ, ଖାଉଚ ) ପାଚେଳ (ପାଚିଲା ) କଦଳି, ଘୁଷୁରି ଖାଇଲା (ଖାଉଛୁ , ଖାଉଚ) ପାନ ; ଭୁଆବଗଡ଼ି ବଇଷମ ( ବୈଷ୍ଣବ ) ବା ହୋଇ ସଭାରେ କହୁଚ (କହୁଛୁ) ଜ୍ଞାନ ।[ଅସମ୍ଭବ ବା ବିଶ୍ୱାସର ଅଯୋଗ୍ୟ କଥା]

୫ । ଓର ଉଣ୍ଡି (ଦେଖି) ଦେ ଚଡ଼ୁ, ଏକା ପଦକେ (ଏକା ଚାଆଁକେ ) ନ ଛୁଡ଼ୁ । [ଢଗ]

୬ । ଓରକାଳ ଗାଁ ପଢଆ ଚନ୍ଦ୍ର, ଲଭ ଖାଇଗଲା (ଲେ ) ମାଧ ମହାନ୍ତି [ବ୍ୟଙ୍ଗ]

୭ । ଓଲ ( ଓଲୁଅ ) ଗଛର ପୋଲ ; ଅନ୍ନ କଷ୍ଟରେ ପଞ୍ଜରା ଦିଶିଲା ଜର କଲା ବୋଲି ବୋଲ । [ବ୍ୟଙ୍ଗ]

୮ । ଓଲଟ, (ଟଙ୍ଗ୍) ଯୋଲଟଂ (ଟଙ୍ଗ୍) ବଚ (ବଛ୍) ଖଡ଼ା । [ବ୍ୟଙ୍ଗ; ଯେଉଁ ଲୋକ ଉଭୟ ବିପକ୍ଷ ପକ୍ଷଙ୍କ ସଙ୍ଗେ ସହାନୁଭୂତି ଦେଖାଇ ଦୁଇ ଜଣଙ୍କର ବନ୍ଧୁ ବୋଲି ପରିଚୟ ଦେଉଥାଏ; ଦୁଇଜଣଙ୍କ ମଧ୍ୟରେ କଳି ବା ଦ୍ୱନ୍ଦ୍ୱ ଲଗାଇ ଦେଇ ମଧ୍ୟସ୍ଥ ହେବା ବ୍ୟକ୍ତି]

୮ । ଓଲମୀ ନାମ, ମୂଷା କାଟିନେଲା ପଣନ୍ତି (ତ ) କାନ । [ବ୍ୟଙ୍ଗ]

୯ । ଓଲେଇ ନାମ, ବିରାଡ଼ି (ବିଲେଇ ) କାମୁଡ଼େ ପଣନ୍ତ କାନ । [ବ୍ୟଙ୍ଗ]

୧୦ । ଗୋସେଇଁ (ନନା) ଓଳିକ୍ (ଓଳିକ) ! ନାଁ, ଭାତ ନାହିଁ ଆଉ ଓଳିକ । [ବ୍ୟଂଗ]

୧୧ । ଗୋସେଇଁ, (ନନା) ଓଳିକ୍ (ଓଳିକ) ! ନାଁ, ତୋ ମନ ତୋତେ । [ତତେ ] ଫଳୁ । [ବ୍ୟଙ୍ଗ]

୧୨ । ଗୋସେଇଁ, [ନନା] ଓଳିକ୍ [ଓଳିକ] ! ନାଁ, କପା ପ୍ରସାଦ୍ । [ବ୍ୟଂଗ ]

୧୩ । ଓଳି ଗୁଣେ କୋଳି, ପଲମ ଗୁଣେ (ଧେନ) ସରୁଚକୁଳି, ଦଉ ଥା ପିଠଉ [ପିଠଉ] ଗୋଳି । [ଢଗ]

୧୪ । ଓଳିତଳେ ସବୁ ଗୋଡ଼, ଖାଇ (ଖାଇନା) ଯେତେବେଳେ ବଖା [ଭିଆ] ହୋଇ ଯିବେ ଲୋ, ହାଲୁଥିବ (ଅବ) କାନ ନୋଳି । [ପିଲା ଉଉଣୀର ଅନୁଚନ୍ତା ]

୧୫ । ଓଳିତଳେ ସବୁଗୋଡ଼ ଝର ଝର ପଡଇ ଝଡ଼ି ଝଡ଼ି ପଡଇ]: ଷାଠିଏ ଟଙ୍କା ମୂଲ ଚଲେ ନାହିଁ ନାହିଁ କରଇ । [ନାଁ ଦିଆ, ଆଖି ]

୧୬ । ଓଲ୍ଲୁ [ଓଲ୍ଲୁ] ନା ଓଲ୍ଲୁଙ୍କ ବୋକଗୁବୁଦ୍ଧା ! [ଗାଳି - ଅତ୍ୟନ୍ତ ନିର୍ବୁଦ୍ଧିଆ ବ୍ୟକ୍ତି ପ୍ରତି ]

୧୭ । ଓଲୁଅ ନା ବଣସାରୁ, ରହ୍ନ ରହ୍ନ ବୁଢା ଦମ୍ଭ [ଦମ୍] ମାରୁ । [ବ୍ୟଂଗ]

୧୮ । ଓଲୁଅ ଢଆରେ (କନ୍ଦୁଚ, କନ୍ଦଇ, ପକ୍ଷରେ) ବଣ ସାରୁକୁ, ଚୋର ମୋର ଯିବା ଖଗ୍ଗ (ବାନ୍ଧା) ଘରକୁ । [ଢଗ]

୧୯ । ଓଲେଇ ଗାଈ, ପଡ଼ିଶାର ବାଡ଼ ନାଡ଼ ଡ଼ିଅଁ ଇ (ଡେଉଁ) । [ଢଗ]

୨୦ । ଓଲେଇ ପାଟିକି ପାନ ଗଲା, ପାନ କହିଲା ମୋ ପ୍ରାଣ(ଜୀବନ, ଇଜତ)ଗଲା । [ବ୍ୟଙ୍ଗ]

୨୧ । ଓଲେଇ ଦୁଆରକୁ ଭିକାରି ଗଲା ଘୃଅଲଧୁଆ ପାଣି ଚକୁଳି କଲା । [ବ୍ୟଙ୍ଗ]

୨୨ । ଓସକା (ଓସୋକା) କଡ଼ି ! ମନେ କରୁଥିବ (ପଡୁଥିବ) ଘଡ଼ିକି (କୁ) ଘଡ଼ି । [ଅଶୋକାଷ୍ଟମୀ ଦିନ ଅଶୋକକଳିକା ଦିଆ ଦେଇ ହୋଇ 'ଓସକା' ବସିଥିବା ଦୁଇ ସଖୀଙ୍କ ବିଦାୟକାଳୀନ ଉକ୍ତି]

୨୩ । ଓସକା(ଓସୋକା), ସଙ୍ଗାତ, ମିତ (ଗୃନ୍ଦ) ବଉଳ ! ସରିଗଲା ତୁମ୍ଭ ଆମ୍ଭର ଖେଳ । [କନ୍ୟା ଶାଶୁ ଘରକୁ ଯିବା ସମୟରେ ସଖୀମାନଙ୍କଠାରୁ ବିଦାୟକାଳୀନ ଶୋକ]

୨୪ । ଓସ୍ତ ପତର ପାଳିଆ, ଚନ୍ଦ୍ରଧନୁଶ୍ୱ ଝିଅ କଳିଆ, ସାଆନ୍ତ୍ରୀ ପୁଅ ବର ,ଅଠର ଖଣ୍ଡି ବାଇଦ( ଢାଉଁ ) ବାଜେ ଟଙ୍ଗର ଟଙ୍ଗର (ଡଙ୍ଗର ଡଙ୍ଗର ) । (ବ୍ୟଂଗ)

୨୫ । ଓସ୍ତ (ଓସତ) ପତର ବଣ ସାରୁ, ରହ୍ନ ରହ୍ନ ବୁଢ଼ା ଦମ୍ଭ ମାରୁ । [ବ୍ୟଙ୍ଗ]

୨୬ । ଓସ୍ତ (ଓସତ) ପତର ଫର, ଫର, ଟିକିଏ କଥାରେ ଡରବର [ଥର ଥର], ଗରଗର । [ବ୍ୟଙ୍ଗ]

୨୭ । ଓଃ ! କ୍ଷିକ ଗେଣ୍ଡା (ଣ୍ଡି) ଶଙ୍ଖ ପାଲଟି ଗଲେ ! (ଲା) ! [ ବ୍ୟଙ୍ଗ—ନୀଚ ବ୍ୟକ୍ତି ବଡ଼େଇ ଦେଖାଇ ହେବା ସ୍ଥଳରେ]

—※—

## କ

୧ । କଅଁଣ ! ଘର ଭିତରେ ଖ୍ରଣଟା କଣ, ନଇଁ ପଡ଼ କରି ଗଣ ।
[ କଅଣ ଶବ୍ଦର ଅନୁପ୍ରାସ]

୨ । କଅଁଣ ଅଣ, ମାଛ ଛଅଣ, ସେଥିରେ ପଡ଼ିଛୁ ମାଛୁ; ତୁ ଖାଉଥା ବାଛୁ । [ଅନୁପ୍ରାସ]

୩ । କଅଁଲକଖି ସ୍ୱଧା, ଘରକୁ ଗଲେ (ଆସିଲେ) କଥା ନ କହନ୍ତି, ବାଟରେ ବଡ଼ (ଖର ) ଶରଧା । [ବ୍ୟଙ୍ଗ]

୪ । କଅଲା (ଦଅଁଲା । ବାଛୁର କାନ, ଆଣି ଆସି ଖାଇନା ! ଲେଉଟି ଗଲ ହେ, ବିକଳ ନୋହିଲା ମନ; ମୋ ପ୍ରଭୁ ହେ । [ଶାଶୁ ଘରେ ନବବଧୂର ଅନୁଚିନ୍ତା ଓ ଖେଦ ]

୫ । କଇଁ କଇଁ ହୋଇ କାନ୍ଦୁଛୁ କେତେ, ଫେରି ଆସିବି ମୁଁ ବରଷ ସାତେ ।
[ବିଦ୍ରୂପାତ୍ମକ ଶାନ୍ତ୍ୱନା ।]

୬ । କଉ—ଫାସିଆ, କାହୁଁ ହେଲା ପୁଅ ଘର ମାସିଆ ? [ଘର ମାସ ହେଲା ବିଦେଶରୁ ଫେରି ଆସିଥିବା ସ୍ୱାମୀର ସ୍ତ୍ରୀ ସନ୍ତାନ ପ୍ରସବ କରିବା ଉପଲକ୍ଷରେ ବ୍ୟଙ୍ଗୋକ୍ତି]

୭ । କଉଡ଼ି ଗଣୁଗଣୁ ପାହିଲା ରାତି, କୁଆ ନେଇଗଲା କଜଳପାତି । [ଢଗ]

୮ । କଉଡ଼ି ନ ଥାଇ ମୂଲଉଥାଏ, ଦେଖି ଘୃହି (ଦେଖାଁ ଥିଲେ) ପେଟ ଫୁଲଉଥାଏ ।
[ବ୍ୟଂଗ]

୯ । କଉଡ଼ି କଡାକର ତେଲ; ବେଣ୍ଟା ଚକଣ,ବେଣ୍ଟୀ ଚକ୍‌ଣ, ସାଆନ୍ତ ହେଲେ ମାଲ ମରଦାନ, ସାଆନ୍ତାଣୀଙ୍କର ଖୋସା ଚକଣ; ଭଣ୍ଡାର ହେଲା ମାଛିମୁଖୀ, ଉପର (ଓପର) ଓଳକ ଟିକିଏ ଅଛୁ; ଆଉଅଛୁ ପଳାଏ ଭଣ୍ଡାର ପାଇଁ, ଆଉରି ଟିକିଏ ଥାଆନ୍ତା, ଶାଗଭଜାଟିଏ ହୁଅନ୍ତା; [ବହୁକୁଟୁମ୍ବୀ କୃପଣ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୧୦ । କଉଡ଼ି ବୋଲି ଷୋଳ ପଣ, ଋଣ ( ଋଣଫଣ ) କରି ଚଣ୍ଡାଏ ଗଣ ; ଆଠପଣ ପାଇଁ କହୁଛୁ, ଘର ପଣ ପାଇଁ କହୁଛୁ, ବାକି ଅଉ କେତେକ ? [ଅତି ଅଳ୍ପ ଧନ ସମ୍ବନ୍ଧେ ବ୍ୟଙ୍ଗ]

୧୧ । କଞ୍ଚାରେ ଲତପତ ପାଚିଲାରେ ଟାଣ, ଏ କଥାଟି (ନାଆଁଟି) ଯେ ନ କହିବ ତାକୁ ବଉଁଶଯାକଙ୍କ ରଣ । [ନାଁହିଆ ; ହାଣ୍ଡି ମାଠିଆ ଆଦି ]

୧୨ । କଖାରୁ କାଟିଲି ଚେକ, ସିନ୍ଦୂର (ସୁନ୍ଦର, ସୁନ୍ଦର) କଲରେ ପଡ଼ିଲା ଆଖି, ନାକଫୁଲଗୁଣା ଦେଖି । [ଢଗ]

୧୩ । କଖାରୁ ଘେପା, ବେଲ ଉଣ୍ଡିକରି ଗଡ଼ିଲେ ଗୋପା । [ବ୍ୟଙ୍ଗ]

୧୪ । କଖାରୁ ପତର ବଣସାରୁ, ରହ ରହ ବୁଢ଼ା ଦମ (ଦମ୍ଭ) ମାରୁ । [ବ୍ୟଙ୍ଗ]

୧୫ । କଖାରୁଫୁଲ ! ଏଇଟା ଫେର୍ (ପୁଣି) ଟଙ୍କାଏ ମୂଲ ! [ବ୍ୟଙ୍ଗ]

୧୬ । କଖାରୁଫୁଲ ; କାଳୀ ମାଇପିଟା(ଟି) ଯାହା ହୋଇବ ଗୋଖିମାଇପ (ଝି, ପୁ)ଟା ସେହି ମୂଲ ! [ବିଦ୍ରୂପାତ୍ମକ ପ୍ରଶ୍ନ ; ଫଳତଃ ଆମ ଦେଶରେ କାଳୀ କନ୍ୟା ଅପେକ୍ଷା ଗୋରାକନ୍ୟାଙ୍କ ପ୍ରତି ବରପକ୍ଷଙ୍କର ବିଶେଷ ଆଗ୍ରହ ଦେଖାଯାଏ । ]

୧୭ । କଖାରୁ ପତର ବଣସାରୁ ; ତୋ ଦିଅର ତ ତତେ (ତୋତେ) ମାଇଲା , ମୋ ଉପରେ କିଆଁ ଗାରୁ ଗାରୁ (ଫାରୁ ଫାରୁ) ? [ଢଗ]

୧୮ । କଖାରୁଫୁଲ ଫୁଟିଲା; କିଏ ସେ କହିଲା ମୋ ବୋହୂଙ୍କ ଆଗେ ଲୋ ହାରାମଣି (ଅମୁକ) ଧାନ କୁଟିଲା ; ମୋ ପ୍ରଭୁ ସେ । [ଗରିବ ଶାଶୁଘରେ ଧାନ କୁଟୁଥିବା ନୂଆ ବୋହୂର ଅନୁଚିନ୍ତା]

୧୯ । କଖାରୁବଡ଼ି, ଉପରେ (ଓପରେ), ଉପରେ) ପଡ଼ି । [ବ୍ୟଙ୍ଗ]

୨୦ । କଗୁହଗୁରା (ପୁଂ) । କଗୁହଗୁରୀ (ସ୍ତ୍ରୀ) । [ନିତାନ୍ତ ଭୀରୁ ବ୍ୟକ୍ତି ପ୍ରତି ଗାଳି]

୨୧ । କଣ୍ଢାଗୁଆକୁ ପଗ୍ଡ (ସଢ଼ା) ପାନ । [ବ୍ୟଙ୍ଗ]

୨୨ । କଟକ ଚନ୍ଦ୍ରା କଆଁ ବାଇ ମୁଣ୍ଡିକୁ ଲାଗିଚ ? [ବ୍ୟଙ୍ଗ]

୨୩ । କଟକରୁ ଅଇଲା (ଆଇଲା) ଚୋକା (ଟୋକା) ଟା (ଟି) ଏ, ତା ମୁଣ୍ଡରେ ଟୋପା (ଟୋପି) ଟା (ଟି) ଏ [ନାଁ ଢଆ ; ତାଳ]

୨୪ । କଟକରୁ ଅଇଲା (ଆଇଲା) ତେଙ୍ଗା ମାହାନ୍ତ, ତା ଅଣ୍ଠିଠା ସମସ୍ତେ ଖାଆନ୍ତି ।
[ନାଁଢଆ ; ଚିଙ୍ଗି]

୨୫ । କଟକରୁ ଆଇଲା (ଅଇଲା) ବାଗ୍‌ଲା (ବାଗେଲା) ଘୋଡ଼ା, ଏକାବଅଣକେ ହୋଇଲା ବୁଢ଼ା । [ନାଁଢଆ ; କଦଳୀଗଛ]

୨୬ । କଟକରୁ ଅଇଲା (ଆଇଲା) ବାବୁ , ତା ମୁଣ୍ଡରେ ଗୋଟାଏ (ଗୋଟିଏ) ଆବୁ ।
[ନାଁଢଆ ; ତାଳ]

୨୭ । କଟକରୁ ଅଇଲା (ଆଇଲା) ବାହ୍ମୁଣ (ବ୍ରାହ୍ମଣ) ଜଣେ, ତା ଦହ (ଦେହ)ଯାକ ଯାଦୁ ଭରଣେ । [ନାଁଢଆ ; ପଣସ]

୨୮ । କଟକରୁ ଅଇଲା (ଆଇଲା) ବାହ୍ମୁଣ (ବ୍ରାହ୍ମଣ) ଜଣେ, ଦହ (ଦେହ)ଯାକ ଛନ୍ଦା ପଇତା ପଣେ । [ନାଁଢଆ ; ହେଁସ, ମୁନ୍ଦୁରୀ]

୨୯ । କଟକରୁ ଅଇଲା (ଆଇଲା) ମାନ (ଗ୍ରାମ) ସିଂଘ (ସିଙ୍ଗି), ତା ମୁଣ୍ଡରେ ତନ ଶିଙ୍ଘ (ସିଙ୍ଗି) [ନାଁଢଆ ; ଚୁଲି]

୩୦ । କଟକରେ ବାଜେ ଡବ୍ ଡିବ୍ (ଡବଡିବା), ଝିଅ ନଢ କହୁଥାଏ (କହେ, ବୋଲେ) ଯିବ ଯିବ । [ଛଗ]

୩୧ । କଡ଼ାକର ଫୁଲ ନାଇ (ପିନ୍ଧି) କାହାଣକର ଗୁମାନ୍ (ନ)
[ବ୍ୟଂଗ—ଅଯଥା ଗର୍ବିତ ବ୍ୟକ୍ତି ପ୍ରତି]

୩୨ । କଣ୍ଢାବାଡ଼ର ବେଢ୍ (ତ) ମନଷ(ମନୁଷ୍ୟ ; ମଣଷ) ହୋଇଥିଲେ (ହେଇଥିଲେ) ଚେଉ୍ଡ (ତ) । [ଉପଦେଶ]

୩୩ । କଣ୍ଢେଇ କୋଳର କଣ୍ଢା ; ତନେ ଖାଇନାହିଁ ବୋଉପରଶା ଲୋ, ଖାଙ୍ଗି ପଡ଼ୁଥାଇ (ଅଛୁ) ଅଣ୍ଡା ; ମୋ ପ୍ରଭୁ ସେ ।
[ତନେ ହେଲ ଶାଶୁଘରକୁ ଯାଇଥିବା କନ୍ୟାର ଅନୁଚନ୍ତା]

୩୪ । କଥା କହୁଚୁ (ଛୁ. ଆଉ) କାହାକୁ ? ମୋ ଶଶୁର ବଭ (ଭଆ) ହୋଇଚ (ଛୁ) ତୋ ଶଶୁରମାଆକୁ । [ନାଁଢଆ : ଶାଶୁ କହୁଛୁ ବୋହୂକୁ]

୩୫ । କଥା କହୁଥାଏ [ଥାଇ] କେଉଁ ରସରେ, ମୋତେ ଲାଗୁଥାଏ (ଥାଇ) ପରହାସରେ । [ବ୍ୟଂଗ]

୩୬ । କଥା ! ନାଁ କଅନୀ । [ବ୍ୟଂଗ]

୩୭ । କଣା ! ତାର ନାହିଁ ବୁହାମଣା । [ବ୍ୟଙ୍ଗ]

୩୮ । କଣା କହେ ପୋଥି, କରେ ଗ୍ରେଟା ବସି ବସି ହୁକୁମଣ୍ଡ । [ବ୍ୟଙ୍ଗ]

୩୯ । କଣାକୁ·କାଣୀ, ଭଲ ଘଟାଇଚ (ଲେ) ଚକରପାଣି । [ବ୍ୟଙ୍ଗ]

୪୦ । କଣ୍ଟା ଫଣିଚକ, ଏତେ ଗୁଣ ବୋଲି ଜାଣିଥିଲି କି, ବେଲସୁ ନ କହିଲ (ଲୁ) ଫୁଲପଗ୍ର କରି ଟେକ ଧରଥିଲ, ଦନ୍ତୁଡ଼ି ପକାଇଲ (ଲୁ) । [ଡଗ]

୪୧ । କଥା ରହିଥିବ (ଯିବ) କାଳ କାଳକୁ (ଯୁଗ ଯୁଗକୁ) । [ଡଗ]

୪୨ । କଥାକୁ କଥାଏ (ନଥାଏ) ; ଭାଇ ଘରକୁ ଭଉଣୀ ଗଲେ (ବାପ ଘରକୁ ଝିଅ ଗଲେ, ବାପ ଘରକୁ ସଜ ହେଲେ) ସିନ୍ଦୂର (ସୁନ୍ଦର) ମଥାଏ । [ଡଗ]

୪୩ । କଥାର ସନ୍ଧି, କୁଆ (କାଉ) ଧାନ ଖାଏ ବୋହୂକୁ ବାନ୍ଧି !

[ଅସମ୍ଭବ କଥା ସମ୍ବନ୍ଧେ ବ୍ୟଙ୍ଗ]

୪୪ । କଦଳି କାଟିଲି ଚେକ ଚେକଆ ଲୋ ବାହୁଙ୍ଗା (ବାହୁଙ୍ଗା) କାଟିଲି ଠିଆ ; ମୋର ବାପ ଭାଇ (ବାପ ଘର) କଦଳି ଖିଆ, ଫାଟି ଯାଉଅଛୁ ହିଆ । [ଡଗ

୪୫ । କଦଳି ଗଛର ଭଣ୍ଡା, କାହୁଁ ଆସିଥିଲ (ଅଛୁ) ମାହାନ୍ତ, ପଠାଣ, ବାହ୍ମଣ) ଟୋକା, ମାରୁଛୁ ଫାଲୁଆ ଗୁଣ୍ଡା । [ଡଗ]

୪୬ । କଦଳି ଗଛର ଓଧି; କାହିଁ ଆସିଥିଲ (ଅଛୁ) ମାହାନ୍ତ । (ବାହ୍ମଣ) ଟୋକା, ଶିଖେଇ (ଶିଖାଇ) ଦଉଛୁ (ଦେଉଛୁ) ବୁଦ୍ଧି । [ଡଗ]

୪୭ । କଦଳି ଗଛର ଉଧି, ପିଲା କଲି ବୋଉ (ମା) ପଠାଇ ଦେଲେ (ଲ) ହେ, (କି) କଏ ଶିଖା (ଖୋ)ଇବ ବୁଦ୍ଧି ? ମୋ ପ୍ରଭୁ ସେ ।

[ଶଶୁରାଳୟରେ ବାଳିକା ବଧୂର ଅନୁଚନ୍ତା]

୪୮ । କଦଳି ଗ୍ଲେପି, ବେଲ କାଳ ଉର୍ଣ୍ଣି (କାଣି) ଗଡ଼ିଲେ (ଅଇଲେ) ଗୋପୀ । [ଡଗ]

୪୯ । କଦଳି ଲଗା(ଗୋ)ଇଲି ଧାଡ଼ି ଧାଡ଼ିକା ଲୋ; ମଝି ଧାଡ଼ି ବୃନ୍ଦାବନ; ଶହେ ବାହ୍ମଣରେ ମୋ ଭାଇନା ଠିଆ ଲୋ, ଦଶନ୍ତ ପୁନଅଁ ଜହ୍ନ; ମୋ ପ୍ରଭୁ ସେ । [ବହୁଲୋକ ମଧ୍ୟରେ ଆପଣାର ବଡ଼ ଭାଇକୁ ଦେଖି ଭଉଣୀର ଅନୁଚନ୍ତା]

୫୦ । କଦଳି କାଟିଲି ଚେକ ଚେକକା ଲୋ, ଚେକଏ କଲି ପିଠା, ଚେକଏ କଲି ଗ୍ରଇତା, ଚେକଏ କଲି ଭଜ ; କବାଟ (କବଟ) କଣ (କୋଣ)ରେ ଲୁଚେଇ ଖାଇଲି, ଲାଗିଲା କେମନ୍ତ (କେମିତି, କମିତି) ମଜା । [ଡଗ]

୫୧ । କଦଳିଗଛ, ଏକା ବଥାଣକେ ବୁଢ଼ୀ ହୋଇଛୁ । [ବ୍ୟଙ୍ଗ]

୫୨ । କନିଆ ମାଆ; କାଟିବାକୁ ଦଏ ଦାଆ, ଖଗ୍ରଦେଲେ କହେ ବେଣା କାଟି ଯାଆ ।

[ଡଗ]

୫୩ । କନଶିର (କନାଶିର) ଗୋଟାସୁଦ୍ଧା ଯାଉଛୁ (ଯାଏ); ପାନରୁ ଶିର ବଗ୍ଛ ହଉଛୁ !

[ବ୍ୟଙ୍ଗ]

୫୪ । କପାଳ (କରମ) ଦଶା [ଯଶା] ! ଘରେ ଗିରସ୍ତମ ବାହାରେ [ଭାଆରେ] ମଣା ।
[ଖଦ୍ୟଦନେ ଗସ୍ତାବଳୋକର ସ୍ଥାନବସ୍ତା]

୫୫ । କପୁର ଗଲ୍ଲଣି, କନାଖଣ୍ଡ (ଖଣ୍ଡିକ) ପଡ଼ିଛୁ ।
[ବ୍ୟଙ୍ଗ—ଅସଲ ଜିନସ ଗଲ୍ଲଣି, କେବଳ ନାଆଁ (ନାମ) ବା ଢଗ ଅଛୁ ।]

୫୬ । କବାଟରେ ସବୁ କଣା ; ମତେ ବୁଚ୍ ନାହିଁ କବାଡ ପଣା, ଦୂରୁ ଥାଇ ଭୁଣ୍ଡ ଶୁଣା । [ଢଗ]

୫୭ । କମଖଡ଼ୁ ରେଖି ରେଖି ; କଲାମାଧେଇକ ଜର କରଛୁ, ସଞ୍ଜବେଳେ ଯିବ (ଯିବ, ଯିବୁ) ଦେଖି । [ଢଗ]

୫୮ । କମାବାହ୍ମୁଣୀ ଲୋ କମାବାହ୍ମୁଣୀ ! ଘ୍ରଣ୍ଡ ଖାଇବୁ ଭୁ କାହିଁ ? କୁମ୍ଭାର ଚେର (ଚେଡ଼ି) ପୋ ହାଣ୍ଡି ଗଢ଼ିଛୁ । (ଚ), ଛେପ ଲଗାଇଁ ।
[ଦକ୍ଷିଣିଆ କମା ବ୍ରାହ୍ମଣଙ୍କ ପାକପାତ୍ର ସମ୍ବନ୍ଧେ ଅତିରକ୍ତ ନିଷ୍ଠାପରତା ପ୍ରତ
[ବ୍ୟଙ୍ଗ]

୫୯ । କରୁଚ ତପ, ମାଳି ଗଡ଼ଉଛୁ ଟଅପ ଟପ । [ବ୍ୟଂଗ]

୬୦ । କାଳମଲଟୀ ; ଏ କାଳରେ (ସମସ୍ତେ) କାନ୍ତ ବିଦେଶ ଗଲେ, ହୃଦସ୍ଥ ଯାଉଛୁ ଫାଟି । [ବିରହିଣୀର ଅନୁଚନ୍ତା]

୬୧ । କଲମ ଗୋଟାସୁଦ୍ଧା ଯାଉଛୁ, ପାନରୁ ଶିର କଡ଼ା ହଉଛୁ । [ବ୍ୟଙ୍ଗ]

୬୨ । କଲସ୍ତ ପତର ବେଣୀ, ବାଉଁଶ ପତରେ ଘର ଗ୍ରୁଆଣି (ଗ୍ରୁଉଣି, ଛୁଆଣି), ଆସୁଛନ୍ତ ଗୁଣମଣି । [ବ୍ୟଂଗ]

୬୩ । କଳା କଳା ଗାଈ ଦୁଇଟି (ଦଓଟି) କଳା ଦୂବ ଖାଆନ୍ତି, ଯୋଖସ୍ତରେ ପାଣି ପିଇ ଦୋକଣରେ ଶୁଅନ୍ତ । [ନାଁଦଆ; କ୍ଷୁର]

୬୪ । କଳା କଳା ଘାସଗୁଡ଼ିଏ, ତା ମୂଳରେ ଜନ୍ତୁ ଦୋ(କୋ)ଡ଼ିଏ ।
[ନାଁଦଆ ; ମୁଣ୍ଡର କେଶ ଓ ତହିଁରେ ଥିବା ଉକୁଣି]

୬୫ । କଲକତା କଲଚୁନ ; ପରପୁଅଠେଇଁ ଶରଧା (ସିନହ୍ଵ) କଲି, ସବୁ ହେଲା ଅକାରଣ (ଝୁର ଝୁର ଗଲା ଧନ) । [ଢଗ]

୬୬ । କଲମସ୍ତି (କଲମସ୍ତା) କଲ୍ଲ ଭାଇ ; ଏଇ (ଏହି) ବାଟେ ଗଲେ ମୋହର ଭାଇ, ମୁହଁରେ ଗାମୁଛା ଦେଇ । ଭଉଣୀକୁ ଦେଖା ନ ଦେଇ ଚାଲି ଯିବା ଭାଇଙ୍କ ସମ୍ବନ୍ଧେ ଭଉଣୀର ଅନୁଚନ୍ତା।]

୬୭ । କଲମସ୍ତି (ସ୍ତା) କଲ୍ଲ ପିତା ; ଏଇ (ହି) ବାଟେ ଗଲେ ମୋ ଖୁଡ଼ୁତା, ଢଣିଗଲା କନାଛତା । [ଝିଆରକୁ ଦେଖା ନଦେଇ ଚାଲିଯିବା ବ୍ୟକ୍ତ ସମ୍ବନ୍ଧରେ ଶାଶୁଘରେ ଥିବା ଝିଆରର ଅନୁଚନ୍ତା।]

୬୮ । କଳିହୁଡ଼ା କଳିକତରା (ପୁଂ) ; କଳିହୁଡ଼ୀ, କଳିକୋତରୀ, (ସ୍ତ୍ରୀ) ।
[କଳହପ୍ରିୟ ଲୋକକୁ ଗାଳି]

୬୯ । କସି (ଷି) ଚଲଣା, ତୋ ଲାଗି ମୋ ଘରେ କାଠ ବୋଲଣା । [ଢଗ]

୭୦ । କଂସାକ ଭାତ କୁକୁରକୁ ଦେଇ, ଘାଗ (ରଗ)ରେ ହେଉଛୁ (ହଉଚ) କହି କହି । [ବ୍ୟଙ୍ଗ]

୭୧ । କଂସାକୁ ଚାଟିଆ ଝାଇଁ ; ତୋହୋ ପର ମୁହିଁ କାଲି ଆଣିବ, ଖାଇକ ପାଇବ କାହିଁ । ? [ସ୍ତ୍ରୀକୁ ସ୍ୱାମୀର ଉକ୍ତି]

୭୨ । କଂସାକୁ ଚାଟିଆ ଝାଇଁ ; ନୂଆ ଦେଖିକରି ଘରେ ରହିଲ (ଭୁଲିପଡ଼ିଲ), ପୁରୁଣା କ ମନେ ନାହିଁ ? [ଢଗ]

୭୩ । କଂସା ଲୋଟା, ଯାହା ହାବୁଡ଼ୁଚ ଅର୍ଦ୍ଧିକ ହଠା । [ଢଗ]

୭୪ । କହୁଦଉ (ଦେଉ) ଥାଏ ପରକୁ (ବତେଇଦଏ ପରକୁ). ବୁଦ୍ଧି ନ ଆସେ (ହଶେ) ଘରକୁ । [ଢଗ]

୭୫ । କହିବ କାହାକୁ ଶୁଣିବ କଏ (କେ) ? ସାଆନ୍ତ ଗୋସାଇଁ ଘଇତା ଅବୁଝା, ମାରବ ସିଏ (ସେ) । [ଢଗ]

୭୬ । କହିବ ନାହିଁ ; କହିଲେ ଏ ଘରେ ରହିବ ନାହିଁ, ଚାଟିକାଲା ମାଡ଼ ସହିବ ନାହିଁ, ଖଣ୍ଡିଆ ପଥୁରୀ ଧୋଇବ ନାହିଁ । [ଢଗ]

୭୭ । କହିଲା (ବା) ଲୋକକୁ (ର) ଲାଜ ନାହିଁ, ଶୁଣିଲା (ବା) ଲୋକକୁ (ର) ଲାଜ ।
[ବ୍ୟଙ୍ଗ]

୭୮ । କହିଲା କଥା ନ କରନ୍ତି ଯିଏ, ପଛରେ ହବ ବାବନାଭୁତ ପରିଏ । [ଢଗ]

୭୯ । କହିଲା(ବା) ଲୋକର(କୁ) ଦୋଷ, ଶୁଣିଲା (ବା)ଲୋକର(କୁ) ରୋଷ । [ବ୍ୟଙ୍ଗ]

୮୦ । କହିଲେ ରୋଷ, ନ କହିଲେ ଦୋଷ । [ବ୍ୟଙ୍ଗ]

୮୧ । କହିଲେ କୁଳ କୁଟୁମ୍ବକୁ ଲାଜ, ନ କହିଲେ କୁଳ ଯାଉଚ(ଛି) ଭାସି । [ଅନୁଚନ୍ତା]

୮୨ । କହୁଦଉଚ, ସବୁ ଗୁଣ ମୋ ଦେହ (ଦହ)ରେ ଅଛୁ । [ବ୍ୟଙ୍ଗ]

୮୩ । କଂସ, ନବଂଶ । [ଅନୁପ୍ରାସ]

୮୪ । କଂସେଇ ! ଅଡ ଶରଧା (ସିନହ)ରେ ଗୋରୁଙ୍କଠଇଁ, ଉଡ଼େଇ ଦଉଛୁ ଅଂଶେଇ । [ବ୍ୟଙ୍ଗ]

୮୫ । କଂସାର ଘରର ପାରା କୁଳ ଡାଉଁ ଡାଉଁ (ଡମ ଡମ) ଡରି (ଡରିଉଛୁ) । [ନିତ୍ୟ ଅନୁଭବଦ୍ୱାରା ନିର୍ଭୀକ ବ୍ୟକ୍ତିକୁ ସାମାନ୍ୟ ଭୟର କାରଣଦ୍ୱାରା ଭୟ ଦେଖାଇବା ସମ୍ବନ୍ଧେ ବ୍ୟଙ୍ଗ]

୮୬ । କାଇଁଚ ! ମୁଣ୍ଡ ବାନ୍ଧକର ବଇଚ ; ଘଇତା ଆସୁଛୁ (ଆସିଛୁ) ନେବା (ନବା) ପାଇଁ, ମନ ହେଉ (ହଉ) ନାହିଁ ଯିବାପାଇଁ । [ବ୍ୟଙ୍ଗ]

୮୭ । କାଉନେଇ ଗଲା କାନ ; କାଉ ପଛେ ପଛେ ଗୋଡ଼େଇ ଯାଉଛୁ, ନ ଦେଖି ଆପଣା କାନ । [ବ୍ୟଙ୍ଗ]

୮୮ । କାଉ ପଶି ଚାଲି ହୁଡ଼ି ଯାଉଛୁ ; ଜାଣ ମାଇପଙ୍କୁ ଗୋଟିଏ (ଜଣେ) ନାହିଁ, ଅଜାଣରେ ହାନ ନଉଛୁ । [ଢଗ]

୮୯ । କାଉ ବୋଲେ ରାଉ ରାଉ ; କଥାଏ ହ କଥା କହ ଥାଆନ୍ତି (ହଅନ୍ତି), ବଣା କଲା ଘାଇବୋଲୁ । [ଢଗ]

୯୦ । କାଉ ବସାରେ କୋଇଲି, ଡିମ୍ବ ଥୋଇ (ପାଡ଼ି) ଦେଇ ଅଇଲି । [ଢଗ]

୯୧ । କାକୁଡ଼ିକ ଦେଲି ରଞ୍ଜା ; ଘରେ ପଶିଗଲେ ଖଞ୍ଜଣି ବଜା, ହାତଧର ଖାଅ ଭୁଞ୍ଜା । [ବ୍ୟଂଗ]

୯୨ । କାଙ୍କଡ ଗଛର (ଧଇଲା) କଷି ; ମାଙ୍କଡ଼ ଯାଇଛୁ(ଯାଉଛୁ) ଯାତରା (ଯାତ୍ରା) ଦେଖି, ରଙ୍ଗ (ନାଲି) ପାଲଙ୍କିରେ ବସି । [ଅସମ୍ଭବ କହିବା ପ୍ରତି ବ୍ୟଂଗ]

୯୩ । କାଖରେ କତରୀ ହାତରେ ବଣା, ବନା ବୁଲୁଛୁ (ବୁଲୁଥାଏ) ଗାଡ ଗାଡ । (କାଖରେ କତରୀ ହାତରେ ଅଟା, ରାତ୍ରଯାକ ବନା ହଟହଟା) । [ଗୃହଶୂନ୍ୟ ବ୍ୟକ୍ତି ରାତରେ ଶୋଇବାକୁ ସ୍ଥାନ ଘର ଖୋଜିବୁଲିବା ସମ୍ବନ୍ଧେ ବ୍ୟଙ୍ଗ ]

୯୪ । କାଖରେ ପତର ହାତରେ ଲୁଣ, ମିଛେ ବୋଲୁଥାଏ (କହୁଥାଏ) ଡାକ ଡାହୁଣ (ଡାଅଣ) । [ବ୍ୟଙ୍ଗ]

୯୫ । କାଚ କଣ୍ଢେଇ (କୁଣ୍ଢେଇ) ପରି ପିଲା (ବୋହୂ ଝିଅ)ଟିଏ ପାଇଛୁ । [ଅତି ସ୍ୱରୂପା ପିଲା ପ୍ରତି]

୯୬ । କାଞ୍ଜି କଲି ସୋଡ଼କାଏ (ତୋଡ଼ପାଏ) ; ମୁଁ ଗଲାଦନ ବୋଉ ! କାନ୍ଦୁ ତୁ ଥିଲୁ କେଁ, ଶୁଭୁଥିଲା ବାଟ ପାଏ ଯାଏ , ମୋ ପ୍ରଭୁ ସେ । [ଶାଶୁଘରୁ ଫେରି ଆସିଥିବା ଝିଅର ଉକ୍ତି]

୯୭ । କାଞ୍ଜି ଗୀତ, କାଞ୍ଜି କଥା ; ବିନୋଦ ନାମକ ଜଣେ କବି କାଞ୍ଜି ସମ୍ବନ୍ଧେ ରଚନା କରିଥିବା ହାସ୍ୟୋଦ୍ଦୀପକ ଗୀତ । ଶେଷରେ କାଞ୍ଜି ବୁଲି ବୁଲି ବ୍ରାହ୍ମଣ ଘରେ ବିଶେଷ ଆଦର ପାଇ ରହିଲା । ଏହା 'ହାସ୍ୟତରଙ୍ଗ'ରେ ଅଛି ।

୯୮ । କାଟଣ (ଣା) ପଣ, କାଟି ଆଣିଦେବି (ଦେଲା) ବିକୁଣ୍ଡା ବଣ । [ବ୍ୟଂଗ]

୯୯ । କାଟିଗଲି ଗୁଣ୍ଡି ଘାସ ; ରାଉଟୀ ଭିତରେ ମାଇଲା ହାତ, ମିଠେଇ (ଉଖୁଡ଼ା) ଖାଇବ ଆସ । [ବ୍ୟଙ୍ଗ]

୧୦୦ । କାଟିଲି କଞ୍ଚା ପାଞ୍ଚଣ ; ଆଳପଟ ମୁହଁ ଶୁଖିଯାଇଛୁ, ଏ ଯେଉଁ କଟୁ ବଚନ । [ଢଗ]

୧୦୧ । କାଟିଲେ ରକତ ନାହିଁ, କ କୁଟିଲେ ମାଉଁସ ନାହିଁ । [ନାଁ ହଥା କଆନାଡ଼ ବା କେଞ୍ଚୁଆ ; ଢଗ = ଅତି ନଗଣ୍ୟ ବସ୍ତୁ]

୧୦୨ । କାଠେଇ ଖିଆ (ଫୁ), କାଠୀଖାଇ ସ୍ତ୍ରୀ । [ମାଇପଙ୍କ ଗାଳି ; ଅର୍ଥ=ତୋତେ ସାପ କାମୁଡ଼ୁ]

୧୦୩ । କାଣି କଉଡ଼ି, ସେ ଫେର୍ ପାଖରେ ନାହିଁ ! [ବ୍ୟଙ୍ଗ]

୧୦୪ । କାଣି ମହଲ, ବାଟରେ ଶୁଖୁଆ ଘର (ବଡ଼) ସହଳ । [ଢଗ]

୧୦୫ । କାନରେ କାପ, ଚୁଲି ମୁଣ୍ଡଠେଇଁ ଯୋଡ଼ାଏ ସାପ ! [ଅସମ୍ଭବ କଥା କହିବା]

୧୦୬ । କାଲକ ଠିଙ୍କିଶାଳରେ ଗଲା, ଏବେ (ଏବକୁ) ଯୋଡ଼ା (ଡେଙ୍ଗା) ପାଚଶି ପଡ଼ୁଛି ! [ବ୍ୟଙ୍ଗ]

୧୦୭ । ପ୍ରଶ୍ନ—କାନ୍ଥ ଶୁଣ, ବାଡ଼ ଶୁଣ, କେତେ ଚୁନାକୁ କେତେ ଲୁଣ ?
ଉତ୍ତର—ଯେତକ ଚୁନା ସେତକ ଲୁଣ ; ପାଣି ଦେଇଥିବୁ ଅଢ଼େଇ ଗୁଣ ।
[ପିଠା ଛଆଣ କରିବା ସମ୍ବନ୍ଧେ ବ୍ୟଙ୍ଗ ଉପଦେଶ]

୧୦୮ । କାଲକଯାକ ଥିଲା ବସି, ଆଷାଢ଼ ମାସରେ ପାରୁଛି (ପାଡ଼ୁଛି) ଘସି । [ବ୍ୟଙ୍ଗ]

୧୦୯ । କାଲିକ ଥିଲି ଅଭିଆଡ଼ି ହୋଇ, ବଘି (ଭିଆ) ହେଲାରୁ ଘର ଚଳୁ ନାହିଁ ! [ବ୍ୟଙ୍ଗ]

୧୧୦ । କାଲକ ଗଲା (ଥେଲା) ଅନ୍ଧାର ଘର, ଏବେ (ଏବକୁ) ଲାଗିଛି (ଲାଗୁଛି) ଯୋଡ଼ି ମସାଲ ! [ବ୍ୟଂଗ]

୧୧୧ । କାଲର ଗଢ ! ଅଜା ଆଉଁ ଥାଉଁ ମରୁଛି ନାତି ! [ଆକ୍ଷେପ]

୧୧୨ । କାଳ ହେଲା ବାବରା ! ଦାଗୀଙ୍କି ଡାଲି ଗୁହଳ, ବ୍ରାହ୍ମଣକୁ ଜାବୁଡ଼ା ।
[ବ୍ୟଙ୍ଗ-ପାଶ୍ଚାତ୍ୟ ସଭ୍ୟତାପ୍ରାପ୍ତ ଶିକ୍ଷିତ ଯୁବକମାନଙ୍କ ପ୍ରତି ବୁଢ଼ାମାନଙ୍କ ଉକ୍ତି]

୧୧୩ । କାଲି ଗଣ୍ଡ ତୁମେ ଜାଣ ନାହିଁକ ? ତୁମେ ଯହିଁ (ଯାହିଁ) ପାଇଁ ଆମେ ତହିଁ (ତାହିଁ) କ ! [ଢଗ]

୧୧୪ । କାଲ କ ହେଲା ! କାଠର (ମାଟିର) କୁଣ୍ଢେଇ ପୁଅ ବେଇଲା ! [ବ୍ୟଙ୍ଗ]

୧୧୫ । କାଳିଆ କୁକୁର କୁକୁ ; ହଜଥିଲା ଧନ ଖୋଜେଇ ଦେବ (ଖର୍ଗିଲା ଦରବ ଗଢ଼େଇ ଦେବ), କଆଁ ହଉ ଶୁକୁ ଶୁକୁ । [ଢଗ]

୧୧୬ । କାଳିକାମି, କାଳିକନା [ସ୍ତ୍ରୀମାନଙ୍କର କୃଷ୍ଣବର୍ଣ୍ଣା ସ୍ତ୍ରୀ ପ୍ରତି ଗାଳି]

୧୧୭ । କାଳିଆ କୁକୁର କାନ ; ଆଗେ କରଥିଲୁ (ଲା) ଜୀବନ (ଜୀବର) ଧନ, ଏବେ କଲୁ (ଲ) ହୀନମାନ । [ଢଗ]

୧୧୮ । କାଳିଆ ଘୋଡ଼ାର ପିଠି ; ଶାଗ ତୋଲାର ତ ନାଁଆଁ ନାହିଁ, ହାତ କରୁ(ରେ) ମୁଠି ମୁଠି । [ଢଗ]

୧୧୯ । କାଳିକା ଗୋଡ଼ୀ, ଭୂଆ ବଗୁଡ଼ । [ସ୍ତ୍ରୀ ଲୋକଙ୍କର ସ୍ତ୍ରୀ ଲୋକ ପ୍ରତି ଗାଳି]

୧୨୦ । କାଳୀ, ଜଗନ୍ନାଥଙ୍କ ଶାଳୀ । [ଅନୁପ୍ରାସ]

୧୨୧ । କାଳିବାସୀ ଦବୁ ନାହିଁ, କି ଫୋଓ ଫୋଆ କରି କହିବୁ ନାହିଁ । [ବ୍ୟଙ୍ଗ]

୧୨୨ । କାଳେ ଯୁଗେ ଯାହା ଦେଖା ତ ନାହିଁ ; ଅଘଟ ଘଟଣା ଦେଲା ଘଟାଇ ।
[ହାସ୍ୟ ତରଙ୍ଗ]

୧୨୩ । କାଳୀଜାଈ ଗଣ୍ଡିକୁ ସନ୍ତୁଆ ବୁହାଣକାରିଆ ମିଳିଛି ! [ବ୍ୟଙ୍ଗ]
[ଚିଲିକା ହ୍ରଦରେ କାଳୀଜାଈଗଣ୍ଡି ବିଶେଷ ଗଭୀର । ସେଠାରେ ଡଙ୍ଗା ପଡ଼ିଲେ ବଳୁଆ ନାହୁରି ନ ହେଲେ ଝଡ଼ତୋଫାନ ଆଦିରେ ବିପଦ ଘଟିବା ସମ୍ଭାବନା ; କିନ୍ତୁ ଜଣେ ନବଳୁଆ ନାହୁରି ହାତରେ ସେଠାରେ ଡଙ୍ଗା ବୁହାଇଲେ ବିପଦ ଅବଶ୍ୟମ୍ଭାବୀ । କଷ୍ଟସାଧ କାର୍ଯ୍ୟ ଅଯୋଗ୍ୟ ବ୍ୟକ୍ତି ହାତରେ ସମର୍ପଣ କରିବା ସ୍ଥଳରେ ଏ ଢଗ ବୋଲାଯାଏ ।]

୧୨୪ । କାଳୀକି ରସନ୍ତି, ନ ଦେଲେ ରୁଷନ୍ତି, ଦେଲେ କୁରୁ କୁରୁ ହୋଇ ହସନ୍ତି ;
[କାଳୀ ସ୍ତ୍ରୀଙ୍କ ସମ୍ବନ୍ଧେ ବିଦ୍ରୂପୋକ୍ତି]

୧୨୫ । କାଳୀ ମାଈ ! ଚୂନ ବୋଳିଲେ କି ଗୋରି ହୋଇ ? (ଘଷି ମାଜିଲେ କି ଗୋରି ହୋଇ ) [ବ୍ୟଙ୍ଗ]
(କାଳୀ ସ୍ତ୍ରୀ ଦେହରେ ଚୂନ ବୋଳିଲେ ତା ରଙ୍ଗ ପାଲଟେ ନାହିଁ )

୧୨୬ । କାଲ୍‌କା (କାଲିକା) ଯୋଗୀ, ଶିରମେ (ମୁଣ୍ଡରେ) ଜଟା (ଜଟ) [ବ୍ୟଙ୍ଗ]

୧୨୭ । କାଲି ଅଇଲା ଘଣ୍ଟି ; ଆଜ ସାଂଗିଲା ଖୁଦଯାଉହାଣ୍ଡି ! [ନୂଆ ବୋହୂର ଶାଶୁଘରେ ଲାଞ୍ଛନା ]

୧୨୮ । କାଲି ବିରି ବୋଲି କାନକଟୁଲୀ ଠୋକୁ (ଖାଉ) ଥି (ଥେ)ଲେ, ଆଜି ସ୍ନାଙ୍କର ଭୃତର (ବାଲିଙ୍ଗି) ଦେଖ ! [ବ୍ୟଙ୍ଗ]
[ପୂର୍ବେ ଦୁଃଖୀ ଥିଲା, ବର୍ତ୍ତମାନ ଅବସ୍ଥା ଭଲ ହେବାରୁ ଗର୍ବ କରିବା ବ୍ୟକ୍ତି ପ୍ରତି ]

୧୨୯ । କାଲି ସୁଆଦ ପାଇଛି, ରାତିରୁ (ସକାଳୁଁ) ଉଠି ଧାଇଁଛି ! [ବ୍ୟଙ୍ଗ]

୧୩୦ । କାଣିଆ କପିଳାର ଭେଟ ନାହିଁ ; [ଦୁଇ ଜଣଙ୍କର ଦେଖା ଦର୍ଶନ ନାହିଁ ]

୧୩୧ । କାହା କରମରେ (କୁ) ଖିରି ଖିରିଷା, କାହା କରମରେ (କୁ) ଲଡ଼ୁ ; କାହା କରମରେ(କୁ)ଖାଇଆ ଖଡ଼ା, ସ୍ନେହେ (ବା)ଇ ମରୁ । [ବ୍ୟଙ୍ଗ]

୧୩୨ । କାହା କାଳୀଗାଈ (ହରିଣୀ) କେ ନେଇ ବାନ୍ଧେ, ପର ପୁଅଲାଗି ଯୋଗିଆ କାନ୍ଦେ । [ବ୍ୟଙ୍ଗ]

୧୩୩ । କାହା ମନ କାହାକୁ ଜଣା, ମିଛେ (ମୁଖେ) ବୋଲୁଥାଏ ମୁଁ ତୋର କଣା ।
[ବ୍ୟଙ୍ଗ]

୧୩୪ । କାହାକୁ (କା ଆଗେ) କହିବି ଶୁଣିବ କିଏ (କେ) ? ସଆନ୍ତ (ଘଇତା, ଗୋସେଇଁ) ଅବୁଝା, ମାରିବ ଯିଏ (ଯେ) [ଢଗ]

୧୩୫ । କାହା ମନ ଯାଉଁ କଉଠିଁ (କୋଉଠିଁ); ମୋ ମନ ଯାଇଁ ଖଡ ହାଣ୍ଡିରେ (ହାଣ୍ଡିଶାଳରେ), ଖାଇ ମନ ଯାଇଁ ବୋହୁଠିଁ । [ବ୍ୟଙ୍ଗ]

୧୩୬ । କାହା ମନ କେଉଠି, (କୋଉଠିଁ),(କୋଉଠେଇଁ), କାଣୀ ମନ ଢ଼ଅରଠିଁ (ଠେଇଁ) । [ବ୍ୟଙ୍ଗ]

୧୩୭ । କାହାର ବାଝିଲେ ଘଷିଲେ ପୋଡ଼ପିଠା ; କାହାର(ଛାର, ଚୋର) ଚୂଲିରେ ହଗିଲେ ପୋଡ଼ମିଠା [ବ୍ୟଙ୍ଗ]

୧୩୮ । କାହାର ପଡ଼ିଛି କେଉଁ (କୋଉ) କଥା, କାଣୀକ (ମନାକୁ) ଲାଗିଛି ଢ଼ଅର (ବାରୁଣୀ) ଚିନ୍ତା (କାଣୀ ପକେଇଛୁ ଢ଼ଅର କଥା, କାଣୀ କହୁଥାଏ ଢ଼ଅର କଥା) । [ବ୍ୟଙ୍ଗ]

୧୩୯ । କାହାର କିଛି ଯିବ ନାହିଁ, ମଶବେ (ମରବା ବେଳକୁ) ବଇଷମ ଗୋସେଇଁ (ଗୋସେଇଁ) [ଢଗ]

୧୪୦ । କାହାର କ ହଉଛି ; ଗୁଣ୍ଡିଆ ଘରକୁ ଧାନ ଯାଉଛି । [ବ୍ୟଙ୍ଗ]

୧୪୧ । କାହାର ବସ୍ତୁ, କେ କରେ ଇଚ୍ଛା (ବାଞ୍ଛା) [ବ୍ୟଙ୍ଗ]

୧୪୨ । କାହାର ବସ୍ତୁ, କେ କରେ ଆସ୍ତ (ଇଚ୍ଛା) ।[ବ୍ୟଙ୍ଗ]

୧୪୩ । କାହାର ଧନ କିଏ ନେଉଛି ; ଯୋଗିଆ (ମାଧିଆ, ମଧୁଆ) ମାଇପ ରାଣ୍ଡ ହଉଚ (ହେଉଛି), (ଯୋଗିଆ ଘରେ କଳି ଲାଗିଛି ।) [ବ୍ୟଂଗ] [ଅନିଷ୍ଟ କରୁଛି ଜଣେ, ଗାଳି ଖାଉଛି ଜଣେ]

୧୪୪ । କାହା ଧନ କିଏ ନେଇ ; ଯୋଗିଆ (ମାଧିଆ, ମଧୁଆ) ଅଖିକ ନିଦ ନାହିଁ ! (ଯୋଗିଆକୁ ଦିନରେ ନିଦ ନାହିଁ, ଯୋଗିଆକୁ ରାତିରେ ନିଦ ନାହିଁ) [ବ୍ୟଂଗ] [ଜଣକର କ୍ଷତି ହେଉଛି, ଅନ୍ୟ ଜଣେ ଚିନ୍ତାକରି ମରୁଛି]

୧୪୫ । କାହାର କ ଚଳ ? ମୋ ଗୁହାଳେ ମୋ ଗାଈ ବେଇଲା ! [ଢଗ]

୧୪୬ । କାହିଁକ ? ଘୋଡ଼ା ନେଲୁ ତୋ ମାଇଁକ, ବାଟରେ ଦେଖିଲୁ ଜୋଇଁକ ; (ବାଟରେ ଦେଖିଲୁ ନାହିଁକ ?) (କାଲି କଥା ମନେନାହିଁକ ?) । [କାହିଁକେ ଶବ୍ଦର ଅନୁପ୍ରାସ ]

୧୪୭ । କାହ୍ନୁ ଛଡ଼ା ଗୀତ ନାହିଁ । [ବ୍ୟଙ୍ଗ; ବଙ୍ଗଳା ଢଗର ଅନୁକରଣ କୌଣସି ଅନୁଷ୍ଠାନର ସୂତ୍ରଧାର ପ୍ରତି ]

୧୪୮ । କଥା (କ୍ୟା) ଝାଡ଼୍ ? ନାଁ, କଥା ଝାଡ଼୍ ।

[କଥା ଗଛ ସମ୍ବନ୍ଧେ ହିନ୍ଦି ପ୍ରଶ୍ନ କୁ ଓଡ଼ିଆ ଉତ୍ତର]

୧୪୯ । କଥା ବଣ, କଥା ବଣ ପାଖେ ଦରପଣ ।

[ନାଆଁ ଦଆ, ଆଖିପତା, ତା ପାଖେ ଅଖି]

୧୫୦ । କଏ ? ନା, ଯେ ମାରଥିଲା ଉଦେ । [କଏ ଶବ୍ଦର ବକ୍ରୋକ୍ତି ଅନୁପ୍ରାସ]

୧୫୧ । କଥା କଣ୍ଟା, ଆଗରୁ ଲାଗିଛୁ ଲଟ୍ଟାପଟା (ଯହିଁରେ ଲାଗିବ ଝଟ୍ଟାପଟା) । [ଢଗ]

୧୫୨ । କଆଠ ? ଚଇତ ମାସରେ ନୂଆଗୁଡ଼ ଖାଇ, କଣ୍ଡୁ ବୁଣ୍ଡେଇଲେ (କୁଣ୍ଡାଇବା) ସିଆଠ । [କଅଠ ଶବ୍ଦର ବ୍ୟଙ୍ଗ, ଅନୁପ୍ରାସ]

୧୫୩ । କଏ କେତେ କଥା (ପଦ) କହି ଯାଉଛୁ, ମୋ ହବ (ଏଇହବି)ବୋଲି ସହି ଯାଉଛୁ । [ଅନୁଚନ୍ତା]

୧୫୪ । କଏ କେତେ କହୁ (ହୁ) ନାହିଁ । ପକେଇ ଦେଉଛ (ଦେଇଛୁ) କଥା ବଣକୁ, କଥା କଣ୍ଟା ବୋହୁ (ବୋହି) ନାହିଁ । [ଅନୁଚନ୍ତା]

୧୫୫ । କଏ କହୁଥାଏ (ଖାଲୁଥାଏ) କାହାର କଥା ; କାଣୀ କହୁଥାଏ ହଅର କଥା (କାଣୀକ ଲାଗିଛୁ ହଅର ଚନ୍ତା) । [ବ୍ୟଙ୍ଗ]

୧୫୬ । କଏ କହୁଥାଏ କାହାକୁ; ଉଡ଼ି ଯାଉଥାଏ ବାଆକୁ । [ବ୍ୟଙ୍ଗ]

୧୫୭ । କଏ ସିନା ଗୋରୁ ଚରଉଛ ; ରଜା (ଆପଣ) ମଣିଷ (ମଣଷ) ଚରି (ର) ଉଛନ୍ତି । [ସ୍ତୁତିବଚନ]

୧୫୮ । କଏ ସିନା ଦୁଧରେ ସର ପକାଏ ; ଏ ପାଣିରେ ସର ପକାଏ । [ବ୍ୟଙ୍ଗ]

୧୫୯ । କ କଥା କହିବୁ ମତେ ? ଯେଉଁଦିନୁ କାନ ପଣତ ଚିରିଲୁ (ଚୁ), ହାତେ ଡରଥାଏ ତତେ (ଡର ଚଳୁଥାଏଁ ତତେ) [ଢଗ]

୧୬୦ । କ କର ପାରୁ ? ଗୁଲ ଧର ବାଡ଼ ଓପାଡ଼ି ପାରୁ [ବ୍ୟଂଗ]

୧୬୧ । କ କହିବ ଗୁଣଗଣି ? ହତଶ୍ରୀ (ହତଶିରୀ, ପରପଞ୍ଚ) ଘରକୁ ପ୍ରପଞ୍ଚ (ପରପଞ୍ଚ, ଅଲେଖେଣା, ଅରକ୍ଷିତ) କୁଲୁଆଁ (କୁଣିଆଁ) କ ଯୋଗେ ମିଳଲା (ଲେ) ଆସି (ହତଶିରୀ ଘରକୁ ଅଲକ୍ଷେଣୀ କନିଆ କ ଯୋଗେ ମିଳଲା ଆସି, (ସ୍ୱର୍ଗରୁ ପଡ଼ିଲା ଖସି ) । [ବ୍ୟଙ୍ଗ]

୧୬୨ । କ କାଳ ହେଲା ! ମାନ ମହତ (ଇଜତ ମହତ) ସବୁ ଗଲା (ସଇଲା) । [ଆକ୍ଷେପ]

୧୬୩ । କ କାଳ ହେଲା ? ବୁଢ଼ି (ବୁଢ଼ା, ଟୋକା)ଟା ମୁଣ୍ଡରେ ବାଲ ପାଚଲା ! [ବ୍ୟଙ୍ଗ]

୧୬୪ । କ କହିବ ସେ ଘରର ଅପାର ଗୁଣ ? ଜଣ ଜଣକେ ହଅନ୍ତି ଯେତେ କପଣ ; [ଶାଶୁ ଘରେ ନବବଧୂ ରୂପେ ପ୍ରବେଶ କରିଥିବା ଅତ୍ୟାଗ୍ରର ସମ୍ବନ୍ଧେ ପିତୃ ଗୃହକୁ ଆସିଥିବା କନ୍ୟାର ରପୋର୍ଟ]

୧୬୫ । କ ଘର ଗୁଡ଼ିଲି ! କ ବର ଗୁଡ଼ିଲି ! କୁଣ୍ଡାପିଠା ପାଇଁ ଯୋଗିଆଣି ହେଲି ! [ପରିବାର ତ୍ୟାଗ କାରଣୀ ବଟପୀର ଅନୁତାପ]

୧୬୬ । କଛ ଜାଣେ ନାହିଁ ଆକୁଳି ; ହଅଛୁ ଟାଇଲି, ପୂଜାସି ଖାଇଲି ଆହୁରି ଖାଇବ ଖଟୁଲି । [ବ୍ୟଂଗ]

୧୬୭ । କଛୁ କଛୁ କରମର ଯୋର, କଛୁ କଛୁ କଲମର (କମରର) ଯୋର, (କଛୁ କଛୁ ଠାକୁରଙ୍କ ଆଜ୍ଞା) । [ଦୈବ ଓ ପୁରୁଷକାର ଉଭୟଦ୍ୱାରା ସାଧିତ କାର୍ଯ୍ୟ ସମ୍ବନ୍ଧେ ଅନୁଚିନ୍ତା]

୧୬୮ । କ ବାଇ ଗୁର୍ଜି କଲ ? ଗୁର କହୁଛି ପଣକପାଇଁ, ମୋ ପଣେତ ବନ୍ଧା ଦେଲ (ମଦ୍ଧତ ସରେଇ ଦେଲ) ! [ଅନୁଚିନ୍ତା]

୧୬୯ । କସ ? ନାଁ ଚାଲଦ୍ୟଣ ! କ ଦନ୍ତ୍ୟସ ! କ ମୂର୍ଦ୍ଧନ୍ୟଷ !
[ବାଲେଶ୍ୱରୀଆମାନେ 'କଅଣ' ସ୍ଥଳରେ 'କସ' ବ୍ୟବହାର କରିବା ପ୍ରତି କଟକିଆଙ୍କର ପରିହାସ ବାକ୍ୟ]

୧୭୦ । କ (କସ) କର ନାହୁଁ (ହିଁ ହୁଁ) ମତେ ? କନାଖଣ୍ଡକ (ଲେଙ୍ଗୁଡ଼ି ଖଣ୍ଡିକ) ଛଡ଼େଇ ନେଇଛୁ (ଛୁ, ଛ) ମାଘ ମାସର ଶୀତେ । [ଢଗ]

୧୭୧ । କମ୍ବୀର ଆସି ମିହି (ଅଧ) ନଇରେ କଲାଣି : ପୁଅଙ୍କର ଲଆ (ପିଜା) ଖିଆ ଗୁଡ଼ ଯାଉ (ଯାଇ) ନାହିଁ ! (ମା କହୁଛି ମୋ ପୁଅ ପଦ୍ମଁର ଶିଖୁଛି ! [ବ୍ୟଂଗ]

୧୭୨ । କ (କମ) କରୁ କରୁ (କରଥିଲ) କ (କସ) ହୋଇଲା, କାପାଇଁ ରଖିଲ (ଛନ୍ଧିଲ) କଏ ଖାଇଲା (କଏ ଗ୍ରେପିଥିଲା କଏ ଖାଇଲା, କଏ ଛନ୍ଧିଥିଲା କଏ ଖାଇଲା । କଏ ପାରିଥିଲା, କଏ ଶୋଇଲା ; କଏ ରାନ୍ଧିଥିଲା, କଏ ଖାଇଲା)
[ଆକ୍ଷେପ]

୧୭୩ । କସ ହେଲା ? ଧୋଡ଼ ଚୁଆ ମୋ ଗଣ୍ଡି ବେଇଲା (ମୋ ବାଡ଼ରେ ତା ଗାଈ ବେଇଲା, ତୋ ଗୋଠରେ ମୋ ଗାଈ ବେଇଲା । [ବ୍ୟଙ୍ଗ]

୧୭୪ । କୁଅନନ୍ଦ ! କଏ ଜାଣିଥିଲା ଏତେ (ଏତିକ) ଛନ୍ଦ ! [ଢଗ]

୧୭୫ । କୁଅରେ ପଡ଼ିଲା ଗୋଡ଼ ; ମତେ ନ ବୋଲିବ କ ବୁଢ଼ୀ ବୋଲ, ବୟସ ମୋ ତିନକୋଡ଼ି । [ଢଗ]

୧୭୬ । କୁଅରେ ପଡ଼ିଲା ମାଛୁ ; ମୋ କରମକୁ ତା (ତୋ) କରମ, କ୍ଷ ଯୋଗେ ଘଟିଲା (ମିଳିଲା) ଆସି । [ବ୍ୟଙ୍ଗ]

୧୭୭ । କୁଅରେ ପଡ଼ିଲା ପିଞ୍ଚୁ ; ଖାଠିଏ ଘରର (ରୁ) ଚକଉ ଖାଇ, ପଦ୍ମ ଗରୁଦର ମିଛ ! [ମୂଢ଼ ଗର୍ଭ ହୋଇଥିବା ସ୍ତ୍ରୀକୁ ବନ୍ଧୁ ବାନ୍ଧବମାନେ ଭ୍ରମରେ ଚକଉ ପିଠା ଖିଆପାଇଁ ବୋଝ ପଠାଇବା ପରେ ଗର୍ଭ କଥା ପ୍ରକୃତ ନ ଥିବାର ଜଣା ପଡ଼ିବା ସମ୍ବନ୍ଧେ ବ୍ୟଙ୍ଗ ]

୧୭୮ । କୁଅରେ ପଡ଼ିଲା (ବୁଡ଼ିଲା) ମାଠିଆ ; ବୁଢ଼ାଟା ଆଗରେ ଟୋକଟା ଠିଆ (ଟୋକାଟା ଆଗରେ ବୁଢ଼ୀଟା ଠିଆ), କେମନ୍ତେ ସହିବ (ଧରିବ) ହୁଆ ?
[ବ୍ୟଙ୍ଗ]

୧୭୯ । କୁଆ ମଇତା, (କୋଚଲ ପିତା) ; ତବତ (ତତଲ) ଖାଇବୁ କ ପଖାଳ ଖାଇବୁ ? ବନ ଥାଉଁ ଥାଉଁ କନ୍ଧ ଯାଇଥା । [ସ୍ତ୍ରୀଙ୍କର ସ୍ୱାମୀ ପ୍ରତି ବ୍ୟଙ୍ଗ]

୧୮୦ । କୁଆମଇତା, ଭଜାଭୁଜା (ଭଜା ଭଜା) କରି ରଖି ଦେଇଥା ; ଆସିଲେ ଖାଇବେ ପୁଅ (ନାଗ, ନକ) ଘଇତା । [ଢଗ]

୧୮୧ । କୁଉ (କେଉଁ, କୋଉ) କାଳେ ମାଧିଆ ନନା ବରଷାଏ ଝୋକ ଦେଇଥିଲେ ବୋଲି ଆଜଯାଏ ନାଆଁ ପଡ଼ୁଛି । [ବ୍ୟଙ୍ଗ]

୧୮୨ । କୁକୁଡ଼ାକୁ ଦେଲି ଚଆଁ, ମୁଖ ଦରଶନ କରିବ (ପାଇବ) ବୋଲି ମିଛେ ମାଗୁଥିଲି ନଆଁ (ମାଗି ଆସିଥିଲି ନଆଁ) [ଢଗ]

୧୮୩ । କୁକୁଡ଼ାକୁ ଦେଲି ଚଆଁ ; ଶାଶୁ ନଣନ୍ଦଙ୍କୁ (ସାଇପଡ଼ିଶାଙ୍କୁ) ଯେବେ ଡରୁଥିଲୁ ? ଆଖି ଠାରୁଥିଲୁ କଆଁ ? [ଢଗ]

୧୮୪ । କୁକୁଡ଼ା ଖାଇଲା ଖୁଦ ; ମୋ ଭାଇନା ଖାଆନ୍ତି ସରୁଚକୁଳି ଲୋ, କାହୁଁ ଖଟେଇବ ଦୁଧ ? [ଭଉଣୀର ଅନୁଚିନ୍ତା]

୧୮୫ । କୁକୁଡ଼ା ମୁଣ୍ଡରେ ଜଟ ; କାହିଁ ନାଲବାଗ କାହିଁ କଟକ ? ବକସି (ତେଲେଂଗା, (ଫିରଙ୍ଗି) ବଜାରେ ଭେଟ । [ଢଗ]

୧୮୬ । କୁକୁମ ଗଛର ଡ଼ାଳ ; ମତେ ନ ବୋଲ, ବୁଢ଼ୀ ବୋଲି, ଦାନ୍ତ (ପିଠି) ରୁ (ପାଚିଲା ବାଳ । [ଢଗ]

୧୮୭ । କୁଙ୍କୁମ ଗଛର ଡାଳ ; କାକୁଡ଼ି ଗୋଟିକ କେଡ଼େ ସୁନ୍ଦର ଲୋ, ଭିତରରେ ଗନ୍ଧ ଫାଳ । [ଢଗ]

୧୮୮ । କୁଚକୁଚିଆ ପକ୍ଷୀ, ଛଅ ଗୋଡ଼ ଦୁଇ ଆଖି, କଟକ ଲୋକେ ସାକ୍ଷୀ ; ଗାଁଆ ଲୋକେ ବନ୍ଧା, ଏ ନାଆଁଟି ଯେ ନ କହିବ, ସେ ଆଖି ଥାଉଁ ଥାଉଁ ଅନ୍ଧା । [ନାଁଢିଆ, ମାଛି]

୧୮୯ । କୁଜା, କାନ୍ଥଆଉଜା, ଅଧଦୂରଠାରୁ (ଠଉଁ) ଆସୁଛି ଯୁହିଁ ।
(ନାଁଢିଆ; ଶିଳପୁଆ)

୧୯୦ । କୁଷ୍ମଭଡ଼ୁଆ, ତାକୁ ତ ନ ଥାଏ କିଛି ଅଡୁଆ । [ଗାଳି]

୧୯୧ । କୁଜଙ୍ଗ ଷଣ୍ଢ, ରଜା ଧରନେଲେ ବୋହୁକୁ ଦଣ୍ଡ ।
[ଅବୁଝାମଣା ରଜାଙ୍କ ସମ୍ବନ୍ଧେ ବ୍ୟଙ୍ଗ]

୧୯୨ । କୁଟୁଣୀ (କୁଟୁଉଣୀ) ଘର ଝି (ଝୀ) ; ଠିକିଂଟାମାନ ଦେଖିଲଖିଣି (ଦେଖିଲେ କହନ୍ତି), ଏଇ (ଉ) ଟାମାନ କ (କା) ? [ବ୍ୟଙ୍ଗ]

୧୯୩ । କୁଡ଼ିଆଘରର କାନ୍ଥ, ମତେ ନ ବୋଲିବୁ ପାକେ (କୋ) ଇ ବୋଲି ସରସାରେ ଗଲା ଦାନ୍ତ । [ବ୍ୟଙ୍ଗ]

୧୯୪ । କୁଡ଼ କୁଡ଼ ଫୁଲ ସଡ଼ିଯାଉଛି, ଦାଆଁ ପୂଜାକୁ ନାହିଁଟି କିଛି । [ବ୍ୟଙ୍ଗ]

୧୯୫ । କୁଣି (ଶୁ, ଲୁଁ) ଆଁଙ୍କୁ କଥାଁ କାନ୍ଧ ଭର (ଭାର) ଗରୁ, ? [ବ୍ୟଙ୍ଗ]
[କୌଣସି ନିଃସମ୍ପର୍କୀୟ ଲୋକ କୌଣସି ଅନଧିକାର ଚର୍ଚ୍ଚା କଲେ]

୧୯୬ । କୁଣ୍ଡୀଠଉଁ କୁଣ୍ଡା ଭୁଷୁଣ୍ଡୀ ବଳେ, ଫସର ଫସର ଥାକୁଲି ଗୁଲେ [ବ୍ୟଙ୍ଗ; ସ୍ଥୂଳକାୟା ସ୍ତ୍ରୀଠାରୁ ସ୍ଥୂଳକାୟା ଅଥଚ ନିକମା ସ୍ତ୍ରୀ ବଳେ]

୧୯୭ । କୁଣ୍ଡାକୁ କୁଣ୍ଡୀ, କୁଣ୍ଡୀକି ବଳାଇ କୁଣ୍ଡାଭୁଷୁଣ୍ଡୀ । [ବ୍ୟଙ୍ଗ]

୧୯୮ । କୁଣ୍ଡା ବଳଦ ବୁହାଇ, ଅଡାବଳଦ ହାସଲ କରି, ବାପ ନାଆଁଟି ଜଗାଉଥାଇ । [ଢଗ]

୧୯୯ । କୁଣ୍ଡି ନାହିଁ କି ବାଡ଼ି ନାହିଁ, ଦନ୍ଦୁଗାଁ ପଣ୍ଡା ଏ । [କଟକ ଜିଲ୍ଲାର ଦନ୍ଦୁଗାଁ ଗ୍ରାମର 'ପଣ୍ଡା' ଉପାଧିଧାରୀ ବ୍ରାହ୍ମଣମାନଙ୍କ ଉପାଧି ପ୍ରତି, 'ଗଞ୍ଜେଇ ପଣ୍ଡା' ଶବ୍ଦର ଅନୁପ୍ରାସଜନିତ ବ୍ୟଙ୍ଗ ]

୨୦୦ । କୁମ୍ଭାଟୁଆ ମୁହଁ କଲା; ଗାଧୋଇପାଧୋଇ ଘରକୁ ପଲା, ଧରି ନେବେ ସଉରୁଣ (ସାଇଣଳା ) । [ଢଗ]

୨୦୧ । କୁରୁକୁରୁ ହୋଇ ହସୁଛ, କଣ୍ଟୁ (କୁଣ୍ଟ) ବଚନ ଶୁଣୁଛ । [ବ୍ୟଙ୍ଗ]

୨୦୨ । କୁଲାରେ କାଟିଲି ଲାଉ; ସବୁଦିନ କଥା ମନରେ ଅଛି, ଏକାଦିନେ ନେବି ଦାଉ । [ଧମକାଣି]

୨୦୩ । କେଉଁ (କୋଉଁ) ମଣିଷର ମୁହଁ ଚାହିଁଲି (ନାଁ ଧରିଲି) ଆଜି ପର ଦିନେ ମାଡ଼ ଖାଇଲି (ଓପାସ କଲି) ।

[ସାଧାରଣ ଲୋକେ ବିଶ୍ୱାସ କରନ୍ତି ଯେ ସକାଳୁ ଉଠି କୃପଣ, ଆଣ୍ଠୁକୁଡ଼ା ଆଦି ଲୋକଙ୍କ ମୁହଁ ଚାହିଁଲେ ବା ନାମ ଧରିଲେ ସେ ଦିନଟି ଅମଙ୍ଗଳ ଘଟେ; ଦାତା, ଧାର୍ମିକ, ପୁତ୍ରବନ୍ତ ଲୋକଙ୍କୁ ଦେଖିଲେ ବା ତାଙ୍କ ନାମ ଧରିଲେ ମଙ୍ଗଳ ଘଟେ ଓ ପେଟପୂରା ଭୋଜନ ମିଳେ]

୨୦୪ । କେଉଟ; ଯେଉଁ ବାଟେ ବାଟେ ଆସିଲ (ଅଇଲ) ବନ୍ଧୁ, ସେହି ବାଟେ-ବାଟେ ନେ (ଲେ) ଉଠ । [ଢଗ]

୨୦୫ । କେଉଁଠାରେ ଖଡ଼ୁ ଗଡ଼ୁ, କେଉଁଠାରେ ମୁଦି; କେଉଁଠାରେ ବୋଲୁଅଛ କରୁଣାବାରିଧି ।

[ଯଦୁମଣି ମହାପାତ୍ରଙ୍କ ବ୍ୟଙ୍ଗ ବଚନ; କୌଣସି ଗଡ଼ଜାତର କଂସା ବା ପିତଳ ପ୍ରତିମା ଶ୍ରୀକୃଷ୍ଣଙ୍କୁ ଲକ୍ଷ କରି ସ୍ତବ; ଅର୍ଥ—କଂସା ପିତଳରେ ଖଡ଼ୁ ଓ ଗଡ଼ୁ ଆଦି ବାସନ ତିଆରି ହୁଏ, ସେହି ପିତଳରେ ପୁଣି ଦେବତା ତିଆରି ହୁଅନ୍ତି ]

୨୦୬ । କେଉଁ ରାଇଜରୁ ଆଇଲା ତେଲି, କାନ୍ଧେ ଯାକ କରି ମାପିଲା ବିରି ।
[ନାଁ ଦିଆ; ପାନ]

୨୦୭ । କେଁ, କେଁ, କେଁ କବାଟ (କଗ୍ବାଟ); ପୋଝଗା ଭିତରେ କରୁଛୁ ନାଟ, ଶୁଖିଲା କାଠରୁ ବୋହୁଛୁ ପାଣି, ନଙ୍ଗଳଦଉଡ଼ା ଦଉଛୁ ଟାଣି (ଚେମେଣି ଚଢ଼େଇ ଧଉଛୁ ଟାଣି) । [ଦାଁ ଢ଼ଆ; ତେଲଘଣା]

୨୦୮ । କେଉଁ (କୋଉଁ) କଥାକୁ ? ନାହ୍ବା [ନାଆ] ପେଲ ଦେଲ କଲକତାକୁ ! [ଅତି ସାମାନ୍ୟ କଥାପାଇଁ ବିଶେଷ ଘନଘଟା ବା ଆସ୍ଫାଳନ ହେଲେ]

୨୦୯ । କେଉଁ (କୋଉ) ବାଘ୍ବା (ଭିଆ, ବଗ୍ବା)କୁ ଡ ଗୋଡ଼ (ଢୋଲ) ଅଲତା ! [ବ୍ୟଙ୍ଗ, ସାମାନ୍ୟ କଥାରେ ବହୁତ ଆଡ଼ମ୍ବର ହେବା ସ୍ଥଳେ] .

୨୧୦ । କେତେ଼ ମଜା ! (କମିତି ମଜା ; କେମିତ ମଜା) ; ପାକୁଆ ପାଟିକ ଗ୍ଭଉଳ (ଭୁଟ, ଚଣା) ଭଜା (ଟାଣୁଆ ଗଜା) ! [ପରିହାସ ବଚନ]

୨୧୧ । କେମନ୍ତ କଥା ! ପାଚଲା ବାଳକୁ ମହଣ ପୁଛା ! [ବ୍ୟଙ୍ଗ]

୨୧୨ । କେତେ ଧନକୁ କେତେ କଥା, ଗବର ଭୁଅକୁ ଗବର ବତା !
[ଅଳ୍ପଧନ ସ୍ଥାୟୀ କାର୍ଯ୍ୟ]

୨୧୩ । କେମନ୍ତେ ମଜା ! ପାକୁଆ ପାଟିକ ଗ୍ଭଉଳ ଭଜା । [ବ୍ୟଙ୍ଗ]

୨୧୪ । କେତେ କରୁଥାଉ ଗ୍ଭତର ! ମାଆ ବିକୁଥିଲା ଚ (ଚୁ)ଙ୍ଗୁଡ଼ି ଶୁଖୁଆ, ବାପ ବିକୁଥିଲା ପତର । [ବ୍ୟଙ୍ଗ]

୨୧୫ । କେମନ୍ତ ସାଜ ? ଟାକୁଆ ଗାଲକୁ ବନ ହଳଦୀ ? [ବ୍ୟଙ୍ଗ]

୨୧୬ । କେତେ କହୁଥାଏ (କହୁଥାଉ, କହୁଥିଲି) ପରକୁ ! (ଏବେ) ବୁଦ୍ଧି ନ ଆସେ (ଆସଇ) ଘରକୁ । [ବ୍ୟଂଗ]

୨୧୭ । କେମନ୍ତ ମଜା ! ପଖାଳ ଭାତକୁ ଶୁଖୁଆ ଭଜା ! [ବ୍ୟଙ୍ଗ]

୨୧୮ । କେତେଦିନ ଥିବ (ଅବ) ଆମ୍ବର ପଣ ; ଆମ୍ବ ସରଗଲେ ଟାକୁଆ ବଣ ।
[ବ୍ୟଙ୍ଗ]

୨୧୯ । କେତେ କେତେ କଥା ମନରେ ନାହିଁ ! ଫୁଲ ତୋଳୁଥିଲି ବଣରେ ଯାଇ !
[ବ୍ୟଙ୍ଗ]

୨୨୦ । କେତେ ଗ୍ଭହୁଁଥାଉ (ଅଛୁ) ମତେ ; ତୋଠାରୁ (ଠଉଁ) ସୁନ୍ଦର ମୋର ବିନୋଦିଆ (ବାବୁଲି), ଗ୍ଭକର ରଖିବ ତତେ । [ଢ଼ଗ].

୨୨୧ । କେମନ୍ତ ! ନିଦ ହେଲାବେଳେ ହାଈଆ ଯାଦୁ, ଲୁଣ୍ଠେଇ ହେଲେ ଯେମନ୍ତ ! [ଶୋଇଥିଲାବେଳେ କୋରେଇ ଯାଦୁ, ଗଲୁ ଉଠିଲେ ଯେମନ୍ତ) । [ପରିହାସ]

୨୨୨ । କେନ୍ଦୁକାଠ ଭଳି (ପରି) ଗୋରା ।
[ଘୋର କୃଷ୍ଣବର୍ଣ୍ଣ ଶରୀରବିଶିଷ୍ଟ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୨୨୩ । କେବେ ଦେଇଥିଲି (ଥେଲା) ଧାନ ପାଏ, ଗୋଡ଼େଇ ମାରୁଛୁ ଏବ (ଆଜ୍ଜ) ଯାଏ ! [ବ୍ୟଙ୍ଗ]

୧୨୪ । କେଳାଧୁଡ଼ି (ଡ଼ୁ) କ ; ଟୋକା ବଶ ହେଲ ଦରବୁଢ଼ୀକ ! [ବ୍ୟଙ୍ଗ]

୧୨୫ । କେହ୍ନ କାହାଁରକୁ ନୁହନ୍ତ ଊଣା ! ମିଛରେ (ଭୁଗ୍ଗକୁ) ଲଗିଛ ଏ ଉଲୁଗୁଣା ! [ବ୍ୟଙ୍ଗ]

୧୨୬ । କେହ୍ନ ସିନା ହାତରେ ଗଣ୍ଠି ପକାଏ ? ଏ ଗୋଡ଼ରେ ଗଣ୍ଠି ପକେଇବ ! (ପକେଇବା ଲୋକ) । [ଅଛ ଧୃଷ୍ଟିବ୍ୟକ୍ତି ପ୍ରତ ବ୍ୟଂଗ]

୧୨୭ । କେହ୍ନ (କଏ) ସିନା ଦୁଧରେ ସର ପକାଏ ? ଏ ପାଣିରେ ସର ପକାଏ, (ପକେଇବ, ପକେଇବା ଲୋକ) । [ଅଛ ଧୃଷ୍ଟିବ୍ୟକ୍ତ ପ୍ରତ ବ୍ୟଂଗ]

୧୨୮ । କୋଇଲ ପାରଡ଼ା (ପାରୁଡ଼ା) ଆମ୍ବ ; ଦାଣ୍ଡ ଢ (ଢୁ) ହୁଡ଼ରେ ଯାଉଁଳ କବାଟ, ଖଞ୍ଜାରେ ନଡ଼ିଆ ଖମ୍ବ (ଖୁମ୍ବ) ।

[ଘରର ବାହାରେ ଆଡ଼ମ୍ବର, ଭିତରେ ଦରଦ୍ରତା, ବ୍ୟଂଗ]

୧୨୯ । କୋଠୀ ଆୟୁଷ (ଆଇସ) ମାଇଥା ; କୋଡ଼ ଖଣ୍ଡେ ଧର (ଘେନ, ଘିନ) ପଡ଼ିଆ । [ଆଶୀର୍ବାଦ ; ମୂଲ ଲଗି ପେଟ ପୋଷ ଓ ଦୀର୍ଘାୟୁ ହୋ]

୧୩୦ । କୋକିଳ ମଳଦ୍ୱାର ଭଳିଆ କଣ୍ଠ । [ବ୍ୟଂଗ, କର୍କଶସ୍ୱର]

୧୪୧ । କୋକ ମୁହଁା, କୋଙ୍କା ମୁହଁା । (ଗାଳ)

୧୩୨ । କୋଡ଼କେରେ (କୋଡ଼ିକ ଭିତରେ) ବୋଡ଼ିଏ ମିଛ । [ବ୍ୟଂଗ ; ସମ୍ପୂର୍ଣ୍ଣ ମିଥ୍ୟ କଥା]

୧୩୩ । କୋରଡ଼ ଆଖି ; ସଜ ହଉଥାଏ (ଅଛୁ, ଯାତରା ଦେଖି । [ବ୍ୟଂଗ]

୧୩୪ । କୋଟୀକେ ଗୋଟିଏ ମଣିଷରେ ଲେଖା । [ଅସାଧାରଣ ବ୍ୟକ୍ତିର ପ୍ରଶଂସା]

୧୩୫ । କୋରଡ଼ରେ ପେଗ୍ଧ ବୋଲେ ; ବାଜ ମାରୁ ମାରୁ ବହୁଗ ମାରୁ [ଢଗ]

୧୩୬ । କୋଟିକରୁ ଗୋଟିଏ ଊଣା । [ବ୍ୟଂଗ, ଅସଂଖ୍ୟ, ଅଗଣ୍ୟ, ପଦାର୍ଥ]

୧୩୭ । କୋରଡ଼େ ବୋବାଏ ବଣି ; ସଉତୁଣୀ ଠେଇଁ ପକେଇଦେଲ, ଗୁହୁ ଗୁହୁ କୁଳୁକୁଳିଆ ପାଣି । [ବ୍ୟଂଗ ; ସଉତୁଣୀ ଦେହରେ ମଇଳା ପାଣି ପଡ଼ୁ ; ମୋ ପାଟିରେ ମୁଁ ବଷ୍ଟା କୁଳୁକୁଳିଆ କରେଁ ପଛକେ, ସେଥିକ ମୋର ଶୋଚନା ନାହିଁ]

୧୩୮ । କୋରଡ଼େ ବୋବାଏ ବଣି; ପଲମ ପଗ୍ଏ ନକର ମୁହଁ ; ଦେବ ସୁନାଚୁଡ଼ି ଆଣି (କାଲିକ ଦେବ ବସଣି) । [ଢଗ]

୧୩୯ । କୋରଡ଼େ ବୋବାଏ ବଣି ; ଧାଇଁପଡ଼ ହୋ ସାଇ ମାଇପେ, (ମତେ) ରଣ୍ଡ କଲ ସଉତୁଣୀ । [ବ୍ୟଂଗ ; ଦୁଇ ସପତ୍ନୀ କଳ କର ଅନ୍ୟାନ୍ୟକୁ 'ରଣ୍ଡ ହୋ' ବୋଲି ଗାଳ ଦେବା ]

୧୪୦ । କୋଳଥ ଡାଲ; ଟିକଏ ମାଗିଲେ ଢଏ ଅଜାଡ଼ (ଦଉଥା ଡାଳ) [କୁଣ୍ଡିଆ (କୁଳୁହାଁ) ପଡ଼ିଲେ ଦେ ଅଜାଡ଼] । [ବ୍ୟଂଗ]

୧୪୧ । କୋଳଥ ଡ଼ାଲି (ଅଟକାଳି) ଖୋଇବ (ଖୋଇଛନ୍ତି) । ଯେ, ଘରରେ ହଗେଇ ନବନ୍ତି (ନଉଛନ୍ତି) ସେ । [ବ୍ୟଂଗ]

୧୪୨ । କୋଟି ଆୟୁଷ (ଆଇଷ) ହୋ (ପା) । [ଆଶୀର୍ବାଦ , ଦୀର୍ଘାୟୁ ହୁଅ ।

୧୪୩ । କୋଣେ ଯା, ପୋଷେ ପା, କର୍ମ ଦିନ ଭୁଲୁଥା । [ଭିକ୍ଷାବୃତ୍ତି ପ୍ରତି ବ୍ୟଂଗ]

—*—

## (ଖ)

୧ । ଖଇଞ୍ଜ ପେଟରେ ମୀନ; କାନ୍ତ ମନେ ଯେବେ କପଟ ନ ଥିଲା, କମ୍ପା କଲେ ଭିନ୍ନାଭିନ୍ନ (ହିନମାନ) । [ଢଗ]

୨ । ଖଇର ଟୋପି, ବେଲ ଉଣ୍ଡି କରି ଗଢ଼ିଲେ ଗୋପୀ । [ବ୍ୟଙ୍ଗ]

୩ । ଖଇର ହାକୁଟି ଉଠୁଛି ଯେତେ, ଓପରେ ଓପରେ (ଗୁଣ୍ଡା ଗୁଣ୍ଡାକରି)ଖୁନ୍ଦୁଛି (ଗେବୁଛି, ଗେବୁଥା, ଗିଳୁଛି, ଗିଳୁଥା) ତେତେ (ସେତେ) । [ବ୍ୟଙ୍ଗ;ଅଜୀର୍ଣ୍ଣରେ ପୁଣି ଖାଇବା ବ୍ୟକ୍ତିପ୍ରତି]

୪ । ଖଉରିଆ ମୁଣ୍ଡେ ଖୋପା; ଟାକୁଆ ଗାଲକୁ ବନ ହଳଦ (ବୁଢ଼ା ବୟସକୁ ନାଲି ଗାମୁଛା) ମାରି ଖାଉଅଛି ତୁଚ୍ଛା ! [ବ୍ୟଙ୍ଗ]

୫ । ଖଜୁରି କୋଳି, କାହିଁଯିବ ତୁମ ବଉଁସ ଓଳି ? [ଅଭିମାନ ବଚନ]

୬ । ଖଜୁରି ଗଛର କି ଗୁଣ ବର୍ଣ୍ଣିବ (ବାନ୍ଧୁନବ) ? ମୂଳରୁ ପାହାଞ୍ଚ ପାହାଞ୍ଚ ; [ବ୍ୟଙ୍ଗ]

୭ । ଖଜୁରି ପତର ପଟି' ହାତ ଧରି କରି ଉଠେଇବୁ ବୋଲି, ମିଛରେ ପଡ଼ିଲି ଝୁଣ୍ଟି (ମିଛେ ପଡ଼ିଗଲି ଝୁଣ୍ଟି ) । [ଢଗ]

୮ । ଖଞ୍ଜିଛି (ଖଞ୍ଜିଲା) ବନ୍ଧୁ, ଛତରଖିଆକୁ ଛତରଖାଇ । [ବ୍ୟଙ୍ଗ]

୯ । ଖଟ ତଳେ ଗଲା ନେଉଳ, କାକ କୁହାକୁହି,(କୋହି) ଗୁପତ କଥା, ମତେ କହୁ ନାହୁଁ ବଉଳ । [ଢଗ]

୧୦ । ଖଟ ତଳେ ଗଲା ବିଛା; ଧନ କରିଛନ୍ତି (ମୋ ଧନ କଲେଣି) ନୂଆ, (ଦଉ) ଗୁଜର ପଲଙ୍କ ପଡ଼ିଛି (ଲା) ତୁଚ୍ଛା । [ନୂଆ ଗୁଜର କରିବାକୁ ବିଦେଶକୁ ଯାଇଥିବା ବ୍ୟକ୍ତିଙ୍କ ବିରହିଣୀ ସ୍ତ୍ରୀର ଅନୁଚିନ୍ତା ]

୧୧ । ଖଟ ତଳେ ପାଣି ଢୋବା; ପୁଅ ଝିଅ ନାହିଁ, କି ବୋଲି ଡ଼ାକିବ ? ଭାତଭୁଞ୍ଜା (ଉଠଉଠ, ଅସ ଆହେ) ଫୁଲଗଞ୍ଜା ! [ବ୍ୟଂଗ]

୧୨ । ଖଟ, ହୁଏ ରଟରଟ (ମଟମଟ, ଫଟଫଟ) । [ଶେଷ ବଚନ]

୧୩ । ଖଡ଼ା ଖାଇ ଖାଇ ଦାନ୍ତ ପାଳୁଆ, ନଖରୁ ଘିଅ ପୋଗ୍ରୁ ହଉଛୁ ! [ବ୍ୟଙ୍ଗ]

୧୪ । ଖଡ଼ିକ ଆସେ କ (ନା) ପେଡ଼ିକ ଆସେ ? (ଖଡ଼ିକ ନା ପେଡ଼ିକ) ? । [ବ୍ୟଙ୍ଗ]

୧୫ । ଖଡ଼ି ଗଡ଼ି ଗଡ଼ି ଗଲା; ଅଣବାଭୁଆର ପୁଅ ହୋଇଲା (କୁମର ହେଲା) । , ଆଗ ଦୋପ୍ତ କଟିଗଲା (ଅଣ୍ଟକୁଡ଼ା ଦୋଷ ଗଲା ।) [ବ୍ୟଙ୍ଗ]

୧୬ । ଖଡ଼୍ଭଲ କଲି ମାଜ୍ (ଲୋ ସୁନ୍ଦରି) ! ମୁହ ଭଲ କରି ମାଜ୍; ସାଇ (ରଜା) ତ ଜାଣିଲେ ପଡ଼ଣା (ସ୍ୱାଇଜ) । ଜାଣିଲେ, ଆଉ କାହିଁ (ହ୍ୱା) । ପାଇଁ ଲାଜ୍ ! ନଳଙ୍କ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୧୭ । ଖଡ଼୍ ବକ ରଖିଲ । (କଟିଲ) ଲୋକ (ଦାସୀ) । ସେ ହେଲା ସାଆନ୍ତାଣୀ ମୁଁ ହେଲି ଲୋକ (ଦାସୀ), [ଅନୁଚନ୍ତା ।]

୧୮ । ଖଣ୍ଡ ଖିର ପିଇ ଦହଥା ଘୋରଘାଗ (ଶ୍ଲେଷ) ।

୧୯ । ଖଣ୍ଡିଆ । (ବାହ୍ୱାଡ଼ା, ମନ୍ଦର) ଦାନ୍ତୀ ମୁଗପଇଡ, ଗୁହଲ ସେରକ ଉଆ, ଖଣ୍ଡିଆ ଦାନ୍ତକ ବର ପଡ଼ିଛୁ ଆର ସାଇ (ଗାଆଁ) । ବଣଭୁଆ । (ଖଣ୍ଡିଆଦାନ୍ତୀ ବାଳିକାଙ୍କୁ ତା ସଙ୍ଗ ବାଳିକାମାନେ ଚଡେଇବା ଉକ୍ତି ।)

୨୦ । ଖଣ୍ଡିଆଭୁତ, ଘାଉଁର ଖାଉଛୁ (ଖେଳୁଛୁ) ସାତପଡାତ (ଘରସ୍ତ) (ପରିହାସ ।)

୨୧ । ଖନାକୁ ଖନା; ଭଲ ଖଞ୍ଜି ଛନ୍ତି (ଗଢୁଦେଲ) ଚକରପାଣି । [ବ୍ୟଂଗ]

୨୨ । ଖପରଭଞ୍ଜନ ଯେ, ଧନୁ ଧରାଇବ (ଧରେଇବ) ସେ । [ଅନୁଭବ]

୨୩ । ଖପରାକାଣ୍ଡୁ, କିଛି ନ ପାଇଲେ (ଲୋକ ବଜାରରେ) ଭୁଇଁ (ହେଁସ) ଦରାଣ୍ଡୁ (ବ୍ୟଂଗ)

୨୪ । ଖପର ଉଖଣ୍ଡି ଭୁଖ; ଉନେ ପାଇ ନାହିଁ (କରି ନାହିଁ) ସ୍ୱାମିଙ୍କ (ଘଇତା) ସୁଖ, ସେଥିଲାଗି (ପାଇଁ) ମନ ଦୁଃଖ (ଅନୁଚନ୍ତା ।)

୨୫ । ଖପୁରି ଲୋ ! କେତେ ହେଉ (ହସ) ଆଉ ଗ୍ରେପଣି ଲୋ ! (ବ୍ୟଙ୍ଗ)

୨୬ ଖରାକୁ ମରେଁ, ବର୍ଷାକୁ (ମେଘକୁ) ଡରେଁ, ଶୀତକୁ ନୁହେଁ ମୁଁ ବାହାର, ଏମନ୍ତ କନ ମୁଁ କେମନ୍ତେ ବଞ୍ଚିବ, କଏ ଆଣିଦବ ଆହାର ? (କିଏଁ ମାରୁଆଉ ପାହାର) ? [ଅଳସୁଆ ଲୋକ ପ୍ରତି ବ୍ୟଙ୍ଗ]

୨୭ । ଖରାଦିନଯାକ ଥିଲି ମୁଁ ବସି, ଆଷାଢ଼ ମାସକୁ (ଚତୁର୍ମାସ୍ୟାକୁ, ବରଷା ଦିନକୁ, ମେଘବରଷାକୁ) ପାଉଛୁ (ମାଡ଼ୁଛୁ) ଘସି । [ଅଳସୁଆ ପ୍ରତି ବ୍ୟଙ୍ଗ]

୨୮ । ଖଲ୍କନ୍ଧ କନ୍ଧ ମାରୁଛୁ ଗଞ୍ଜି । [କ୍ରୋଧ ବଚନ

୨୯ । ଖଲ ସେଉଁ ସେଉଁ ଭୁଡ଼ିଲ ବେଳ (ପୁରାଲକାଳ), ଖଲରେ ବାଟିଛୁ ବାସିପଖାଳ [ବ୍ୟଂଗ]

୩୦ । ଖାଇବ ନାହିଁ, କ ଖୁଆଇବ ଖୁଆଇଦବ, ଖୋଇଦବା ନାହିଁ । [ଅଭିମାନ]

୩୧ । ଖାଇଲା ବେଳକୁ ପଇତା, ଶୋ(ଶା) ଇଲାବେଳକୁ ବୁଢ଼ିଆ । [ବ୍ୟଙ୍ଗ]

୩୨ । ଖାଇଲା ବେଳକୁ ପୁଅର ମା(ମାଆ), ହୁଳହୁଳି ପକା(କେ)ଇଲା ବେଳକୁ ଜାଭରେ (ଭୁଣ୍ଡରେ) ଘା (ଘାଆ) । [ବ୍ୟଙ୍ଗ]

୩୩ । ଖାଇଲା ଲୋକର ଦୋଷ ନୁହେଁ, କହିଲା ବୁଢ଼ିଲା ଲୋକର ଦୋଷ [ବ୍ୟଙ୍ଗ]

୩୪ । ଖାଇଲା ଘରର ପୁଅ ରଙ୍କ. (ଖାଇଲାପିଇଲା ପିଲା ରଙ୍କ) । [ବ୍ୟଙ୍ଗ]

୩୫ । ଖାଇଲା ଲୋକକୁ (ର) ଲାଜ ନାହିଁ, ଦେଖିଲା (କହିଲା) ଲୋକକୁ (ର) ଲାଜ ! [ବ୍ୟଂଗ]

୩୬ । ଖାଇଲେ ଜାଡ ଯାଏ ନାହିଁ, କହିଲେ ଜାଡ ଯାଏ । [ଆଧୁନିକ ହିନ୍ଦୁସମାଜର ସ୍ୱାର୍ଥ ପ୍ରତି ବ୍ୟଙ୍ଗ ]

୩୭ । ଖାଇଲେ ଖାଇଲା ଢନ ଙ୍କୋରଡ଼ା; ମନୁ ଓରମାନ ଗଲା । [ଡଗ]

୩୮ । ଖାଉଛୁ (ଖାଇଲା, ଖାଏ) ଲଡ଼ୁ, ହଗି ଦଉଡ଼ୁଛୁ (ଧଉଡ଼ୁଛୁ, ଧାଉଁଛୁ, ଧାଇଁଥାଏ ଲୁଡ଼ୁଲୁଡ଼ୁ । [ବ୍ୟଂଗ]

୩୯ । ଖାଉନପଣକୁ ଯୋଗ୍ୟ ନୁହେଁ (ନୁହନ୍ତି), ଓଳକ ନ ହେଲେ ରୁଷେ (ରୁଷନ୍ତି) । [ବ୍ୟଙ୍ଗ]

୪୦ । ଖାଲି ମୁକୁନ୍ଦା ଫେରଫାର୍, ଦୋହର ପଇସା ଅଣ୍ଟାରେ ମାରେ [ବ୍ୟଂଗ ]

୪୧ । ଖାଲିକ (କୁ) ତୁଣ୍ଡ, ମାଗଣା କଥାରେ ମନ ମୁରୁଛ । [ବ୍ୟଙ୍ଗ]

୪୨ । ଖିରି ଖିରସା କାକର ପାଣି, ତହିଁରେ ନ ଥାଏ ଲୁଣ । [ବ୍ୟଂଗ]

୪୩ । ଖୁଆଇ ପିଆଇ (ଖୋଇଲି ମେଇଲି, ଖୋଇପେଇକରି) ରଖିଲି (ଆଣିଲି) ଦାସୀ, ସେ ହେଲା ସାଆନ୍ତାଣୀ, ମୁଁ ହେଲି ଦାସୀ (ବାସି) । [ସ୍ୱାମୀ ଦାସୀ ବା ପୋଇଲି ପ୍ରତି ଅନୁରକ୍ତ ହେଲେ]

୪୪ । ଖୁଣ୍ଟି ଧଇଲି କି ଦାଡ଼ ଧଇଲି, କପାଳେ ଥେଲାକୁ ପୁଅ ଦେଇଲି । (ମାଗି ଯାଚକରି ପୁଅ ପାଇଲି) । [ବ୍ୟଙ୍ଗ]

୪୫ । ଖୁଣ୍ଟି ଖାଉଥିଲୁ ମଦରଙ୍ଗା (କନଶିର) ଶାଗ (ଡେମ୍ପ), ପିଠି ଖାଉଥିଲା ଖଦ ; କାଲି ଘୁଞ୍ଚୁଥିଲୁ ଅଇଠାପତର, ଆଜି ତୋ ଗୁଡର ଭଦ (ଯଦ) । (ଅଣ୍ଟୁ ତ ନ ଥିଲା ଠଙ୍କ କାଞ୍ଜିପାଣି, ଆଜି (ଏବେ ରୁଚୁ ନାହିଁ ବର ବଦ ) । [ବ୍ୟଙ୍ଗ]

୪୬ । ଖେଣ୍ଡା ଲୋ ଖେଣ୍ଡା ! ଖେଣ୍ଡା ହାପୁଡ଼ୁଛୁ ମୁଗପଇଡ (ଖେଣ୍ଡା ଦଡ଼ମାଆ ଧାନ କୁଟୁଛୁ) । [କ୍ଷେତ୍ରମଣି ନାମକ ବାଳକ'କୁ ସଙ୍ଗର ବାଳିକାମାନଙ୍କର ଚିଡ଼ାଇବା ବଚନ]

୪୭ । ଖେଣ୍ଟେଇ ନାମୀ, ବାଲିଗେଡରେ (ଗର) ଡ଼ାକୁ ବେସରପାଣି । [ବ୍ୟଙ୍ଗ]

୪୮ । ଖେଳ ଖେଳ (ଖାଳ) କରି ଅଇଲେ ଝିଅ, ଝିଅଙ୍କୁ ମୁହଁଏ ଚୋରାଣି (ଚୋଡ଼ାଣୀ) ହଅ । [ଗେଲବସର ଅଳସୀ ଝିଅ ପ୍ରତି ବ୍ୟଙ୍ଗ ବଚନ]

୪୯ । ଖେଳି ଖେଳି ଦିନଯାକ ଲୁଚି ବୁଲୁଥିବେ (ଲୋ), ଖାଇଲା ବେଳକୁ ଘରେ ପାଦ ପକେଇବେ (ଲୋ) । [ବ୍ୟଙ୍ଗ]

୫୦ । ଖୋଇଲି ପେଇଲି ନ ହେଲି (ନୋହିଲି) କଛ, ଅଧିକାର କଲି ଗୁହାଳପୋଛା । [ଦାସୀ ପ୍ରତି ଅନୁରକ୍ତ ସ୍ୱାମୀ ପ୍ରତି ଖେଦୋକ୍ତି]

୫୧ । ଖୋଦାବନ୍ଦ୍, ଖାମିନ୍ଦ୍ (ନ୍) । [ହିନ୍ଦି ; ବଡ଼ଲୋକଙ୍କୁ ନମ୍ରସ୍ଥ ବ୍ୟକ୍ତିର ସମ୍ବୋଧନ]

୫୨ । ଖୋଦ୍ ହାକମ୍ ଆସନ୍ତି ଗୁଲି, ପାଇକ (ସଇସ, ସହିସ) ଯାଇଛି ଘୋଡ଼ାରେ (ବଜାର) ବୁଲି । [ବ୍ୟଙ୍ଗ]

—*—

(ଗ)

୧ । ଗଉଡ଼ ବାଡ଼ି ଘେନ କରି (ନଉଡ଼ି ଘେନି) ଦଉଡ଼ । [ବ୍ୟଙ୍ଗ]

୨ । ଗଉଡ଼ ଘର ଗୁହାଳେ ଧୋଇ (ଖଣ୍ଡଉପୁଡ଼ା) ମୋଚଙ୍କି ବଖରାଘର । [ଗଉଡ଼ର ଗୋରୁ ମଲେ, ମୋଚିଙ୍କୁ ଚମ ମିଳେ । ବ୍ୟଙ୍ଗ]

୩ । ଗଉଡ଼ଘର ଦହି ; ଆମ୍ବୁଆଳି ହନେ ଶୋଇପଡ଼ିଛି (ଥିଲି), ଆମ୍ବିଲା ଆମ୍ବ (ପଖାଳ) ଖାଇ । [ଡଗ]

୪ । ଗଉଡ଼ଘର ଦହି ; ବଣିଆଘର ଦେଶୀସିନ୍ଦୂର (ସୁନ୍ଦର), ମଥାରୁ ପଡ଼ିଛି ବୋହି । [ଡଗ]

୫ । ଗଉଡ଼ୁଣୀଙ୍କର ଗଡ଼ୁ, ନ ଦେଲେ ନ ଦବୁ ଡଉଁରି ଶାଢ଼ୀ, ମୁହଁ କାହିଁପାଇଁ ମୋଡ଼ୁ ? [ଡଗ]

୬ । ଗଉଡ଼ୁଣୀଘର ଘି (ଘିଅ) ପଲମ ନକନକେଇଲା (ଲକଲକେଇଲା) ; ପନ୍ଦରହାତି ଡଉଁରି ଶାଢ଼ୀ ମୋ କାନ୍ଧକୁ ନ ପାଇଲା (ବାପଘର କଥା ବାହୁନି ବାହୁନି ଗେହ୍ଲେଇ ସକେଇଲା) । [ଡଗ]

୭ । ଗଛ ପଲଙ୍କ (ଖଟ)ରେ ଶୋଇଲି ; ଦିନଯାକ ଅଭିମାନରେ ଗଲା, ଘଣ୍ଟିକ ହି ଓ)ପାସ ରହିଲା । [ଡଗ]

୮ । ଗଛ ମଝିମେରୁ ପଡ଼ର ସରୁ, ତା ପୁଅ ନାଁ ବାଙ୍କିଆମେରୁ ।
[ନାଁଡଆ ; ଡେଙ୍ଗୁଲି ବା କସ୍ତୁଁ।ଗଛ]

୯ । ଗଛ (ଗଛ ସାନ ସାନ ଖରି) ଲହକା, ପଡ଼ର ବଙ୍କା, ତା ଫଳ ବଜାଏ ଷାଠିଏ ଟଙ୍କା । [ନାଁ ଡଆ; ଧାନ]

୧୦ । ଗଡ଼ ହାଡ଼ୁଆ, ଫଳ ନାଲୁଆ, ଏ ନାଁ ଆଣି କହି ନ ପାରିଲେ, ତା ବଉଁଶଯାକ ଗାଲୁଆ । [ନାଁ ଢଆ ; ଓଳ]

୧୧ । ଗଡ଼ ପାଇକ ଅଇଲେ (ଆସିଲେ) ଧାଇଁ, ନେଉଟିଆମୂଳ (ମଦରଙ୍ଗା ମୂଳ, କନାଶିରମୂଳ) ରଖିଲେ ନାହିଁ । [ବ୍ୟଙ୍ଗ]

୧୨ । ଗଡ଼ି ଗଡ଼ି ଗଲା ବେଳ, ଉଠ ପିଣ୍ଡା ଦେଖି ଶରଧା କଲ ହେ, ବାପା (ନନା) ! ପେଜପିଆ ଘରେ ଦେଲ (ଜଳନ୍ତା ଜୁଇରେ ଦେଲ) ।
[ଗରିବ ଘରେ ବିଭା ହୋଇଥିବା କନ୍ୟାର ଅନୁଚିନ୍ତା]

୧୩ । ଗଙ୍ଗଶିଉଳି ! କି ଖଞ୍ଚା ଲାଗି ତୁ ଗଲୁ ମଉଳି ! [ଢଗ]

୧୪ । ଗତ କଥା ମନେ ନାହିଁକି ? ତାଳଗଛମୂଳେ ମାଡ଼ି ମାରିଥିଲୁ, ବାଇଗଡ ପୋଡ଼ା ପାଇଁକି । [ଢଗ]

୧୫ । ଗତ ଏ ଦିନେ ବଆଳ ଦଗ୍ଧ (ଘାସ କାଟୁଥିଲୁ), ପିଠି ଖାଉଥିଲୁ ଖରା, ଆଗେ ଖାଉଥିଲୁ କୁଣ୍ଡାଚକୁଳି ଏବେ ରୁଚୁ ନାହିଁ ବିରି ବରା (ନ ରୁଚେ ପୁରକାକରା) !
[ଗରିବଘର ଝିଅ ବଡ଼ଲୋକ ଘରେ ବିବାହ ହୋଇ ଗର୍ବ ପ୍ରକାଶ କଲେ ତା ପ୍ରତି ବ୍ୟଙ୍ଗ ]

୧୬ । ଗରଜି ନ ପାରି ଅରଜି ଖାଏ (ଅରଜୁଥାଏ) । [ବ୍ୟଂଗ]

୧୭ । ଗରଜି ଗଜଜି ଦରଜି ପେଟ । [ଅନୁପ୍ରାସ; ବିରକ୍ତି]

୧୮ । ଗରଜି ଗରଜି ମରଜି ପାଇଲ ନାହିଁ । [ବିରକ୍ତିସୂଚକ ଅଭିମାନ]

୧୯ । ଗଲା କଥା (ତ) ଗଲାଣି, କଆଁ ଲାଗିଛୁ ହଣାହଣି ? [ଢଗ]

୨୦ । ଗଲା କଥା ଗଲାଣି, ଘାପଲୁ (ବଇଠାରୁ) ତେଲ (ବଳିତା ମାଲପା), ସଇଲାଣି (ମୁହଁରୁ ଗଲୁ ମଲାଣି) । [ବ୍ୟଂଗ]

୨୧ । ଗଲାଣି ତ ଗଲା କଥା, ସେଥିପାଇଁ କଆଁ ମୁଣ୍ଡବଥା । [ଢଗ]

୨୨ । ଗଲ ଅଇଲ, ଯାହା ଦେଖିଥିଲ (ଶୁଣିଥିଲ) ତାହା କହିଲ । [ବ୍ୟଂଗ]

୨୩ । ଗହଣା ଏତେକର ମଧ୍ୟେ (ମଇଧେ) ନାକରେ ନମ୍ବକାଠି ଥାନେ । [ଅତି ସାମାନ୍ୟ ଅଳଙ୍କାର ପିନ୍ଧି ଶାଶୁଘରକୁ ଅସିଥିବା ବୋହୂ ପ୍ରତି ଶାଶୁଘର ଲୋକଙ୍କର ବିଦ୍ରୂପୋକ୍ତି]

୨୪ । ଗହମ ଖାଇଲା ପୋକ ; କାହୁଁ ଅସିଥିଲା ମାହାନ୍ତି ରଙ୍କ, ଘରଯାକ ପାନପିକ ! (କାହୁଁ ଆସିଥିଲା ହୁଣ୍ଡା ରସିକ, ମୁହଁଯାକ ପାନପିକ) । [ଢଗ]

୨୫ । ଗହମ ଗୋଟି ଗଣିତା, ରୁନ୍ଦି ବେରଉଛୁ କିଏ ? (ରୁଟିରେ ପୁଣି ମେଘ ମରୁଛୁ ! )
[କୃପଣ ବ୍ୟକ୍ତି ପ୍ରତି ବ୍ୟଂଗ]

୨୬ । ଗହ୍ମମ ନଦ, ଘୈର କାଟିନେଲା ହାତରୁ ବଦ । [ବ୍ୟଂଗ]

୨୭ । ଗହ୍ମମ ଶୁଖେଇ ଦେଲ ; ମନ ଦୁଖରେ (ବରସରେ) ନ କହ୍ଲୁ କଥା, କୋଉଁ ଦୋଷ ଲରଥେଲ ? [ଅଭିମାନ]

୨୮ । ଗହ୍ମଗ୍ମ ବଲର ମଉଁଷି, ଧାନ କେର କେର ଖାଉଛୁ ; ଓଡ଼େଇ ଦେଏ ରେ ଘାଇ ବେହ୍ନେଗ୍ମା ! ବୋହ୍ମ ବାପଘର ଯାଉଛୁ । ଡଗ]

୨୯ । ଗହ୍ମଗ୍ମ ବଲର ଢେକା ; ବଡ଼ଘର ବୋହ୍ମ (ଝିଅ) ଆସନ୍ତ ଏକା ; ଘୁଦର ଘୋଡ଼େଇ ପକା । (ଯାଉଁଲ ମଶାଲ ଦେଖା, ଯୋଡ଼ି ହୁଲହୁଲ ପକା )

[ବ୍ୟଂଗ]

୩୦ । ଗହ୍ମଗ୍ମ ବଲର ଢେକା ; ଗୋଟେଇ ଆଣିଛୁ ଆଖି ବୁଜ କର, ଗୋବରଗୋଟିଆ ଢୋକା । [ଡଗ]

୩୧ । ଗାଈ ହଜିଗଲା ଲଣ୍ଡେ ; ବୋଉଙ୍କୁ (ମାଆଙ୍କୁ) ଦେଖିଲି ଗୁଣ୍ଡି ଘୁ ଦାଣ୍ଡେ ଲେ, ମନ ହୋଇଗଲା କୁଣ୍ଡେ ; ମୋ ପ୍ରଭୁ ସେ ।

[ପୁରଲେ ବଖ ହୋଇଥିବା କନ୍ୟାର ବଡ଼ଦାଣ୍ଡରେ ଆପଣା ମାତାଙ୍କୁ ଦେଖି ଅନୁଚନ୍ତା ]

୩୨ । ଗାଁଆ କାହାର ? ନାଁ, ଧୋବା ଭଣ୍ଡାଶ ବୋଲନ୍ତ, ଆମର ଆମର । [ବ୍ୟଂଗ]

୩୩ । ଗାଁ ମାହାନ୍ତ, ନା ମାହାନ୍ତ, ମାହାନ୍ତଙ୍କ ପାଖେ ଥାଇ (ଘରେ ରହ୍ମ) ମାହାନ୍ତ, ପାଞ୍ଜିପନ ଯାକ (ବୋହ୍ମ ) ମାହାନ୍ତ । [କରଣ ସମାଜରେ ପୂର୍ବେ ପ୍ରଚଳିତ "ପୋଇଲା ରଖିବା" ପ୍ରଥାର ଫଳ; "ଗୋଲାମ"ମାନଙ୍କ ପ୍ରତି ବଦ୍ରୂପୋକ୍ତି]

୩୪ । ଗାଁ ଆମୁଣ୍ଡେ କଲି ଘର; ଗେରସ୍ତ ମୋହ୍ମର (ଅଟନ୍ତ )ପରବାସିଆଲେ, ମତେ (ନିତ) ମାଡ଼ଇ (ମାଡ଼ିଲା) ଡର । [ଡ଼ଗ]

୩୫ । ଗାଁ ଘୁରପାଖେ ବୁଲି ଅଇଲ, କେହ୍ମ (ଜଣେ) ନ ବୋଇଲା ବସ ବୋଲି ।

[ବ୍ୟଙ୍ଗ]

୩୫ । (କ) । ଗାଁ ମୁଣ୍ଡେ କଲି ଘର, ଧାଇ ପଡ଼ ହୋ ସାଇ ପଡ଼ଶା ! ମୋ ଘରେ ପଶିଛୁ (ପଲେଇଗଲା) ଘୈର । [ଡଗ]

୩୬ । ଗାଈ ଛାଡ଼ିଦଅ ଘରୁ; ବାଳଗୁଡ଼ିଦଅ ଅଣ୍ଟାକୁ ପଡ଼, ଲକ୍ଷେ ଚମ୍ପାଫୁଲ ଝଡ଼ୁ ।

[ଲମ୍ବକେଶୀ ସ୍ତ୍ରୀ ପ୍ରତି ପ୍ରେମୋକ୍ତି]

୩୭ । ଗାଈ ନାଆଁ ଦେଲ ପାଟ ; ବୋହ୍ମ ନାଆଁ ଦେଲ କୁଅଁ କବାଟ, ଓଳିଆ ସନ୍ଧରେ ବାଟ (ଫାଟ) । [ଡଗ]

୩୮ । ଗାଈ ନାଆଁ ଦେଲ ନେତ; ମୋ ଘରେ ଲାଗିଲା ନିତ ଖୁଣ୍ଟଣା (ଗଞ୍ଜଣା), ନିତ ଖାଇଲା ଛେଡ । [ଡଗ]

୩୯ । ଗାଈ ମାଇଲେ ମଲ, ଗାଈକ ମାଇଲେ ମଲ । [ବିଷମ ସମାସ୍ୟରେ ପଡ଼ିବା ଘଟଣା ସମ୍ବନ୍ଧେ ଚନ୍ତା; ବନ୍ଧଣା ଗାଈ ମତେ ମାଇଲେ ମୁଁ ମରିବି, ମୁଁ ଯେବେ ନଜକୁ ରକ୍ଷାକରିବାକୁ ଗାଈକ ମ.ରିବି ତେବେ ଗୋହତ୍ୟା ଅପରାଧ ଅର୍ଜିବି ଏବେ କରେ କଅଣ ? ]

୪୦ । ଗାଈ ସହଦେବଙ୍କର; ଷଣ୍ଢ (ଷେଣ୍ଢ) ମାହାଦେବଙ୍କର, ବଳଦ ବାପଡା (ବାପୁଡ଼ା, କାହାର ନୁହେ । (ବିଦ୍ରୂପୋକ୍ତି ଗାଈ ଓ ବୃଷଭଙ୍କ କଥା ଶାସ୍ତ୍ରରେ ମିଳେ, କିନ୍ତୁ ଅଣ୍ଡିରା ବାଛୁରିଙ୍କର ପୁଂସ୍ତ୍ୱ ନଷ୍ଟ କରି(ଧରାଇ) ବଳଦ କରିବା ବିଧି ଶାସ୍ତ୍ରରେ ନାହିଁ ।

୪୧ । ଗାଈ ମାଡ଼ିଗଲା ନଡ଼ା; କାନ୍ତ ମନେ ଯେବେ କପଟ ନ ଥିଲା, କମ୍ପା କଲେ (ହେଲେ) ପାଖଛଡ଼ା । [ଅନୁଚନ୍ତା]

୪୨ । ଗାଈ ନ ବୋବାଏ ଖାଉନ୍ଦ ଚର୍ଦ୍ଧି ଖାଉନ୍ଦ ଧାଉଁଛୁ ଛନ୍ଦଣୀ ଘେନ ! [ବ୍ୟଙ୍ଗ; ଯେଉଁ ଗାଈ ଖାମିନ୍ଦର ଆଦର ନ ପାଇବାରୁ ଖାଉନ୍ଦକୁ ଦେଖିଲେ ବୋବାଳି ନ ଗ୍ରୁଡ଼େ, ତାକୁ ବାନ୍ଧିଆଣିବା ସକାଶେ ଖାଉନ୍ଦ ପଘା ଘେନ ଦଉଡ଼ିବା ନ୍ୟାୟ ।]

୪୩ । ଗାଣ୍ଡି କ (ରେ) କନା ନାହିଁ, କ ପେଟକୁ (ରେ) ଦାନା ନାହିଁ । [ଗ୍ରାସଚ୍ଛାଦନ ହୀନଲୋକର ଅନୁଚନ୍ତ ।]

୪୪ । ଗାଣ୍ଡି କ (ରେ) କନା ନାହିଁ, ତମ୍ବୁକୁ ଫରମାସ୍ ! [ବ୍ୟଙ୍ଗ; ଯାହାକୁ ଖଣ୍ଡେ ବସ୍ତ୍ର ପିନ୍ଧିବାକୁ ମିଳୁନାହିଁ ସେ ବହୁବସ୍ତ୍ର ନର୍ମିତ ତମ୍ବୁ ଫରମାସ କରୁଛି ।]

୪୫ । ଗାଣ୍ଡିରେ ଲେଙ୍ଗୁଟି (ନେଙ୍ଗୁଟି) ମୁଣ୍ଡରେ ଜଟ, ଶୋଇ ପଡ଼ୁଥାଏ ନଟ ନଟ ! (ବ୍ୟଙ୍ଗ)

୪୬ । ଗାଣ୍ଡି ଲଙ୍ଗଳା (ନଙ୍ଗଳା) ମୁଣ୍ଡରେ ଫୁଲ୍, ସ୍ୱଳ ଯାଉଥାଏ ଦୁଲ୍ ଦୁଲ୍ । (ବ୍ୟଙ୍ଗ)

୪୭ । ଗାଲ ଚିପିଲେ (ତୋଡ଼ିଲେ) ବଚନ ବାହାରିବାକୁ (ବାହାରିବ) ନାହିଁ ।

[ବାଳକ ପ୍ରତି ବୟସ୍କର କ୍ରୋଧ ବଚନ]

୪୮ । ଗାଲ ଚିପିଲେ ଜନମ ଦୁଧ ବାହାରିବ । (ବାଳକ ପ୍ରତି ବୟସ୍କର କ୍ରୋଧ ବଚନ ।)

୪୯ । ଗିଲ କୁଞ୍ଚ ଲୁଗା ପିନ୍ଧିଛୁ, ପାଚେଲି କାନ୍ଧରେ ପକେଇ, ଝୁମୁକ କଠଉ ମାଡ଼ୁଛୁ । [ରସିକ ଲୋକ ପ୍ରତି ବ୍ୟଂଗ ।]

୫୦ । ଗୀତକୁ ରସୁ (ରସେ), ଗୀତ ମାଗି ନେଇ ସ୍ଥଳ (ଅଣ୍ଟା)ରେ ଖୋସୁ (ଖୋସେ) । [ବ୍ୟଙ୍ଗ]

୫୧ । ଗୁଆଗିଆ ଘର ପୁଅଟାଏ ! ବରଷକେ କଣେ ଗୁଆଟାଏ ! ଖାଇ ଖାଇ ରହେ ଅଧୁଆଟାଏ ! [ବ୍ୟଙ୍ଗ]

୫୨ । ଗୁଡ଼ କିଣିଥିଲି ଅଢ଼େଇଏ; ପୁଅ ବାହା (ବିଭା) କଲି, ଝିଅ (ଝିଅ) ବାହା (ବିଭା) କଲି, ପୁଣି ରହିଗଲା ଅଢ଼େଇଏ ! କିଣିଥିଲି ଯେଉଁ ପିଠାମାନ, ଟଙ୍କା ଅଧୁଲିରୁ ପାନ ପାନ; ବରଜାତ ଖାଇ ସନ୍ତୋଷ ହୋଇଲେ, ପୁଣି ଖୋଜୁଥାନ୍ତି ସେହିମାନ । [ବ୍ୟଙ୍ଗ]

୫୩ । ଗୁଡ଼ ଗଣ୍ଡାକର କୋଚଲାଟାଏ, ମରିବାକୁ କାହିଁ ମୁଁ ଚଳିଲାଟାଏ । [ଆତ୍ମଘାତୀର ଧମକାଣ]

୫୪ । ଗୁଡ଼ିଆ ଘରର ମୁଢ଼ି; ଖୁଡ଼ୀକି ମାଗିଲି ବସୁଣୁଟିଏ ଲେ, ଖୁଡ଼ୀ ଦେଲା ମୁହଁ ମୋଡ଼ି; ମୋ ପ୍ରଭୁ ସେ । [ବିବାହିତ କନ୍ୟାର ଖୁଡ଼ୀ ପ୍ରତି ଅଭିମାନ]

୫୫ । ଗୁଡ଼ିଆ ଘରର ଗୁଡ଼, ନ ଦେଲେ ନ ଦେବ କାଦ ମାଲକ ହେ, ମୁହଁ କାହିଁପାଇଁ ମୋଡ଼ । [ଢଗ]

୫୬ । ଗୁଡ଼ୁ ଗୁଡ଼ୁ (ଗୁଡ଼ୁ ଗୁଡ଼ୁ) ଘୁଟ ! ମଦାତ୍ ଖାଇବା ଲୋକ ଅଫିମ ଧୂଆଁ ଟାଣିବା ସମୟର ଅନୁକରଣୋକ୍ତି । [ବ୍ୟଙ୍ଗ]

୫୭ । ଗୁଣ ସୁନ୍ଦର ବୋଲି ଘୋଳ ପିଇବ କି ? (ମୁଣ୍ଡେ ନାଇବ କି ?) ରୂପ ସୁନ୍ଦର ବୋଲି ପାଣି ଶୋଇବ କି ? (ଘୁଷି ଖାଇବ କି ?) [ବ୍ୟଙ୍ଗ]

୫୮ । ଗୁଣ ଗାଉଥିବ, ଅଖା ଧୋଉଥିବ । [ବ୍ୟଙ୍ଗ]

୫୯ । ଗୁରଣ୍ଡ (ଗେରଣ୍ଡ) ବାପୁଡ଼ା ମାଇଗୁଲିଆ, ମାଇପ ଟାଣରେ ହୁଏ ହାଲିଆ । [ବ୍ୟଙ୍ଗ; ହାସ୍ୟତରଙ୍ଗ]

୬୦ । ଗୁଣସାଗର ! ଗୁଣ ରଖି (ଗୁଞ୍ଜି) ଗଲା (ଗଲ) ଅଖା ଭିତର; ଅଖା ଧୋଉଥିବ, ଗୁଣ ଗାଉଥିବ । [ଢଗ]

୬୧ । ଗୁଣ ସାଗର; ମାଆ ଧାନକୁଟୀ, ପୁଅ ନାଗର । [ବ୍ୟଙ୍ଗ]

୬୨ । ଗୁଣା ବଘଣି (ବୃସୁଣୀ); ଘଇତା ଯାଇଛୁ (ଧାଇଁଛୁ) ଗୁଣିଆ (ବଣିଆ) ଆଣି । [ଢଗ]

୬୩ । ଗୁଣି କି ଗୁଣି ଚହ୍ନେ, ଧୂଆଁ ପତରକୁ ମୁଣି ଚହ୍ନେ, ପୁରୁଣା ଙ୍କେରକୁ ଚଉକଣା ଚହ୍ନେ । [ଢଗ]

୬୪ । ଗୁଣୀ ଚହ୍ନେ ଗୁଣୀ; ଗଞ୍ଜେଇ ଚହ୍ନେ ମୁଣି । [ଢଗ]

୬୫ । ଗୁଲୁ ବାପ, ପୁରୁଷ ପୁଅର ଗୁଡ଼ ଆଶା ଘଡ଼େ ଦୟା କର ମାଳତୀ; ମଣ୍ଡ ହଜିଗଲେ ସଯାରୁ କି ନବୁ, କାଳେ କାଳେ ଥିବ ପୀରତି (କୀରତି) । [ଢଗ]

୬୬ । (ମୁଁ) ଗୁହାରି କରିବି ଯାହାକୁ, (ସେ) ଗେରସ୍ତି (ଘଇତା) କରିଛୁ ତାହାକୁ । [ବ୍ୟଙ୍ଗ]

୬୭ । (ସେ) ଗେଟେଇ ମାଦଳ ପଶ ହୋଇଛୁ ।
(ବ୍ୟଙ୍ଗ; ସ୍ଥୂଳକାୟ ଅଳସୁଆ ବ୍ୟକ୍ତି ପ୍ରତି ବକ୍ରୋକ୍ତି]

୬୮ । ଗେଲ କରୁ କରୁ ତେଲ ବାହାରି ଗିବଟି !

୬୯ । ଗେଲରୁ ତେଲ ବାହାରିବଟି । [ପରିହାସରୁ ବିଷମୟ ଫଳ ଫଳିବ]

୭୦ । ଗେଲ ଲଗିଛି ତତେ, ମୁଗୁବୁଡ଼ୁ ହେଲା ମତେ । [ଢଗ]

୭୧ । ଗେଲ ବହେଇଆ ତାକ; ତ ଟି କଲା ମାଢ଼ ମାରିବା ପାଇଁ, କରି ପକାଉଛୁ କାଖ (ମୁଣ୍ଡ ଝୁଙ୍ଗାରୁଛୁ, ଦେଖ) । [ବ୍ୟଙ୍ଗ]

୭୨ । ଗୋଟିଏ (ଗେଟେ) ଗୁଡ଼ୁଲକୁ ଫାଳେ ବରି; ସାତ ଗିଲା କରି ଚୂରି ଚୂରି; ଅଧେ କଲି ଘରୁ ଚକୁଳି, ଅଧେ କଲି ପୂଳି; ଅଧେ ଦେଲି ପୁଅକୁ, ଅଧେ ଦେଲି ଝିଅ-ବୋହୂଙ୍କୁ; ଆଲୋ ବୋହୂଏ ! କାହିଁକି ହସ ? ଖାଇ ନ ପାରିଲେ ଗୁଳରେ ଖୋସ ! [ପରିହାସ]

୭୩ । ଟୋଟିଏ ଉପରେ ଗୋଟିଏ ବସେ, ଗୋଟିଏ ମାଳି ଜପି ଜପି ଅଛେ; ତିନି ଜଣ ଯାକ ହୋଇଲେ ଭୁଣ୍ଡ, ତିନିଜଣଙ୍କର ଦଶୋଟି (ଦଶ) ମୁଣ୍ଡ; ତିନି ଜଣଙ୍କର କୋଡ଼ିଏ ଆଖି, କିଏ କହିବ ଦେବ, ଦେଖିବା ଦେଖି ?

[ନିଁଦିଆ; ୧ ମହାଦେବ ଷଣ୍ଢ ଚଢ଼ି ଆସୁଥିଲେ, ବ୍ରହ୍ମା ଭେଟିଲେ; ୨ ମହାଦେବଙ୍କ କୋଳରେ ପାର୍ବତୀ ବସିଛନ୍ତି, ବ୍ରହ୍ମା ପହୁଞ୍ଚିଲେ; ୩ ଅନନ୍ତଶାୟୀ ବିଷ୍ଣୁଙ୍କ ନାଭିକମଳରେ ବସିଥିବା ବ୍ରହ୍ମାଙ୍କୁ ଦେଖିବାକୁ ମହାଦେବ ଆସିଲେ]

୭୪ । ଗୋଇଠା ମାଡ଼କୁ ନାହିଁ ପରେଇ, ଅଇଁଠା ପତର ଗୁଣ୍ଡୁଛି ଯାଇଁ । [ବ୍ୟଙ୍ଗ]

୭୫ । ଗୋଟିଏ (ଜଣେ) ଶୋଇଛି, ଗୋଟିଏ (ଜଣେ) ବସିଛି, ଗୋଟିଏ (ଜଣେ) ମାଳି ଜପି ଜପି ଅଛୁଛି; ତିନିଜଣ ଯାକ ହୋଇଲେ ଭୁଣ୍ଡ, ଏ ତିନିଙ୍କର ପନ୍ଦର ମୁଣ୍ଡ; ତିନିଜଣଙ୍କର ତିରିଶି ଆଖି, କିଏ କହିବ ଦେବ ଦେଖିବା ଦେଖି ? [ନିଁଦିଆ; ୧ ମହାଦେବ ଶୋଇଛନ୍ତି, କାର୍ତ୍ତିକେୟ ବସିଛନ୍ତି, ବ୍ରହ୍ମା ପହଞ୍ଚିଲେ; ୨ କୁମ୍ଭକର୍ଣ୍ଣ ଶୋଇଛି, ରାବଣ ବସିଛି, ବ୍ରହ୍ମା ପହଞ୍ଚିଲେ ।]

୭୬ । ଗୋଟିଏ ଗଣ୍ଡି, ଖୋଜିଲେ ବେଳକୁ ଅନନ୍ତ ଖଣ୍ଡି । [ବ୍ୟଙ୍ଗ]

୭୭ । ଗୋଟିଏ ଦାଉଟି ବଜେଇ ଦେବ, ପୁଞ୍ଜିଏ (ଗଣ୍ଡିଏ) ଛଅଟି ଝଡ଼େଇ (ଝଡ଼େଇ) ଦେବ । [ଗୁପୁଡ଼ା ବା ମୁଥ ମାରି, ଦାନ୍ତ ଝଡ଼ାଇ ଦେବା ସମ୍ବନ୍ଧେ ବ୍ୟଙ୍ଗ]

୭୮ । (ସେ, ଏ) ଗୋଟିକ ଯାକ ତୁଳସୀ (ତୁଳସୀ ମାଳି) । [ବ୍ୟଙ୍ଗ; ପୁରୁଷୋତ୍ତମରେ ମାଳାକାର (ମାଳକଟା) ମାନେ ଯାତ୍ରୀମାନଙ୍କୁ ବିକିବା ମାଳାମାନ ତୁଳସୀକାଠର

ନ ଥାଇ ଅନ୍ୟ କାଠରେ ତିଆରି ହୋଇଥାଏ; କେବଳ ମେରୁ ମାଳିଟି ତୁଳସୀ-କାଠର; ମାଳାକାରମାନେ ସେହି ମେରୁ ମାଳିଟିକୁ ହାତରେ ଧରି କହନ୍ତି, "ମୁଁ ମଳଚଙ୍କ ଆଡ଼କୁ ହାତ ବଢ଼େଇ ନାହୁଁ, ଏ ଗୋଟିକ ଯାକ ତୁଳସୀ।" ମାଳିକଣ୍ଠୀ କହେ, ମେରୁ ମାଳିଟି ମାତ୍ର ତୁଳସୀକାଠର; କେତା ବୁଝେ, ଏ ସମୁଦାୟ ମାଳାଟି ତୁଳସୀକାଠର; ସେ ବାହାରେ ଭଲ ପଣିଆ ଦେଖାଇ ହୁଏ; କିନ୍ତୁ ଅନ୍ତଃକପଟୀ ତ ପ୍ରତି ଏ ଉକ୍ତି ପ୍ରଯୁଜ୍ୟ]

୭୯ । ଗୋଟେଇ ଆଣିଲି ଝଡ଼ (ପଡ଼ା, ଗଡ଼ୁ) ଥିଲି, ଛୁଟେଇ ଆଣିଲି ଝୁଲୁ (ହଲୁ) ଥିଲି । [ଅନ୍ୟର ଗଛରୁ ଫଳ ଚୋରି କରିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୮୦ । ଗୋଡ଼ ମୁଣ୍ଡ ଅଗୁଆଳ; କଥାଏ ଦି କଥା କହୁ ଦଅନ୍ତି, ସାଙ୍ଗେ ସାଙ୍ଗେ ଜଗୁଆଳି । [ଢଗ]

୮୧ । ଗୋଦର ଗୋଡ଼କୁ ହଲେଇ ପକା, (ଦେ ହଲେଇ); ହାଁରୁ ବାଇଗଣ ଚଲେଇ ପକା (ଦେ ଚଲେଇ) । [ବ୍ୟଙ୍ଗ]

୮୨ । ଗୋଦର [ଗୋଦରି] ଗୋଡ଼ରେ ଅଳ୍ପ ମାଡ଼ବି (ବାଡ଼ବି) [ବିଦ୍ରୂପ]

୮୩ । ଗୋଦରି (ଗୋଦରୀ) ଗୋଡ଼ରେ ଅଳ୍ପ ପଶିବା, ଗୋଦରି (ଗୋଦରୀ) କହିଲ (ବୋଇଲା) ପୋଡ଼ି ଖାଇବା । [ଗୋଦର ଯୁକ୍ତ ଦମ୍ପତିଙ୍କ ପ୍ରତି ବିଦ୍ରୂପ]

୮୪ । ଗୋଦରି ଲୋ ! ତଳକୁ ଅନା, (ଚାହାଁ) ! (ତଳକୁ ଚାହିଁ କଥା କହ) । [ଉପାଣି]

୮୫ । ଗୋଦରି ଗୋଡ଼ରେ ବଳା, ତାକୁ ହଲେଇ ହଲେଇ ଚଲା, (ଚାଲିକି ଘୁଞ୍ଚି ଘଲା) । [ଗୋଦରି ପ୍ରତି ବିଦ୍ରୂପୋକ୍ତି]

୮୬ । ଗୋଦରି କହେ କାଳୀ ଲୋ ! ତୁ କାହାର ବାଳୀ ଲୋ । [ପରିହାସ]

୮୭ । ଗୋଦରି ଗୋଡ଼ରେ ପାହୁଡ଼, ପାଦ ଚାହିଁ ଚାହିଁ ଦଉଡ଼ । (ପାଦକୁ ବୁଲେଇ ଦଉଡ଼) । [ବ୍ୟଙ୍ଗ]

୮୮ । ଗୋପାଳ ! ଘୋଡ଼ା ଗୁହାଳ ପୋଛୁ ପୋଛୁ ପୋଡ଼ି ଯାଉ (ଗଲା) ତୋ କପାଳ । [ଗୋପାଳ ନାମକ ବାଳକକୁ ସଙ୍ଗୀମାନେ ଚିଡ଼ାଇବା ପଦ]

୮୯ । ଗୋବର ଗାଡ଼ିଆ ପଙ୍କ; ଆଉ ଷୁରଦନ ରହନ୍ତୁ ହିଁଅ, ଲୋ । ଲଗାନ୍ତି ମୁଁ ଯୋଡ଼ା ଶଙ୍ଖ । [ଢଗ]

୯୦ । ଗୋବର ଗାଡ଼ିଆ ଦହି; ଆଉ ଷୁରଦନ ରହନ୍ତୁ ହିଁଅ (ବୋହୂ) ଲୋ । ପୁଅକୁ (କୋଉଁ କି) ବୁଝେଇ କହ । [ଢଗ]

୯୧ । ଗୋବର ଗାଢଆ କଉ, ଆମେ ଦ ଭଉଣୀ (ଝିଅପାକ) ଖେଳୁଛୁଁ ପୁଚ, ଝିଅ ମରୁଅଛୁ ବୋହୂ । [ଝିଅମାନେ ପୁଚ ଖେଳିବା ଗୀତ]

୯୨ । ଗୋବଗ୍ର ନନା ! ପାଠ ସାଠ ଗୁଡ଼ (ପଢି) ସିଖିଛୁ (ଦେଖିଛୁ) ଦନା । [ପୁରୋହିତ ବ୍ରାହ୍ମଣଙ୍କୁ ବ୍ୟଙ୍ଗ]

୯୩ । ଗୋବଗ୍ର ନନା ! ନାକ କାନ୍ଦିଗଲା ପଇଲୁ ଅନା । [ବ୍ରାହ୍ମଣ ଗୋହାଳିଙ୍କୁ ବିଦ୍ରୁପୋକ୍ତି]

୯୪ । ଗୋବ୍ରଦା ମୁଣ୍ଡା ! ଘମଗ୍ରଙ୍କ ଘରେ (ଘରେ ଘରେ ପଶି) କାଟୁଛୁ ଖୋଣ୍ଡା (କେତେ ଖାଉଅଛୁ ଟାଙ୍ଗିଆ ପଣା, ଗୁଡ ସାକ ଆଖି ନୋହୁଛୁ କଷା) ।
[ଲମ୍ପଟ ସମ୍ବନ୍ଧେ ବ୍ୟଙ୍ଗ]

୯୫ । ଗୋଷ୍ଠ ପଗ୍ରରେ କାଲୀ ଲେ ! ତୁ କାହାର ବାଳୀ ଲେ ! [ଢଗ]

୯୬ । ଗୋଷ୍ଠ କାଳୀ ଦହେଁ (ଦୁହେଁ) ଗାଧୋ (ଧୋ)ଇ ଗଲେ, ଭୁଙ୍ଗିଲେ ଗଙ୍ଗେଇ ଜ଼ଲ୍; ଗୋଷ୍ଠ ପଗ୍ରରଇ କାଲୀ ଲେ ! ବନ୍ଧୁଥିବା ତନ (କେତେ) କାଲ୍ ? (କାଳୀ କହୁଚି ଗୋଷ୍ଠିଲୋ ! ଅନେକ ପୂରୁବ କାଳ) ? [ଢ଼ଗ]

୯୭ । ଗୋଷ୍ଠ(ରୁ) ଚନା (ଗୋରଚନା) ଟୋପାଟାଏ, ସ୍ତ୍ରୀକୁ ନ ବୋଲ ଟୋକାଟାଏ ।
[ଗୋରଚନା ଟୋପା ମାରିଥିବା ଯୁବକ ପ୍ରତି ବ୍ୟଙ୍ଗ]

୯୮ । ଗୋରୁ ଲଙ୍ଗୁଡ଼; ଗୋଷ୍ଠ ଆସିଲେଣି କାଲୀକ ତଡ଼ । [ଢଗ]

୯୯ । ଗୋରୁକୁ ମାଇଲ ଗୁଟେ, ଗହମ ବିଲରେ ଘସି ପାରୁ ଥେଲ, ଗୁଲ ଗଲୁ ସେଣ୍ଟ ବାଟେ [ଢ଼ଗ] ।

୧୦୦ । ଗୋହେଇଁ ଓଲକ ! ନାଁ, ତୋ ମନ ତୋତେ ଫଳୁ (କଦାପ୍ରବାଦ) । [ବ୍ୟଙ୍ଗ]

୧୦୧ । ଗୋହେଇଁ (ନନା) ଗଲେ ଫାନ୍ଦିକ, ମେଖ ଆଣିଲେ ଗାଣ୍ଡିକ ।
[ଆପଣା ଉପରକୁ ବିପଦ ଆଣିବା ବ୍ୟକ୍ତି ସମ୍ବନ୍ଧେ ବ୍ୟଙ୍ଗ]

୧୦୨ । ଗୋହେଇଁଖାଇ; କଡ ପର ବାଡ଼ ଡେଇଁ ।
[ଆପଣା କ୍ଷେତକୁ ଖାଇଥିବା ଅନ୍ୟ ଗାଈକୁ ଗାଳି]



## ( ଘ )

୧ । ଘଇତାଙ୍କର ବାଆନ ଗଣ୍ଡା (କାହାଣ) ଋଣ; ମାଇପ କହୁଛନ୍ତି ଚନ୍ଦ୍ର ଉଦଅ କିଣ [ବ୍ୟଙ୍ଗ]

୨ । ଘଇତା ମାରେ ଖୁଣ୍ଟିକିମୁଣ୍ଡୀ ବୋଲି; ଦିଅର ମାରେ କୁଣ୍ଡାଭୁଷୁଣ୍ଡୀ ବୋଲି । [ସ୍ୱାମୀ ଓ ଦେବରଦ୍ୱାରା ଲାଞ୍ଛିତା ସ୍ତ୍ରୀର କାହାଣୀ]

୩ । ଘଇତା ହେବାର (କରିବାର) ଠିକ୍ ନାହିଁଟି, ଅରଟ କପା ଖାଇ ବକ୍ ନାହିଁଟି । [ଢଗ]

୪ । ଘଇତାକୁ ଦେଖେଇ ମାଇପ କାନ୍ଦେ (କାନ୍ଦଇ) ଫକେଇ ଫକେଇ । [ବ୍ୟଙ୍ଗ]

୫ । ଘଇତା ପଛକେ ମରୁ, ସଉତୁଣୀ ରାଣ୍ଡ ହଉ । [ସପତ୍ନୀଙ୍କ ବିବାଦଦ୍ୱାରା ସ୍ୱାମୀର ସର୍ବନାଶ ବାଞ୍ଛା କରିବା ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୬ । ଘଇତା ଧକ୍ ଧକ୍ ବେଳେ ମାଇପ ସିନ୍ଦୁର କଜଳ ଦିନ୍ତୁଛି ! [ବ୍ୟଙ୍ଗ]

୭ । ଘଇତା ପଣ, ଦେଖେଇ ହଉଛି ମାଡ଼ ମାରିଣ; (ହାଡ଼ ଭଙ୍ଗିଣ) । [ଗାଳି]

୮ । ଘଇତା ମାଇଲା କେବେ, ମନେ ପଡ଼ିଗଲା ଏବେ (ଦେଖେଇ ହଉଛି ଏବେ) । [ଢଗ]

୯ । ଘଇତା ମାଇଲା (ମାରଇ, ମାରିଛି) ରାଗେ; କାନ (କାଢ) ମଳକଣ୍ଡି ପକେଇ ଦଉଛି, ଦିଅର ଶଶୁର ଆଗେ । [ଢଗ]

୧୦ । ଘଇତା ହବାର ଅସୁ ନାହିଁଟି, ଶଙ୍ଖା ଫୁଲଗୁଣା କିଣୁ କାହିଁକି ? [ଢଗ]

୧୧ । ଘଇତାର ଷାଠିଏ କାହାଣ ଋଣ, ମାଇପ ବୋଲେ ମୋପାଇଁ (ପାଇଁ) ଚେଙ୍ଗୁ ପଟେ ଆଣ ! [ବ୍ୟଙ୍ଗ]

୧୨ । ଘଇତାର ମୁଁ ନାଆଁ ନ ଜାଣେ; ଗାଆଁ ଲୋକଙ୍କର ନାଆଁ ବଖାଣେ । [ସ୍ତ୍ରୀମାନେ ସ୍ୱାମୀଙ୍କ ନାମ ମୁଖରେ ଉଚ୍ଚାରଣ ନ କରିବା ସମ୍ବନ୍ଧେ ଢଗ]

୧୩ । ଘଇତା ହାଙ୍ଗରେ ଲଗିଛି (ଦାନ୍ତରୁ) କଳି; ଜିଭ ଖୋଉଥାଏ ଚକୁ (ପୁର) ଚକୁଳି, (ପିଠା ଖୋଉଥାଏ କବାଟ କିଳି) । [ବ୍ୟଙ୍ଗ]

୧୪ । ଘଣା ପେଲା, କଟା ବାହୁଥାରେ ଧନ (କାଳ ଗଲା) । [ଜେଲ ଖାନାରେ ବହୁକାଳ ଦଣ୍ଡଭୋଗ କରିଥିବା ଅପରାଧୀ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୧୫ । ଘଣ୍ଟ ନାହିଁ, କି ମାଦଳ ନାହିଁ; ଝିଙ୍କିରିଆ ଦେବତା ।

[କଟକ ଜିଲାର ହିଙ୍ଗିରିଆ ବ୍ରହ୍ମପୁର ଗ୍ରାମବାସୀ 'ଦେବତା' ଉପାଧିଧାରୀ ବ୍ରାହ୍ମଣମାନଙ୍କ ପ୍ରତି ବ୍ୟଙ୍ଗ]

୧୬ । ଘଣ୍ଟି ଘାଗୁଡ଼ି ଝୁଣୁ ଝୁଣୁ, ବାଟ ଚାଲୁଥାଏ ରୁଣୁ ଝୁଣୁ ।
[ନେପୁରଧାରଣୀ ସ୍ତ୍ରୀ ଲୋକ ପ୍ରତି ଢଗ]

୧୭ । (ସେ ମୋ) ଘର ଅଟ୍ଟ କୋଣରେ ଅଛି । [ବ୍ୟଙ୍ଗୋକ୍ତି; ଅର୍ଥାତ୍ ଶଳା]

୧୮ । ଘର ଓଟଳେଇଲି ଝାଙ୍କେ, ପିଢ଼ା ପକେଇଲି ବାଙ୍କେ; କଞ୍ଚନ ଥାଳରେ ଭାତ ବାଢ଼ିଦେଲି, ଖାଇ ଦଅ କଉଡ଼ିକେ । [ଢଗ]

୧୯ । ଘର କରଣ (କଲା) ବୁଦ୍ଧି ଯାହାକୁ ଦଶେ (ଆସେ), ଗୁଳ ଲଣ୍ଡା (କୁଣ୍ଡା) ଅଣି ଚୁଲରେ ଖୋସେ [ବ୍ୟଙ୍ଗ] ।

୨୦ । ଘର କଳ (କରଣ) ବୁଦ୍ଧି ଯାହାକୁ ଦଶେ, ପିଚ୍ଛରୁ ଲୁଗା ଟେକା ଦେଇ ବସେ (ଘରେ ଭାତ ହେଲାରୁ ନଡ଼ା ରୁନ୍ଧେ) । [ବ୍ୟଙ୍ଗ]

୨୧ । ଘର କାଠ ଉଇ ଖାଉଛି, କାଉଁରିଆ କାଠ କଟା ହଉଛି । [ବ୍ୟଙ୍ଗ]

୨୨ । ଘର ମଇତା ଚୁଷ୍ଣ ଖାଏ, ଫାଳିଆ ଦନ୍ଧ ଲେଉଥାଏ ! [ବ୍ୟଙ୍ଗ]

୨୩ । ଘର ଘର (ଘରେ ଘରେ) ଠାକୁର ବାଡ଼ି । [ବ୍ୟଙ୍ଗ]

୨୪ । ଘର ଚାରି ବଖରା (ପାଖ) ବୁଲି ଅଇଲି ଲୋ, ମଝି ଅଗଣାରେ କୁଅ; କୁଅକୁ ଚାହିଁଣ ବାଳ ଚରନ୍ତ ଲୋ, ଶାଶୁଙ୍କ ମଝିଆଁ ପୁଅ ।
[ନବାଗତ ବଧୂର ଦିଅରଙ୍କ ସମ୍ବନ୍ଧେ ଅନୁଚିନ୍ତା]

୨୫ । (ତାର) ଘର ଜୁଆଣି ନ ଘର ଜୁଆଣି ଜୁଡ଼କିଆ ।
[ବୋହୂ ପ୍ରଦବନୀ ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୨୬ । ଘର ଜୁଆଣିଆ କୁଣ୍ଡା; ଯାଆନ୍ତ ବଚନ ଏଡ଼କି ମିଠା, ଅଗାଧୂଆ ଚୂଡ଼ାକୁଟା, (ଝିଅବେଳେ ଧାନକୁଟା) । [ଢଗ]

୨୭ । ଘର ଦୁଆର ସବୁ ତୋର, କାନ୍ଥରେ ହାତ ନ ଦବୁ ମୋର ! [ବ୍ୟଙ୍ଗ]

୨୮ । ଘର ସଛକେ ପୋଡ଼ି ଯାଉ, ଓଡ଼ଗ (ମୂଷା) ମରନ୍ତୁ ! [ବ୍ୟଙ୍ଗ]

୨୯ । ଘର ପୋଡ଼ି ଯାଉ ପଛେ ମୂଷା (ମଗା) ପାଆନ୍ତୁ (ପାଇଲେ) କେଞ୍ଚେ । [ବ୍ୟଙ୍ଗ ଅଳ୍ପ ଲାଭ ପାଇଁ ବିଶେଷ କ୍ଷତିର ବାଞ୍ଛା କରିବ ।]

୩୦ । ଘର ଭୁଞ୍ଜ ପାଣି ଆଣ୍ଠୁଏ (ଅଣ୍ଟିଏ) ହେଲାଣି, କାଲି (କଣା) ବୋଲେ (କହେ) ମେଘ ଦୁଲୁକୁଛି ! (ପୁଅଙ୍କର ପିକାଖିଆ ଛୁଡ଼ ଯାଉ ନାହିଁ) । [ବ୍ୟଙ୍ଗ]

୩୧ । ଘର ହାଉ (କରୁ) ଥିଲେ କଳା ହାଉ (କଗୁ) ଥାଏ (ଥାଇ), ପଡ଼ୁଥାଏ ପଦେ ପଦେ; ଯାହା ତ କହିବା, ଯେସାରେ ରହିବା, କୋଉଧେ କପାଳି ବୁଢେ ? [ଢଗ]

୩୨ । ଘର ଭଣ ଭଣ ଦୁଆରେ ତାଟି, ସାହୁ (ଦାଣ୍ଡ, ଗାଆଁ) ପଦୁଆର ବୋହୂ (ଝିଅ) ଦଉଟି (ଦୋଅଁଟି) । [ବ୍ୟଙ୍ଗ; ଗରିବ ଲୋକ ଘରେ ଯୁବତୀ କନ୍ୟା ବା ବଧୂ]

୩୩ । ଘର ଉପରେ ଘର; ସୁନା ଖମ୍ବ ପର ଚନ୍ଦ୍ରଅର, ଚନ୍ଦ୍ରଉଦଆ ବର । [ଢଗ]

୩୪ । ଘର ଭିତରେ (ଘରପାଖେ) ଘରଟା କଣ; ନାଇଁ ପଡ଼ିକର ଗଣ । [ବ୍ୟଙ୍ଗ]

୩୫ । ଘର ଉପରେ ଘର; ତୂଆ ମେଥି ଗୁଣ୍ଡୀ ହଳଦୀ ବାସନା, ମହକୁଛି ନେପୁର । [ବ୍ୟଙ୍ଗ]

୩୬ । ଘରର ଛଣ ତଳେ ଖୋଳୁଥିଲେ (ବନ୍ତ) ଗୁମ୍ଫାରଣ । [ଢଗ]

୩୭ । ଘର ସଣ ସଣ ବାହାରେ ଝୋଟି, ସାହୁ ପଢଆର ବୋହୂ (ଝିଅ) ଦଉଟି (ଦୋଅଟି) [ବ୍ୟଙ୍ଗ]

୩୮ । ଘର ହୋଇଛି ଗ୍ରନ୍ଥ ପାଠ (ପାଠ); ବିଲ ହୋଇଛି ପାଣି ଘାଟ, ବାଇଲ ହୋଇଛି ଘାସ କାଟ; ମଣିଷ ହୋଇଛି ହାଟ ପାଟ (ବାଟ) । [ବ୍ୟାବସାୟିକ ଗୃହସ୍ଥ ପ୍ରତି ବ୍ୟଙ୍ଗ]

୩୯ । ଘରମାଇପକୁ କୁଆ ଦାଣ୍ଡ, ପରମାଇପ ସୁନ୍ଦର ଦିଶୁଛି, (ପର ମାଇପର ଗୋଡ଼ ଘସୁଛି) ! [ପର ସ୍ତ୍ରୀ ପ୍ରତି ଅନୁରକ୍ତ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୪୦ । ଘରୁ ଗୋଡ଼ କାଢ଼ିଲରୁ ଲଗିଲା (ଲଗିବ) ଜାତ (ନାଟ, ତାଣ୍ଡବ) । [ଗୃହସ୍ଥର ଅନୁପସ୍ଥିତିରେ ପରିବାରରେ କଳହ ହେବା ସମ୍ବନ୍ଧେ ଶୋଚନା]

୪୧ । ଘରେ ଗୀରିଷମ, ପଦାରେ (ବାହାରେ) ମଶା । [ଗରିବ ଗୃହସ୍ଥର ଗ୍ରୀଷ୍ମକାଳୀନ ଜୀବନ ଚିତ୍ର]

୪୨ । ଘରେ ଗୋଡ଼ ଦେଲାରୁ ଲକ୍ଷ୍ମୀ ମଡ଼ିଗଲେ । [ସୁଲକ୍ଷଣୀ ସ୍ତ୍ରୀର ପ୍ରଶଂସା]

୪୩ । ଘରେ ନ ଥାଏ ମଦରଙ୍ଗା ମାଛ, ଗାଆଁସାକ ମୋର ଝୁଣ୍ଡିଚୂଡ଼ା (ମଉଳା) ଶୁର ! [ବ୍ୟଙ୍ଗ]

୪୪ । ଘରେ ନ ଥାଏ ଲେମ୍ବୁ କନ୍ଦ, ବାହାରେ ଦେଖ ଗୃହର ପଣ । [ବ୍ୟଙ୍ଗ]

୪୫ । ଘରେ ନ ପାଏ ତୋରଣିରେ ଲୁଣ, ପରଘରେ ଲୋଡ଼େ (ଖୋଜେ) ତିନି ତଉଣ (ତିଅଣ) । [ବ୍ୟଙ୍ଗ]

୪୬ । ଘରେ ନ ଥାଏ କିଛି; ପାଳ (କୁଟା) ଗଦାକୁ ବୁଢ଼ି ବୋଲୁଥାଏ, ଧାନ ଟାଏ ଟାଏ ଅଛି । [ବ୍ୟଙ୍ଗ]

୪୭ । ଘରେ ନ ଥାଏ ଭୃଙ୍ଗୁ ଭୂଜା, ଦେବତା କରୁଥାଏ ଦୁର୍ଗା (ଦୁରୁଗା) ପୂଜା [ବ୍ୟଙ୍ଗ]

୪୮ । ଘରେ ନାହିଁ କ , ପୁଅ ହୁଏ ବାବୁ; ଧାନ ଗଦାରେ କିଛି ନାହିଁ, କାଆର ଭିତରେ ଧରୁ ! [ଢଗ]

୪୯ । ଘରେ ଲୁଣ ନାହିଁ ଦେଖୁ, ପିଣ୍ଡାରେ (ଗୃହରେ) କୁଆ ବସେଇ ଦଉ ନାହିଁ ! [ବ୍ୟଙ୍ଗ]

୫୦ । ଘରେ ବରଡ଼ା ଡାଟି, ଅଣ୍ଟାରେ ଗୃହକାଠି ! [ବ୍ୟଙ୍ଗ]

୫୧ । ଘରେ ବାସ୍ତୁଗଚ୍ଛେଇ ବନ୍ଧା, ମୁଣ୍ଡରେ ରାମତହଲିଆ ଖୋସା ! [ବ୍ୟଙ୍ଗ]

୫୨ । ଘରେ ଶୋଇଥିଲେ ବାହାରେ ମୁଣ୍ଡ । [ଦୁଃଖୀର ଶୋଚନା]

୫୩ । ଘାଏ ଘାଏ ମାରୁଆ (ଥିବ), ମୁହଁ ମାଡ଼ ଚଢ଼ିଆ (ଥିବ) । [ନାଦଆ; ଢିଙ୍କି]

୫୪ । ଘାଏ ଘାଏ ଲଗୁଛି ତତେ, ଯୁବୁବୁଡ଼ି ହେଲଣି ମତେ । [ବ୍ୟଙ୍ଗ]

୫୫ । ଘିଅ ମୁଣ୍ଡ; ମହକୁଛି ଗାଁ ଡିନଖଣ୍ଡ (ବାସ ଚହଟୁଛି ମହିଦାଣ୍ଡ) । [ଯେଉଁ ବ୍ୟକ୍ତିମାନେ ମୁଣ୍ଡରେ ଘିଅ ଲଗାନ୍ତି, ସେମାନଙ୍କ ମୁଣ୍ଡର ଦୁର୍ଗନ୍ଧ ପ୍ରତି ବ୍ୟଙ୍ଗ]

୫୬ । ଘିଅଛିଆଘର ପୁଅ (ପୋ ! ପେଜ ପାଣି ପିଇ ଶୁଅ (ଶୋ) । [ବ୍ୟଙ୍ଗ]

୫୭ । ଘିଅ (ଘିଇ) ପିଠା, ଘିଅ (ଘିଇ) ପିଠା ପାଇଁ ଡାକ୍ତନକଣ୍ଟା (ଦାନ୍ତେରକୁଟା) । [ଢଗ]

୫୮ । ଘିଅ ସରସର ଗୁଡ଼ ହରହର ଫୁଲୁଥାଏ ଏର ବଡ଼ା, ତୁଚ୍ଛା ପଲମରେ ଫୁଲ ମରୁଥାଏ ନଳଠା ଚଉଉଫଡା । [ଢଗ]

୫୯ । ଘୁଘୁ ଦେଖିଛୁ, ଫାନ୍ଦ ଦେଖି ନାହିଁ । [ବଙ୍ଗଳା ଢଗର ଅନୁବାଦ, ବାହାରର ଚାକଚକ୍ୟ ଦେଖିଛୁ, କିନ୍ତୁ ଭିତରର ଦୁଃଖ ଜାଣି ନାହିଁ]

୬୦ । ଘୃତ ଘନ୍ତ୍ରଙ୍କ ମଧ୍ୟରେ ଶିକାଙ୍କ ଉପରେ ଅଛନ୍ତି । [ଅସ୍ଥାନରେ ସାଧୁଭାଷା ବ୍ୟବହାରକାରୀ ମାନଙ୍କ ପ୍ରତି ବ୍ୟଙ୍ଗ]

୬୧ । ଘୋର ପଡ଼ୁଛି, ଘୋର ଭିତରେ (ଭିତରେ ଭିତରେ) ନାଚ ଲଗିଛି (ଡକା ଛୁଟୁଛି, ଦଅ ଗଡୁଛି) । [ପରଦା ଅନ୍ତରାଳରେ ଜଘନ୍ୟ ବା ଶୋଚନୀୟ କାଣ୍ଡ ପ୍ରତି [ବ୍ୟଙ୍ଗ]

୬୨ । ଘୋଡ଼ାଟାଏ, ଫେଉଁ ସଗ୍ଧଟାଏ !
୬୩ । ଘୋଡାଟାକୁ ସଗ୍ଧଟାଏ ।
} ବିଷମ ଉପମା ବା ତୁଳନା ପ୍ରତି [ବ୍ୟଙ୍ଗ]

୬୪ । ଘୋମଟା ଭିତରେ ଖେମଟା ନାଚ । [ବଙ୍ଗଳା; କୁଳବଧୂ ପରି ଓଢ଼ଣା ନାକ-ସରକ ପକାଇଥିବା କିନ୍ତୁ ଏଣେ ଭିତରେ ବେଶ୍ୟାସୁଲଭ କଟାକ୍ଷାଦି କରୁଥିବା ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୬୫ । ଯୋରଣ ଜାଠି, ଯୋଷ୍ଟୀ ନାଗୀଙ୍କର ଦ୍ଵାଉଁଆ ପାଟି । [ସରସ୍ଵତୀନାମ୍ନୀ ବାଳିକାକୁ ବ୍ୟଙ୍ଗ]

୬୬ । ଯୋରଣା ଚକ, ମନେଇ ନାଗୀଟି ସାଇରେ ସଙ୍ଗୀ । [ମନେଇ ନାମକ ସୁନ୍ଦରୀ ବାଳିକା ପ୍ରତି ପରିହାସ]



## ( ଚ )

୧ । ଚଅଁର ରଙ୍ଗେଇଲା; ଦନ ଦନକର (ଅଢ଼େଇଦନଥା) ଦ୍ଵିବପୀରଥ (ବଢ଼େଇ କଥା), ଦଇବ ଭଙ୍ଗେଇଲା । [ଢଗ]

୨ । ଚଅଁର ଭଅଁର ଦଓ (ଦୁଇ)ଟି ଭାଇ, ଯେଣେ ଇଚ୍ଛା ତେଣେ ଯାଇ, (ମାଛ ମରିଗଲେ ବାଉଁଶଯାଇ) । [ଢଗ]

୩ । ଚତ୍ତଡଯୋଡା; ଗୁହ୍ଣି ଗୁହ୍ଣି (ଦେଖି ଦେଖି) ହେଲ ଦରବୁଢ଼ା ।

୪ । ଚନ୍ଦ୍ରଧୁମ୍ର ଘର ନାତୁଆ ଟୋକା, ମୁହଁଟି ସୁନ୍ଦର ଗାଲଟି ବଙ୍କା (ଚେପା) ।

୫ । ଚକୁଅଚଗା, ବ୍ରାହ୍ମଣ ନ ଥାଏ ଦେଖାଦେଖି । [କବିକଳ୍ପନା]

୬ । ଚଞ୍ଚଳା (ଚଞ୍ଚଳୀ) ହଠିଲା ଖରେ, ଗାଈଗୋରୁ ଫେରିଲେ (ଫେରଲେ) ଘରେ ! [ବିଳମ୍ବରେ ଶଯ୍ୟା ତ୍ୟାଗିନୀ ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୭ । ଚଞ୍ଚଳା (ଚଞ୍ଚଳୀ) ଗଲା, କୋଶକ ବାଟକୁ ଦଣ୍ଡନ କଲା [ବ୍ୟଙ୍ଗ]

୮ । ଚଟଇ ଅଣ୍ଟରେ ଜଣ; ବଡ଼ଘର ଦେଖି ଦେଇଛ ବାପା ହେ (ନନା ହେ), ପେଟକୁ ନ ଥାଏ (ନ ମିଳେ) ଲୁଣ; ମୋ ଦୁଃଖ ସେ । [ଗରିବଘରେ ବିବାହ ହୋଇଥିବା ବଡ଼ଲୋକଘର ଝିଅର ଅନୁତାପ]

୯ । ଚତୁରେଇ ! ବନ୍ଦ ଦେଇଥାଏ ବତୁରେଇ; ଏଣେ ତେଣେ ଗୁହ୍ଣି ଗୋଟିଏ ଗୋଟିଏ, ଟୋକା ଦଉଥାଏ ସୁନ୍ଦରେଇ । [ବ୍ୟଙ୍ଗ]

୧୦ । ଚଢ଼ଇ ସନ୍ତୁଆ ମାରଇ ନାହିଁ, ଘରେ ହଉଥାଇ କଇଁ କଇଁ । [ଢଗ]

୧୧ । ଚନ୍ଦ୍ରମାବଦନୀ ଗୁଣ; ଫୁଲ ତୋଳିବାକୁ ଶରଧା ବଳିଛି, କାହ୍ନୁକୁ ମଣ୍ଡିବା ପାଇଁ ।

୧୨ । ଚନ୍ଦା (ଚନ୍ଦା) ମୁଣ୍ଡିଆ; ଦାଅଁ ଦେବତାଙ୍କୁ ମାର ମୁଣ୍ଡିଆ । [ବ୍ୟଙ୍ଗ]

୧୩ । ଚମ୍ପେଶ୍ଵର ! ଧାଇଁ ଧାଇଁ ଗଡ଼ ଖେର; (ଖଡ଼ାପହରରେ ଗଡ଼ ଖେର, ଖଡ଼ା ଖଡ଼ା ପାଇଟି ଖେର) । [ବୃଦ୍ଧ ପୁରୁଷର ଦୁର୍ଦ୍ଦଶା]

୧୪ । ଚମ୍ପଲୁଣ୍ଠଣୀକି ଚମ ପାହାରେ, ଚମ ଭିତରେ ଚମକେଇ ମାରେ ।
[ନାଁ‌ଢିଆ; ଚକ୍ଷୁ]

୧୫ । ଚମରେ ଚମ ବାଜୁଥିଲେ ଭଲ, ଚମରେ ଚମ ନ ବାଜିଲେ ମଲ ।
[ନାଁ‌ଢିଆ; ଚକ୍ଷୁ]

୧୬ । ଚନ୍ଢେଇ । [ସ୍ତ୍ରୀଲୋକମାନଙ୍କ ଗାଳି; ଦୁଷ୍ଟ ଓ ମୁଖରା ସ୍ତ୍ରୀ]
୧୭ । ଚମ୍ପାକଢ଼ି ମାଳେ ଗଡ଼େଇଦବୁ, ଢିହକୁ ହାତ ଠୁ ବଢ଼େଇଦବୁ । [ବ୍ୟଙ୍ଗ]
୧୮ । ଚମ୍ପାଫୁଲ ପର ଝିଅ (ବୋହୂ) ଦିଓଟି । [ଢଗ]
୧୯ । ଚମ୍ପାଫୁଲ ପର ଗୋରୀ; ଚମ୍ପାଫୁଲଠାରୁ ବଳି ସୁନ୍ଦରୀ, ଦେଖି ପେଟ ଯାଏ ପୂରି ।
[ଢଗ]

୨୦ । ଚମ୍ପାଫୁଲଟିଏ ପାଇଲି ବନ ହଳଦୀ ପ୍ରାନ୍ତେ; ଶିବ ଦରଶନ କରିବି କାଲି ଆସିବା ଯାଏ । [ବରହ୍ମଣୀର ଚିନ୍ତା]

୨୧ । ଚମ୍ପେଇନଳି ! ବାଉଁଶନଟିରେ ଯାଉଛୁ ଗଳି । [ଢଗ]
୨୨ । ଚମ୍ପେଇନଳି ! ନଚ କରୁଥାଏ କାଲି କାଲି ।
[ଲୌକିକ ବିଶ୍ୱାସ; ଚମ୍ପେଇନେଉଳ ଅନ୍ୟମାନଙ୍କ ବ୍ୟକ୍ତିକୁ କାମୁଡ଼ିବାକୁ ବାହାରି କାଲି କାମୁଡ଼ିବ ବୋଲି ଆଉ କାମୁଡ଼େ ନାହିଁ ]

୨୩ । ଚମ୍ପକ ଗୋରୀ (ଚମ୍ପେକ ଗୋରୀ), ହଳଦୀ ଗରଗର (ଜରଜର) ଟାକୁଆଗାଲି ।
[ବ୍ୟଙ୍ଗ]

୨୪ । ଚରି ବୁଲି ଖାଉଆ (ପରବାଡ଼ି ବୁଲି ଖା), ମୋର ହୋଇ ପଡ଼ିଆ । [ବ୍ୟଙ୍ଗ]
୨୫ । ଚହକ ବୃନ୍ଦ ! ମାଛି ମୁଣ୍ଡ ଟା କରୁଛୁ ( କା, କରେ) ନେଞ୍ଚେ [ବ୍ୟଙ୍ଗ]
୨୬ । ଚହଟ ଚମ୍ପା ! ତଳେ ପଟଫୁଲ ଉପରେ ଝଁମ୍ପା ! (ନାହାର ସୁନ୍ଦର ଭିତର ଫମ୍ପା । [ଢଗ]

୨୭ । ଚହଟମଲ୍ଲୀ ! ଗାଁ ଚୈତ୍ରଘାଟ ବୁଲି ଅଇଲି, କେହି ନ କହିଲେ ବଢ଼ ଡୋଲ
[ଢ ]

୨୮ । ଚାଉଳ ଚକ୍‌କଡ଼, ମେଘ ଗରଜନ, ଭଲ ଧାଉଥିଲି ତୁମକୁ; କେଉଁ ନାରୀ ତୁମ ମୁହଁ ବାନ୍ଧଦେଲା କଥା ନ କହିଲ ଆମକୁ [ଢଗ]

୨୯ । ଚାଉଳ ଧୋଇ ଅଇଲି; ମୁଠି ମୁଠି କରି କୁଆ ନେଇ ଗଲେ ଲୋ, ଏ ଘରେ କିଛୁ ନୋହିଲ; ମୋ ପ୍ରଭୁ ହେ ! [ନବାଗତା ବଧୂର ଅଭିମାନ]

୩୦ । ଚାଉଳ ପଛକେ ଅଧିଆ ହଉ, ପେଜ ହଉ ବହଳିଆ; ପଇତା ପଛକେ ସୂତୁଆ ହଉ ଲୁଗା ହଉ ଡଉଁରିଆ । [ବ୍ୟଙ୍ଗ]

୩୧ । ଗ୍ବଳି ଖ୍ଜିଲି ଝାଡ଼ି; ବାଡଘର କାଳି (ଗାଁ ମୁଣ୍ଡଘର) ଡୋହର ପାଇଁ, ଦନେ ପଗୁରଲୁ (ଗୁହିଁଗଲୁ, ଶଙ୍କୁଳିଲୁ) ନାହିଁ । [ଢଗ]

୩୨ । ଗ୍ବଳ ଖ୍ଜିଲି ଝାଡ଼ି; ଦ ସବୁରୁଣୀ ଲଗିବସିଛୁ (ସଜହୋଇଛୁଁ), ଗୋସେଇଁ (ଘଇତା) ଆସିବା (ଖାଇବା) ପାଇଁ । [ବ୍ୟଙ୍ଗ]

୩୩ । ଗ୍ବଳ ପେରକୁ ଜନ ଭବତଆ, ମଣ୍ଟିରେ ବସିଛୁ ଶିଖିପଢଆ । [ବ୍ୟଙ୍ଗ]

୩୪ । ଗ୍ବକୁଣ୍ଡା ଗୋଟାରୁଟେଲ ଯାଉଛୁ, ପାନରୁ ଶିର କଢ଼ା ହଉଛୁ । [ବ୍ୟଙ୍ଗ]

୩୫ । ଗ୍ବଟୁଆ; ପଛରୁ ଗଲାକୁ କାଟୁଥା । [ମୁହଁରେ ଗ୍ବଟୁ ବଚନ, କନ୍ତୁ ପରୋକ୍ଷରେ ଅନଷ୍ଟ ଘଟାଇବା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୩୬ । ଗ୍ବପା ଉପରେ ଗ୍ବପା; କ କରେ ଅଙ୍କଣ୍ଣିର ବାପା ।

[ବଙ୍ଗଳା ବ୍ୟଙ୍ଗ; ଅତି ଭୋଜନ ସମ୍ବନ୍ଧେ]

୩୭ । ଗ୍ବର ଝିଅରେ ନପଡ଼ଇ ନାଁ (ନାଁଆଁ); ମିଛେ ବୋଲୁଥାଇ ମୋ ବାପଘର ଗାଁ (ଗାଁଆଁ) ! [ବ୍ୟଙ୍ଗ]

୩୮ । ଗ୍ବନକାନ୍ନି ପୁଅ ଦାସିଆ ଶଗଡ଼ (ଓ) ଉପରେ ବସି (ଇ)ଛୁ; ସିମ୍ପୋଲ ବଟୁଆ କାଖରେ ଯାକି, କୀର୍ତ୍ତନ କରି ଯାଉଛୁ । [ବ୍ୟଙ୍ଗ]

୩୯ । ଗ୍ବଶୟୁନରେ ଯେବେ ଧରମ ଥବ, ଶାଶୁଙ୍କ ଝିଅକୁ କଷ୍ଟେ ଭୁତ ଖାଇବ (ଚମ୍ପାର ନବ) । [ଶାଶୁଙ୍କ ଦ୍ୱାରା ଉତ୍ୟକ୍ତା ବଧୂର ଆପଣା ନଣନ୍ଦ ପ୍ରତି ଅଭିଶାପ]

୪୦ । ଗ୍ବଦୁଆ ଉପରେ ଖପ୍ପ; ଆମେ ଦଇ (ଦୁଇ) ଭାଇ ଦରଗ ତସ୍ୱ, ଭଉଣୀ ଡାଳି-ପୋହଲା । [ଢଗ]

୪୧ । ଗ୍ବଳରେ ଶୁଖେଇ ମଟା; ଏଡ଼େ ବଡ଼ ଘର ଦେଖି ଦେଇଛ ବାପା ହେ (ନନା ହେ), ଗଣେଡ ଚଡଉ ପିଟା; ମୋ ଦୁଃଖ ସେ । [ଶାଶୁଘରେ କନ୍ୟାର ଅନୁଚନ୍ତା]

୪୨ । ଗ୍ବଳ ଶୁଣ୍, ବାଡ଼ ଶୁଣ୍; କେତେ ଚୂନାକୁ କେତେ ଲୁଣ ? ଗ୍ବଳ ଶୁଣ, ବାଡ଼ ଶୁଣ ଯେତେ ଚୂନା ତେତେ ଲୁଣ, ପାଣି ଦେଇଥିବୁ ଅଢ଼େଇ ଗୁଣ; ଜାଳ ଦେଇଥିବୁ ଉଦ୍ରମେଇ କରି, ବସିଥିବୁ ଗୋଡ଼ ଲମ୍ବେଇ କରି । [ଢଗ; ପିଠା ତିଆରି ସମ୍ବନ୍ଧେ ପରିହାସାବଳୀ]

୪୩ । ଗ୍ବଳ, ନାଁ ଚୁଲ୍ଲା, ଡିଙ୍କି, ନାଁ କୁଳ । [ଯାହାର ଘରଦ୍ୱାର କିଛିମାତ୍ର ନାହିଁ]

୪୪ । ଗ୍ବଳକୁ ବାଡ଼କୁ ଅନେଇ ବକେ, ନାନାକୁବଚନ ମୁଖରେ ଭକେ ।

[ହାସ୍ୟ ତରଙ୍ଗ]

୪୫ । ଗ୍ବଳରେ ଖୋସିଲି ଦାଆ, ଏଡ଼େ ବଡ଼ ଘର ଦେଖି ଦେଇଛୁ, ବୋଉଲୋ, ଶିଙ୍ଘି ଚାଳ-ମୁହାଁ ଯାଆ; ମୋ ଦୁଃଖ ସେ । [ଶାଶୁଘରେ କନ୍ୟାର ଅନୁଚନ୍ତା]

୪୬ । ଚାଲି ଯାଉଥାଏ ସରମକୁ, କଥା କହୁଥାଏ ଭରମକୁ; ମରମ ଭିତରେ (ଭିତରେ ଭିତରେ) ଯାହା ହଉଥାଏ ସାକ୍ଷୀ ଦଉଥାଏ ଧରମକୁ । [ବ୍ୟଙ୍ଗ]

୪୭ । ଚାଲେ ଚାଲେ ଗଲା ଚାଳୁଆ ମୁଣ୍ଡା, କୁଅମୂଳେ କଲା ବସା; ବୋଉ ଦେଇ ନାହିଁ ଜୁଟିବଇ କଂସା, ବଡ଼ଦାଣ୍ଡେ ଲୋକହସା; ମୋ ଦୁଖ ସେ । [ଶ୍ୱଶୁରଘରେ କନ୍ୟାର ଅନୁଚିନ୍ତା]

୪୮ । ଚାଷୁଣୀ ଚାଣ୍ଡିଏ କହ କରନ୍ତି ! ଖରାବେଳେ ଧାନ ପୋଡ଼େଇ ପକେଇ ବର୍ଷାବେଳେ ଉବୁଜନ୍ତି । [ବ୍ୟଙ୍ଗ]

୪୯ । ଚାହୁଁକି ଚକ୍‌କଣ (ଚମ୍ପକ) ଗୋଟି ? ଚମ୍ପାଫୁଲ ଠଉଁ ବଳି (ଭାରି) ସୁନ୍ଦରୀ, ଦେଖି ପେଟ ଯାଏ ପୂରି । [ଢଗ]

୫୦ । ଚାହିଁକି ଚକା ! କାନ ସୁଲୁସୁଲୁ ନାଆଁକୁ ଦେଖା (କାନ କାଟି ତେଲ ଘଡ଼ିରେ ପକା) । [ଢଗ]

୫୧ । ଚାହିଁଥିବି (ଥିବୁ) ସିନା ଖାଇଁବି (ଖାଇଁବୁ) ନାହିଁ; ମୁରୁକ ହସାରେ ପେଟ ପୁରୁ- ଥିବ (ଥିବ) ଦନେ ଆଖିବୁଜ (ଶେଜପାରି) ଶୋଇବି ନାହିଁ ।

୫୨ । ଚକଟାମାଟି, ଜଳାକବାଟି, ବାଆ ସୁଲୁ ସୁଲୁ (ଖିଲ ଖିଲ) ବୋହୁଛି; ଘର ଛାଡ଼ି- କରି ବାହାରେ ଅସି, ପଲଙ୍କ ପକେଇ ଶୋଉଛି । [ଢଗ]

୫୩ । ଚକଟାମାଟି, ଏପରି ଆମରି କାନଟ୍ରାକ୍ଟି । [ଇଂରାଜୀ Contractor ଓଡ଼ିଆ କାନଟ୍ରାକ୍ଟି ଶବ୍ଦ ପ୍ରତି ବ୍ୟଙ୍ଗ]

୫୪ । ଚଡ଼ା କୁଟେଇଲି ହାତେ; ଯାହା ପେଇଁ କି ମୁଁ ଚଡ଼ା କୁଟେଇଲି, ସେ ଗଲା ବରଷ କେତେ (ସାତେ) । [ଢଗ]

୫୫ । ଚଣା ଦରବାରେ ନ ଲୁଚେ ଅଣ୍ଟୁ, ଧାନଯାକ ନେଇ ଭୂଇଁରେ ପୋତୁ (ଭୂଇଁରୁ ଖୁଣ୍ଟୁ) । [ବ୍ୟଙ୍ଗ]

୫୬ । ଚଉଗୁଣୀକ (ଡାହାଣୀ ଚଉଗୁଣୀକ) ନିଦ ଅଛି, ମୋ ଆଖିକି ନିଦ ନାହିଁ । [ଖେଦ ବଚନ]

୫୭ । ଚଳକୁ ବାଜ, ଚଳ ମାରିବାକୁ ଲାଗିଛି ଖଣ୍ଡ । [ଢଗ]

୫୮ । ଚୁଙ୍ଗୁଡ଼ି ଶୁଖୁଆ ପୋଇ ଖାଉଛ; କେତେ ମାନହାନ କରୁଛ ଶାଶୁଏ, ଏ ଥିବ ତୁମର ଝିଅ ନାଉଛ । [ଶାଶୁପ୍ରତି ଉକ୍ତି ବଧୂର ଅଭିଶାପ]

୫୯ । ଚୁଟୁକିକି ରଗିଗଲା, ଚୁଟୁକିରେ କାମୁଡ଼ି ଦେଲା । [ନିଆଁଦିଆ; ପିମ୍ପୁଡ଼ି]

୬୦ । ଚୁଟିଆମୂଷା; ଧାନ ଟୋକି (ଖାଇ) ଘରେ କଲୁଣି ବସା । [ବ୍ୟଙ୍ଗ]

୬୧ । ଚେଙ୍ଗ ହାବଳ; କଅଁ ପଶିଅଛୁ କବାଟ କଳ । [ବ୍ୟଙ୍ଗ]

୭୨ । ଚେତା ପଶିଲା ବେଳକୁ ଚୋର ଚଳି (ଗଲା) । [ବ୍ୟଙ୍ଗ]

୭୩ । ଚୋରଣୀଟାଏ ଦାଣ୍ଡକୁ ବୋଲାଏ ଘରଣୀଟାଏ । [ବ୍ୟଙ୍ଗ]

୭୪ । ଚୋରଣୀ ଗାଈ, ଦୁଧ ଛଣ୍ଡ ଥାଏ ବାଛୁର ପାଇଁ । [ଢଗ]

୭୫ । ଚୋର ଚୋରିକରି ଯେଉଁଠି; ଘର ପାହିଗଲା ସେଠି । [ଢଗ]

୭୬ । ଚୋର ପଳା(ଲେ)ଇଲା ଖରେ; ଗେହ୍ଲେଇ ନାନୀର ଆଳୁଆ ମାଳ (କଣ୍ଠି), ବେକରୁ ଛୁଟିଲା (ଛିଡ଼ି ପଡ଼ିଗଲା)ତଳେ । [ଢଗ]



## ( ଛ )

୧ । ଛଅଣ ମାଇଁଚି ଦଣ୍ଡାତଳେ ମଲେ, ବୁଢ଼ୀ ପାଯୋର ଯିବ ବୋଲି ହାତ ମୁଠା ମୁଠା କରୁଛି । [ବ୍ୟଙ୍ଗ]

୨ । ଛଟକ ଦେଖେଇ ଅଟକ ରଖେ । [ଢଗ ଅନୁପ୍ରାସ]

୩ । ଛଣଘର କଲି କଣା; ଗ୍ରୁତ ଦମଦମ (ଧମକାଣି) କୁରାଡ଼ିହଣା, (ଟୋକାଙ୍କ ହଣା), ବୁଦ୍ଧି କରି ଦେଲା (ଦିଏ) ବଣା । [ଢଗ]

୪ । ଛତରଖାଇ ! ପତରଗୋଟେଇ ! ନବାମାଇପ, ସବାଖାଇ !
[ସ୍ତ୍ରୀମାନଙ୍କର ସ୍ତ୍ରୀକୁ ଗାଳି]

୫ । ଛତରଚ୍ଛୁଆଇପଟ; ଛମାସ ଜଗିଲି ଯମୁନାଘାଟ; ଦନ୍ଦେ ନ ପାଇଲି ଭେଟ ।
[ଢଗ]

୬ । ଛନ୍ଦ ନ ଜାଣେ ନନ୍ଦ । [ଢଗ]

୭ । ଛନ୍ଦ ନ ଜାଣନ୍ତି (ଜାଣେ) ନନ୍ଦନ୍ଦେଣୀ; ପୁ (ପୋ) ତନା କୋଳେ ପୁଅ ଦେଲେ ଆଣି [ବ୍ୟଙ୍ଗ]

୮ । ଛଳକୁ ମରେ, ହବୁ ଚରିକନା ଗଣ୍ଡିରି କରେ; ହକାଳି ହକାଳି ଶୁଖେଇ ମରେ ।
[ବ୍ୟଙ୍ଗ]

୯ । ଛୁଇଁ ପଢ଼ିଲେ ଲହୁ ଡେଇଁ । [ବ୍ୟଙ୍ଗ]
[ଅନ୍ୟର ଦମ୍ଭକୁ ରଟିଲେ ସେ ଚଢ଼ି ଚଢ଼ି ହୁଏ] ।

୧୦ । ଛୁଞ୍ଚୁଣି ବକଲି, ଦର୍ପଣ କଲି, କୁଳି ବକା କାଲି ଘୃତର; ମାଆ ବକୁଥିଲି ଚିଙ୍ଗୁଡ଼ି (ଡାମ୍ବଡ଼ା, କୋକଲି, ଧୋବଲି) ଶୁଖୁଆ, ବାପ ଦକୁଥିଲ ପତର ।
[ଗରିବ ପିତାମାତାଙ୍କ ପୁତ୍ରର ବାହ୍ୟକ ଆଡ଼ମ୍ବର ପ୍ରତି ବ୍ୟଙ୍ଗ]

୧୧ । ଛୁଞ୍ଚିଛୁଞ୍ଚି ଦେ ଗାଈକି ଯିବ, ପେଟ ନ ପୂରିଲେ କାନ୍ଦିକି ଯିବ ? [ବ୍ୟଙ୍ଗ]

୧୨ । ଛୁଞ୍ଚ ଫୁଟିଲେଇ; ଘୁଲୁଆଏ ଦାନ୍ତେ ନୋଥ ହଲେଇ (ନାକ ଫୁଟିଲେଇ) ।
[ଅମାନିଆ ସ୍ତ୍ରୀଲୋକ ପ୍ରତି ବ୍ୟଙ୍ଗ]

୧୩ । ଛୁଟରେ ପେଟ୍; ଯେତେ ଖାଇଥିଲେ ଖାଇବା ରୁଚି ।

୧୪ । ଛୁଇଁ କରିବା ଡାକ୍ତର ଗୁ , ତେଲି ଘରେ ଥିଲେ ନ ଥାଏ ଲୁଣ ।
[ଅଭାବଗ୍ରସ୍ତ ଗୃହସ୍ଥ ସମ୍ବନ୍ଧେ]

୧୫ । ଛୁଇଁଲେ ଛତୁ ! ପାଣି ବାଡ଼ିଲେ କେତେ ରୁ ମାରୁ (ଫୁଟୁ) ।

୧୬ । ଛୁଇଁଲେ ଗୁଇ ! ଯାଙ୍ଗେ ଯାଙ୍ଗେ କେତେ ଗୋଡ଼ଇ ଥାଇ (ଗୋଡ଼ଉଥାଉ) ।
[ଢଗ]

୧୭ । ଛୁଇଁଲେ ଛୁଆ ଏତେ ହଟହଟା ନ ମଲୁ କିଆଁ । [ଢଗ]

୧୮ । ଛୁଙ୍କିଲେ ଟୋବଲୁଗା (ଘରୁକନା) ଛୁଡ଼ି (ଣ୍ଡି) ଯିବ; ପାଳ ଦଉଡ଼ିଆ ଘଇତା ଆଇ କିସ କରିବ ? [ଢଗ]

୧୯ । ଛୁଣ୍ଡି ଗଲେ ଗଇଣ୍ଠେଇବାକୁ ନାହିଁ; ହଜିଗଲେ ଖୋଜେଇବାକୁ ନାହିଁ ।
[ଏକମାତ୍ର ବସ୍ତୁର ସ୍ୱାମୀ]

୨୦ । ଛୁଇଁଦେଲେ ଛଳ ଯାଉଛୁ ପଣି । [ବ୍ୟଙ୍ଗ]

୨୧ । ଛୁଇଁଲେ ଛଅଘା । [ସାମାନ୍ୟ କଥାରେ ଯେ ଅଭିମାନ କରେ ତା ପ୍ରତି ବ୍ୟଙ୍ଗ]

୨୨ । ଛୁଞ୍ଚ ମୁଠିନ ମୁଠିନ ପର୍ବତ ଟାଳିଲ, କାକ ବିନା ନାହିଁ ଘର; ବାଳୁତ ପୁଅକୁ ଯୁବତୀ କନିଆ, ସେ କି ଜାଣେ ତାର ଭାବ । [ବାଲ୍ୟ ବିବାହ ପ୍ରତି ବ୍ୟଙ୍ଗ]

୨୩ । ଛେଳି ପରି ସବୁବେଳେ ମୁହଁ ବୁଲୁଛୁ । [ଅଳ୍ପ ପରିହାସ. ପେଟୁ ଲୋକ ପ୍ରତି]

୨୪ । ଛେଳିର ବୋଲ (ହୋଇ) ଲଙ୍ଗୁଡ଼; ଛିଣ୍ଡି (ଛିଡ଼ି) ଗଲା ତନ ଅଙ୍ଗୁଳ । [ବ୍ୟଙ୍ଗ]

୨୫ । ଛୋକରା-କଥାରେ ପୁଣି ବ୍ୟାକରଣ ଦୋଷ ରହିଗଲା । [ବ୍ୟଙ୍ଗ]

୨୬ । ଛୋଟିଲେ ! ଦେ ଦେ ଦେ କୁଟି ଲେ ।; [ବ୍ୟଙ୍ଗ]

୨୭ । ଛୋଟି ! ଘଡ଼ିକ (କୁଣ୍ଡାକ, ମାଣକ) ଧାନକୁ ଓଳିଏ କୁଟିଲୁ (ବଡଲ) ପାହାରେ ପାହାରେ କୁଟି । [ଛୋଟି ସ୍ତ୍ରୀ ପ୍ରତି ପରିହାସ]

୨୮ । ଛୋଟୀ ଧାନ କୁଟେ ପାହାରେ । [ବ୍ୟଙ୍ଗ]

୨୯ । ଛୋଟୀ ତଳଗଛ ଲମ୍ବା ବରଡା, ଜକ ଜକ ପଡ଼େ ଫଳ; ଅବୁଝା ନାରୀକି କିସ ବୁଝେଇବି, ମାଗୁଛୁ ଘରଗ ତରୁ । [ଢଗ]



## ( ଜ )

୧ । ଜଇଶୋଲ ମାଧିଆ ! ଜନମ କାଲରୁ ନାଁ ଦିଆ ।

[କଟକ ଜିଲ୍ଲାରେ ଜଇଶୋଲ ନାମକ ଗ୍ରାମରେ ମାଧବ ନାମକ ବ୍ୟକ୍ତି ନାମରେ ପଦ]

୨ । ଜଗନ୍ନାଥେ କାଳିଆ, ଜଗନ୍ନାଥଙ୍କ ଲେକବାକ କାଉଁଚମାଳିଆ । [ଢଗ]

୩ । ଜଜାଙ୍ଗ ଭାଙ୍ଗିଲି, ଦାନ୍ତକାଠି କଲି, ସବୁ ଦାନ୍ତକାଠି ମୋହର; ଏଇ (ଏହି) ବାଟେ ଯାଉ, କଥା ତୁ ନ କହୁ, ଗ୍ରୁଡ ଫାଟିଯାଉ (ଯିବ) ତୋହର ।

୪ । ଜଡ଼ରୁ ମାଇଲେ ଯାଉ ସର । ଦେବଙ୍କ ସଙ୍ଗେ କିମ୍ପା କଳି ? [ଢଗ]

୫ । ଜଣ ଜଣକେ ମହାବଳି, ଗଛରୁ ପଡରେ ପକାନ୍ତି ଝାଡ଼ି !

[ବ୍ୟଙ୍ଗ; ଟେକା ପକାଇ ଗଛରୁ ଫଳ ଝଡ଼ାଇ ନ ପାରି ପତର ଝଡ଼ାଉଥିବା ବ୍ୟକ୍ତି ପ୍ରତି]

୬ । ଜଣକୁ ଜଣେ, ମାଇପ ଶୋଇଲା (ଛୁ) ଅଳିଆ (ସନ୍ତରି) ବଣେ ।

[ସ୍ୱାମୀର ଦୋଷରୁ ଦୁଃଖ ଭୋଗ କରୁଥିବା ସ୍ତ୍ରୀ]

୭ । ଜନମ କାଲରୁ ମୁଣ୍ଡରେ ଟୋପି, କୃଷ୍ଣ ଅବତାରେ ମୋହିଲେ ଗୋପୀ; ରାମ ଅବତାରେ ରାବଣ ମାରି; ଏ କାହିଁକି କହ ବିଚାରି ।

[ନାଁଦିଆ, ବାଉଁଶ; କୃଷ୍ଣ ଅବତାରରେ ବଂଶୀ, ରାମ ଅବତାରରେ ଧନୁ]

୮ । ଜଣେ ଶୋଇଛି, ଜଣେ ବସିଛି, ଜଣେ ମାଳ ଜପି ଜପି ଆସୁଛି; ଏ ତିନଜଣଙ୍କୁ ହୋଇଲେ ରୁଣ୍ଡ, ତିନି ଜଣଙ୍କର ପନ୍ଦର ମୁଣ୍ଡ; ତିନି ଜଣଙ୍କର ଛତିଶି ଆଖି, କିଏ କହିଦେବ, ଦେଖିବା ଦେଖି ।

[ନାଁଦିଆ; କୁମ୍ଭକର୍ଣ୍ଣ ନିକଟରେ ରାବଣ ବସିଛି; ବ୍ରହ୍ମା ଆସି ପହଞ୍ଚିଲେ ଜାମ୍ବା ମହାଦେବ ଶୋଇଛନ୍ତି କାର୍ତ୍ତିକ ବସିଛନ୍ତି, ବ୍ରହ୍ମା ପହଞ୍ଚିଲେ]

୯ । ଜମା (ମମା) ଗଲଣି ବମା ଝାଇ, ଚକୁଳି ପଡ଼ିଛି ଠୋକର ହୋଇ ।

[ବଡ଼ଲୋକ ଗରିବ ହେବା ଯୁବତୀ ଶୀର୍ଣ୍ଣା ହେବା ଅବସ୍ଥା ବର୍ଣ୍ଣନା]

୧୦ । ଜଳଜଳା ମାଣିକ ! ଜଳ ଜଳ କରି ଅନେଇଥାଏ, ନଈବଡି ପାଣିକି । [ମାଣିକ ନାମ୍ନୀ ଓଲମା ବାଳିକା ପ୍ରତି ପରିହାସ]

୧୧ । ଜର କଲ ଧାନକୁଟା ବେଳକୁ, ଗ୍ଲାନି ଗଲା ଭାତ ଫୁଟା ବେଳକୁ । [ବ୍ୟଙ୍ଗ]

୧୨ । ଜଳାଧର କହେ ହଳଧରକୁ, ଚନ୍ଦ୍ରର କିମ୍ପା ମଲେ ? ସ୍ୱର୍ଗରୁ ପଡ଼ିଲେ ପଞ୍ଚ-ପାଣ୍ଡବେ, ମାରି ବନବାସ ଗଲେ ।

[ନାଁଦିଆ; ଗଛରୁ ଓଳ ପଡ଼ି ତଳେ ଦ'ପଟିଏ ମ ଟିଡା]

୧୩ । ଜହ୍ନର ଘଙ୍ଗଟେ ମହୁରୀ ଗୋଳ, ପିଇଦେଲେ ଯିବୁ ଛୁଟିବ (ଛୁଟିଯିବ) କଳି ।
[ଢଗ]

୧୪ । ଜହ୍ନ ପଡ଼େ ଘନ ଘନ; ଏହି ବାଟେ ଗଲେ ତମା ଜୀବନ (ଜୀବଧନ), ପଡ଼ିଛି କଠଉ ଚିହ୍ନ ।

୧୫ । ଜହ୍ନି ମଞ୍ଜି ଭଳି ଗୋଡ଼ (ଗୋଡ଼ା) । [ଗୋଡ଼ କୁନ୍ଥୁ ଶୁଣ୍ଠି ଶରୀରର ବିଶିଷ୍ଟ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୧୬ । ଜହ୍ନି ଫୁଲ ଫୁଟିଲା, ଗେଣ୍ଡୁଲି ନାଅଁ ଗାଉଁଇ ଯାଇ ମାମୁଘରେ ଉଠିଲା । [ଗେଣ୍ଡୁଲି ପ୍ରତି ପରିହାସ]

୧୭ । ଜହ୍ନି ଫୁଲର ଅୟୁଷ (ଆଇଷ) ପା, ଦନ୍ତେ ଫୁଟି ହକାଲେ ଯା ।
[ବ୍ୟଙ୍ଗ—ଆଶୀର୍ବାଦ; ଜହ୍ନି ଫୁଲ ପରି ଅଳ୍ପାୟୁ ହୋ]

୧୮ । ଯାଚିଲେ କୁଆଁଳି (କୋଅଁଳି) ପଣସ ନ ଖାଆନ୍ତି, ଅଁଇଠା କୁଡ଼ରୁ ବୋଡ଼ ଗୋଟା (ଟେ) ଇ ଖାଆନ୍ତି । [ବ୍ୟଙ୍ଗ]

୧୯ । ଯାଜେଉଲାରେ ଘର; ଶାଶୁ ଥାଉଁ ଥାଉଁ ନଣନ୍ଦ ଗର୍ଜିଲା, ମଲିଟି ଏଥର । [ନଣନ୍ଦ ଦ୍ୱାରା ଉତ୍ପୀଡ଼ିତା ବଧୂର ଖେଦୋକ୍ତି]

୨୦ । ଜାଣିଥିଲି କି ? ଅଧେ ସୁନା ଅଧେ ପିତଳ ବୋଲି ମୁଁ, ନକଡ଼ ପକା (କେ) ଇ ଭୁଲି ଥିଲି କି ? [ଢଗ]

୨୧ । ଯାଜେଉଲାରେ ଘର; କି ଥାଇଁ କରିବ ଶାଶୁ ଶଶୁର ? ବଅଁଳୁ ମୋହୋର ବର । [ବଧୂର ଅନୁଚିନ୍ତା]

୨୨ । ଜାଣି ନ ଥିଲି ମୁଁ ଛଣପଟ ଗୁଣ, ଫୁଲ ବାଜୁଥିଲା (ଶୁଭୁଥିଲା) ରଣ୍ଢେଣ; ପଡ଼ିଲା ଧାଇଁ ସୁଆଦ ଶବଦ ଟିକିଏ ନାହିଁ । [ବ୍ୟଙ୍ଗ]

୨୩ । ଜାଠ ମାହାକାଲ କୋଚିଲା ପିତା । [ପୁରୁଷଙ୍କୁ ସ୍ତ୍ରୀଙ୍କର ଗାଳି]

୨୪ । ଜୀବ ଥିଲାବେଳେ ମୁଁ ଛି ବଳୁଆ, ଜୀବ ଗଲାବେଳେ ଈଶ୍ୱର ଦାହା (ଜଳାଜଳୁଆ) ।
[ଢଗ]

୨୫ । ଜୋଇଁକି ଦେଖିଲି ବାଟରେ, ଲାଜ ଉପୁଜିଲା ହାଟରେ । [ବ୍ୟଙ୍ଗ]



## ( ଝ )

୧ । ଝଟକ ଝଟିଅ ବନା ! ଝାଉଥେ (ଥି)ଲୁ କୁଆ ଅଇଁଠା ସିନା, ଦୂରୁବ ଝର୍ଣ୍ଣିକ ଅନା (ଟେଁଇଁ ମରୁଥେଲୁ ଦନା) । [ବନମାଳୀ ନାମକ ପିଲାକୁ ଉପହାସ]

୨ । ଝଡ଼ଇ ଝାଇଲା (ଖାଉଚି) ବରକୋଳି ଗଛ; ଡରେଇ ଝାଇଲା ପୋଖସ୍ତିକ ମାଛ । [ବଳପୂର୍ବକ ଅନଧିକାର ପ୍ରବେଶ କରିବା ବା ଧମକରେ କାମ କରାଇ-ନେବା ବ୍ୟକ୍ତି ପ୍ରତି]

୩ । ଝାଟିକି ଦେଲା ମାଟି; ଉସ୍ୱଲଗି ଦର ପଥର କାନ୍ଥି (ଖୁଣ୍ଟି), ବଇ (ସି)ଝୁ ଗୁଣ୍ଠି ଣି ହାଣ୍ଡି । [ଢଗ]

୪ । ଝାମ୍ପିକ ଝୁର ! ତୁମ ଠଇକରେ ନାହିଁ କ ଖୁର ? [କାଁଦଆ; ମେଣ୍ଢା]

୫ । ଝାମ୍ପି ଝଟକଲା, ବଜୁଳି ମାଇଲା, ଦାଣ୍ଡ ଧୂଳି ନେଲା ଉଡ଼ାଇ (ଉଡ଼େଇ); ଏହି ନାଟେ ଗଲା (ଗଲ, ଗଲୁ) କଥା ନ କହିଲା (ଲ,ଲୁ) ସାଙ୍ଗେ ସାଙ୍ଗେ ଗଲା ଗୋଡ଼ାଇ (ଗୋଡେଇ) । [ଢଗ]

୬ । ଝାଳ ଗମଗମ ବୋହୁଛି, ଶ୍ରୀଅଙ୍ଗକୁ ବାଧା ହେଉଛି । [ବ୍ୟଙ୍ଗ]

୭ । ଝିଅ ଅଲଅଲ ହୋଇ ବଢ଼ିଛନ୍ତି, ହାତ ଠୋକ ଠୋକି ଖାଉଛନ୍ତି, (ହାତ ମୁଠି ମୁଠି କରୁଛନ୍ତି, ଖଟ ପଲଙ୍କରେ ଗଡ଼ୁଛନ୍ତି, ହଂସୁଲି ଭୂଇଁରେ ଗଡୁଛନ୍ତି) ।
[ଶାଶୁଘରେ ନବାଗତବଧୂ ପ୍ରତି ଶାଶୁ ନଣନ୍ଦଙ୍କ ଉଲୁଗୁଣା]

୮ । ଝିଅ ପୋଇଲା, ଅମୃତାକୁଅରେ ଥାଏ କୋଇଲି । [ବାପଘରେ ବଢ଼ିଲା ଝିଅ ଓ କରଣମାନଙ୍କ ଘରେ ଥିବା ରକ୍ଷିତା ଦାସୀମାନଙ୍କ ଆଚରଣ ସମ୍ବନ୍ଧେ ବ୍ୟଙ୍ଗ]

୯ । ଝିଅ ବୋହୂଙ୍କର ଲାଗଇ କଳି, ନାତି ପଡ଼ୁଥାଏ ଘରେ ବୋବାଳି ।
[ହାସ୍ୟତରଙ୍ଗ]

୧୦ । ଝିଅ ବଭାପାଇଁ ( ବାହା କର ) ମନ, ହାତରେ ନାହିଁଟି ଧନ । [ବ୍ୟଙ୍ଗ]

୧୧ । ଝିଅ ଯିବେ କି ନାହିଁ ଶାଶୁଘର; ଲୁଗା ପଡ଼ୁଛି (ପଡ଼ୁଥାଏ) ଧୋବାଘର ।
[ବ୍ୟଙ୍ଗ; ଅନିଶ୍ଚିତ କଥା ନିମନ୍ତେ ପୂର୍ବରୁ ସଜ ହେବା]

୧୨ । ଝିଅ ବଭା (ବାହା) ପାଇଁ ଅଛଟି ଧାଇଁ ଅଣ୍ଟାରେ କାଣିକଉଡ଼ି (ଫଟା ପାହୁଲା) ନାହିଁ । [ବ୍ୟଙ୍ଗ]

୧୩ । ଝୁଣ୍ଟିଆ ନାଦ (ସ୍ୱନ); କମ୍ପେଇ ଦଉଛି ତିନି ବ୍ରହ୍ମାଣ୍ଡ (ଭୁବନ)
[ବହୁ ଅଳଙ୍କାର ପରିହିତା ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୧୪ । ଝୁମ୍ପାଲଗା ଗୋଜକାଠି; ନ ଦେଖିଲେ ମୁହଁ କହିବେ ଏଡ଼େ (ନ ଦେଖିଲେ ଦେବେ କେତେ ଗଞ୍ଜଣା), ବୋଲିବେ କମୁଲ (ଣ୍ଡି) ଖୁଣ୍ଟୀ । [ଶାଶୁଘରକୁ ଯିବା କନ୍ୟାକୁ ବାପଘର ପ୍ରଚୁର ଅଲଙ୍କାର ନ ଦେଲେ ଶାଶୁ ନଣନ୍ଦମାନେ ବିରକ୍ତ ହୋଇ ଉଲୁଗୁଣା ଦେବେ ବୋଲି ଝିଅର ଅନୁଚନ୍ତା]

୧୫ । ଝୂଲ ପିନ୍ଧିଛୁ ହାତ, ଝୂଲୁ ଝୂଲୁ ଏବେ ପାଇଲୁ ଘାଟ । [ଛାଗ]

୧୬ । ଝୋଟକୁ ନାଆଁ ଝର ଝର; ପୋଡ଼ି ଯାଉଥାଏ ଚର ଚର ।
[କ୍ରୋଧୀ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୧୭ । ଝୋଲ ଝୋଲ ମତେ ଦବୁ (ଦେବୁ), ଫଳ ଫଳ ତୁ ଖାଇବୁ । [ବ୍ୟଙ୍ଗ]



## ( ଟ )

୧ । ଟଙ୍କାଟୋକର ନାହିଁ କିଛୁ; ବଜଢ଼ୋଲପାଇଁ ମନ ଡାକୁଛୁ (ବାଡ଼୍ଟା ଟେକୁଛୁ) ।
[ବ୍ୟଙ୍ଗ; ଦରିଦ୍ରର ଉଚ୍ଚାଭିଳାଷ ଅର୍ଥ ।]

୨ । ଟହକଗଛର ମହକ, ଉପରେ କପାଇଁ ପଡ଼ିଲୁ ? (ପ୍ରଶ୍ନ)
ଫଗ୍ନି ମଉଚର ଦରବ, ଭୂଇଁରେ କପାଁଇ ଗଡ଼ିଲୁ ? (ଉତ୍ତର) [ନିଁଦଆ; କଣ୍ଟା ଆମ୍ବଟି ଏ ଗଛରୁ ଝଡ଼ି ମୂଳରେ ଶୋଇଥିବା ଛେଳି ଉପରେ ପଡ଼ିବାରୁ ଛେଳି ପ୍ରଥମ ପ୍ରଶ୍ନ ଆମ୍ବକୁ ପଚାରିବାରୁ ଆମ୍ବ ଛେଳିକୁ ଦ୍ୱିତୀୟ ପ୍ରଶ୍ନ କଲା]

୩ । ଟହକ (ଟହଟହ) ହସ; ଟମକ ବାଜୁଛୁ ଜାଣି ଦବସ ।
[ଉଚ୍ଚହାସ୍ୟ କରୁଥିବା ଅନ୍ତଃପୁରବାସିନୀର ହସ ଶବ୍ଦରେ ଦାଣ୍ଡ କମ୍ପିବା ସମ୍ବନ୍ଧେ ବ୍ୟଙ୍ଗ ବଚନ]

୪ । ଟାଙ୍ଗରି ମୁଣ୍ଡରେ ମହଣ ପାଡଆ, ଉଞ୍ଚ (ଞ୍ଚ) କପାଳରେ ଟିକିଲି; ଟାକୁଆଗାଲକୁ ବାହାଡ଼ା (ବାହାର) ଦାନ୍ତ, ନାକଛୁଣ୍ଣୀକି ଦେଖିଲି (ନାକଛୁଣ୍ଣୀଠେଇଁ ରହିଲି) ।
[ବ୍ୟଙ୍ଗ]

୫ । ଟାହିଟାପରିରେ ମତେ ଉଡ଼ାଇ ଦଉଛୁ । [ବ୍ୟଙ୍ଗ]

୬ । ଟାହିଟାପରି ସହି ନ ପାରିଲେ ମୋ ଘରୁ ପଳା । [ବ୍ୟଙ୍ଗ]

୭ । ଟିକିରଟାଇଁ ! ତୁମ ଦହଯାକ ଟିକିର ଭୂଇଁ । [ନିଁଦଆ; କୁମ୍ଭୀର]

୮ । ଟିକିକ (ଟିକିକ, ଟିକିକ, ଟିକି) କଥା; ଟିକିକ କଥାରେ ମନର ବଥା ।
[ସାମାନ୍ୟ କଥାରେ ରାଗ ହେବା]

୯ । ଟିକି କନାଖଣ୍ଡି ଶୁଙ୍ଘେ(ଶୁଙ୍ଘେ) ନାହିଁ । [ଢିଁଢଆ; ଜିଭ]

୧୦ । ଟିକି ବାଛୁର ଦେକରେ ପଘା । [ଢିଁଢଆ, ଛୁଞ୍ଚି]

୧୧ । ଟିକି ଚଢ଼େଇ ଟିକିକ ପାଣିରେ ବୁଡ଼ି ମରଇ । [ଢିଁଢଆ; ଲୁଣ]

୧୨ । ଟିକି ନାକଳି ଯାଉଛି; ଫୁଲୁରୁ ଫୁଲୁରୁ ଡେଉଁଛି । [ଢିଁଢଆ; ବାଲିରେ ହାଣ୍ଡି ମଂରେ ନିଆଁ ଉପରେ ଧାନରୁ ଲିଆ ବା ଖଇ ଭଜା ହେବାର ବର୍ଣ୍ଣନା]

୧୩ । ଟିକି ମିଳୁଚି ! କେତେ ଅଣ୍ଡିଆଣ ଭେଇ ଦେଲୁଚି । [ବ୍ୟଙ୍ଗ]

୧୪ । ଟିକି ଟିକି କଣ୍ଟା, କପୁରର ବାସ; ଏ ନାଆଁଟି କହିଦେଲେ ବଳରାମ ଦାସ ।
[ଢିଁଢଆ; ପାଚିଲା ପଣସ]

୧୫ । ଟିକି ଟିକି କଣ୍ଟା, ଲୁହାର ବାଡ଼ି; ଏ ନାଆଁଟି ନ କହିଲେ ଘରୁ ଦଅ ତଡ଼ି ।
[ଢିଁଢଆ; ଦାଆ]

୧୬ । ଟିହିପା (ଟିଁ ଟିଁ ପୁଁ) ବଣି; ବଡ଼ ମୁଣ୍ଡରେ ଗାଣ୍ଡି (ଲଞ୍ଜ) ଟେକି ପିଇ ଦଉଛି ମାଣି (ତେଣ୍ଡ ଅଳ୍ପ ପାଣି) । [ଢିଁଢଆ; ପାଣି ବୋହିବା ଯନ୍ତ୍ର ବା ଟେଣ୍ଡା]

୧୭ । ଟେଲି ଟେଲି ମୁଣ୍ଡି ମୁଣ୍ଡି (ଟେଲା ଟେଲା ମୁଣ୍ଡା ମୁଣ୍ଡା) ପାଟିକି ପକା; ଥାକଟ ବେଳକୁ (ଅଚଳ ବେଳକୁ) ମୋର ନାମକ (ଅପାକୁ) ଡକା । [ସୁଖ ବେଳେ ଆପେ ସୁଖ ଭୋଗ କରିବୁ, ବିପଦ ବେଳକୁ ମୁରବିଙ୍କ ସାହାଯ୍ୟ ଲୋଡ଼ିବା ପ୍ରତି ବ୍ୟଙ୍ଗ]

୧୮ । ଟେରକୁ ଟେରୀ: ଭଲ ଭେଟିଛନ୍ତି (ଖଞ୍ଜି ଚନ୍ତ୍ର) ତକରଧାରୀ (କୋଦଣ୍ଡଧାରୀ) । [ଟେର ସ୍ୱାମୀର ଟେରୀ ସ୍ତ୍ରୀ ହୋଇଥିଲେ ଦମ୍ପତିଙ୍କ ପ୍ରତି ବ୍ୟଙ୍ଗ ବଚନ]

୧୯ । ଟୋକେଇ ପାଖରେ କୁଟେଇ (କଣେଇ)ଟାଏ; ମିଛରେ (ଦାଣ୍ଡରେ) ବୋଲିବେ ଡୁଣ୍ଡେଇଟାଏ । [ସତ କଥା କହିବା ବ୍ୟକ୍ତିକୁ ଲୋକେ ବିରକ୍ତ ହେବା]

୨୦ । ଟେକିଦେଲି ଭାତଗଣ୍ଡି (ମୁଠି)କ; ଡୋକଦେଲେ ତୋରଣି ମନ୍ଦକ ।
[ବେଶି ଖାଇବା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୨୧ । ଟେକୀ ହଳଦୀ ଲଗାଇ ଗାଲରେ; ଟୋକାମାନଙ୍କୁ ପକାଏ ପାଲରେ ।
[ସୁବେଶସଜ୍ଜିତା ଭ୍ରଷ୍ଟାଯୁବତୀ ପ୍ରତି ବ୍ୟଙ୍ଗ]

୨୨ । ଟୋକା ଟୋକରିଆ ବୁଦ୍ଧି; ଆଗ ପଛକୁ ବିଚାର ନାହିଁ, ମଥାରେ ନାଉଛି (ନାଚେ) ମୁଦ୍ଧି । [ବ୍ୟଙ୍ଗ]

୨୩ । ଟେକୁଳିଟିଏ ! ଟୋକୁଳି ହାତରେ ଚକୁଳିଟିଏ ।
[କ୍ଷୁଦ୍ର ଟୋକୀ ବା ବାଳିକା ପ୍ରତି ଉପହାସ ବଚନ]



## ( ଠ )

୧ । ଠକ ଠକ ଠକସା; ତିନି ମୁଣ୍ଡ ଦଶ ଗୋଡ଼, କହ ଦବୁଟି ମଉଷା !
[ନାଁଦଥା; ହଳ ବୁଲାଉଥିବା ମନୁଷ୍ୟ ଓ ୨ଟି ବଳଦ]

୨ । ଠକଙ୍କ ଗୁରୁ; ଉପରେ ଚକ୍‌କଣ ଭିତରେ ମାରୁ ।

୩ । ଠକ ଠକ ଭଜନ ମାଳ (କି, ଳା) । [ବ୍ୟଙ୍ଗ]

୪ । ଠକ ଠକ ଭଜନ ଝାଣ; ଭାତ ଥାଳ (କଂଧା) ପାଖକୁ ଆଣ । [ବ୍ୟଙ୍ଗ]

୫ । ଠକ ଠକ ମାଳି ଭଜନ ଝାଣ; ଭେକ କଲ ଭାତ ପାଖକୁ ଅଣ । [ବ୍ୟଙ୍ଗ]

୬ । ଠକଙ୍କ ଗୁରୁ, ବୃଷ୍ଣଙ୍କ ଗୋସା (ସେ)ଇଁ । [ଗାଳି]

୭ । ଠଣ ଠଣ ମଦନ ଗୋପାଳ । [ଅଭି ନାଙ୍କ'ନ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୮ । ଠକମ୍ ଠକା; କାମ କରୁଛୁ ବଙ୍କା ଟଙ୍କା (ଅଙ୍କା ବଙ୍କା) । [ବ୍ୟଙ୍ଗ]

୯ । ଠାର୍ ଠୁର୍, ଲ୍ଟେଣଇସି (ସ୍) ବଶି (ଶ୍) । [ଅନ୍ୟର ଅବୋଧ ଅଙ୍ଗଭଙ୍ଗୀ ଦ୍ୱାରା ଭାବବନ୍ଧନମଧୁ]

୧୦ । ଠେକା ପଗ୍ଗରେ ବେକା ରେ; ତୁ କୋଉ ମଣିଷରେ-ଲେଖାରେ ? [ବ୍ୟଙ୍ଗ]

୧୧ । ଠେକା ପଗ୍ଗରେ ବେକା ଲୋ; ତତେ କୋଉ ମଣିଷରେ ଲେଟିଲେ ? [ବ୍ୟଙ୍ଗ]



## ( ଡ )

୧ । ଡଗର ପଠେଇ ଆଣିବେ ଧରି, ମାଡ଼ ମରେଇବେ ଯନ୍ତ୍ରାରେ ଭରି ।
[ରାଜା ପିଆଦା ପଠାଇ କୌଣସି ଦୋଷୀ ବ୍ୟକ୍ତିକୁ ଧରାଇ ନେଇ 'ହରକାଠ'ରେ ପକାଇ ପ୍ରହାର କରାଇବେ]

୨ । ଡର କାହାକୁ, ଭୟ କାହାକୁ ? ଠାକୁରେ ଅଛନ୍ତି ଚଉଦାହାକୁ (ଆଶର କରନ୍ତୁ ଚଉବାହାଙ୍କୁ) । [ଭକ୍ତର ବିଶ୍ୱାସ]

୩ । ଡାଆ (ହା)ଣୀ ପଲ ପଲ, ଗୁଣିଆ ଗୋଟିଏ ନାହିଁ ।
[ବ୍ୟଙ୍ଗ; ଯେଉଁ ସ୍ଥାନରେ ଅନିଷ୍ଟକାରୀ ବା ମନ୍ଦପରାମର୍ଶଦାତା ଅନେକ ଥାଆନ୍ତି, କିନ୍ତୁ ଅନିଷ୍ଟର ପ୍ରତିକାର କରିବା ଲୋକ କେହି ନ ଥାଏ]

୪ । ଡରରେ (ଡର ହର) ଛେର (ଛେର ମୁଠ; ହଗି ମୁଠ) ପକା (କ)ଉଛୁ । [ବ୍ୟଙ୍ଗ]

୫ । ଡାମର କାଉରେ ଡାମର କାଉ ! ଖଟ ମିଛ ଗାଇ କ ଯଶ ପାଉ ? [ଠଗ]

୬ । ଡାଳ ପତର ମୂଳ ଖାଇ; ଏବେ ବୁଲୁଅଛୁ ଅଚେତା ହୋଇ । [ଯେଉଁ ଲୋକର ପିତା ମାତା, ଭାଇ ଭଉଣୀ, ପୁତ୍ରସନ୍ତାନ ସମସ୍ତେ ମରିଥାନ୍ତି ତାହା ପ୍ରତି ବ୍ୟଙ୍ଗ]

୭ । ଡାଳ ପୋହୋଳା; ଗୋଦର ଗୋଡ଼ରେ (କୁ) ଗୋଟିଏ (ପଟିଏ) ବଳା । [ବ୍ୟଙ୍ଗ]

୮ । ଡାଳମାଙ୍କୁଡ଼ି ! ଏ ଡାଳ ସେ ଡାଳ ଡେଉଁଛୁ ଖାଲି ।
[ଚଞ୍ଚଳସ୍ୱଭାବଯୁକ୍ତା ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୯ । ଡୁବିକରି ପାଣି ପିଇଲେ ମହାଦେବ (ଏକାଦୁଣୀ)ଙ୍କ ବାପା ସୁଦ୍ଧା (ବି) ଜାଣି ପାରିବେ (ପାରନ୍ତି) ନାହିଁ । [ବ୍ୟଙ୍ଗ; ଗୋପନରେ ବ୍ରତଭଙ୍ଗ କଲେ ବାହାରର ଲୋକେ ଠଉରାଇ ପାରିବେ ନାହିଁ]

୧୦ । ଢେଙ୍ଗାକୁ ଠେଙ୍ଗା, କଦଳୀ ଗଛର ଲମ୍ବ ବାହୁଙ୍ଗା । [ନ୍ୟାୟ]

୧୧ । ଢେଙ୍ଗେଇ ଗୋଡ଼ରେ ଯୋଡ଼ାଏ (ହଳେ) ବଳା । [ବିଦ୍ରୂପ]

୧୨ । (ତୋ) ଢିହଟରେ ବିଲୁଆ ଡେଉଁ । [ଅଭିଶାପ; ବଂଶରେ କେହି ନ ରହୁ, ତୋ ଘର ଅରଣ୍ୟରେ ପରିଣତ ହେଉ]

୧୩ । ଢେଙ୍ଗେଇ ଲୋ ! ଡାହୁକୀ ଲୋ ! ହରଗରେ ଟଙ୍କାର (କଲୁ) ବାଘ; ଏକାଅରଟେ ପୁଅ ବେଉ (ବେଉଛୁ) ଶହେ କି ପଚିଶ । [ନିଁଆଡ଼ିଆ, ନଡ଼ିଆଗଛ]

୧୪ । ଡାଲି ଭାତ (ତରକାରି) ଗୋଳେଇ କରି; ମାଇ ଦେ (ଏ) ଉ ଥାଏ ପିହ୍ଲାଣି ଗୁଣ ।
[ବ୍ୟଙ୍ଗ]

୧୫ । ଡାଲି ଭାତ, ମାଇ ଦେ (ଏ) ଉ ଥାଏ ପିହ୍ଲାଣ ସାତ । [ପେଟୁଲୋକ ପ୍ରତି ବ୍ୟଙ୍ଗ]



## ( ଢ )

୧ । ଢଗ (ଢେଗ) ଗୁଣପଦ ଥେ (ଥି) ଲକ ନ ଥେ (ଥି) ଲେ, ଗୀତ ଟୁଣପଦ ଥେ (ଥି) ଲ; ଯୁଝି ହନୁ ଡେଇଁଲି ବାପଘର ଗାଁ, ହବୁ ତ ପାହୋର ଗଲା ।
[ଶାଶୁଘରକୁ ଗିବା ପରେ ବାଳିକାର ସ୍ୱାଧୀନତା ନଷ୍ଟହେବା ସମ୍ବନ୍ଧେ ଅନୁଚିନ୍ତା]

୨ । ଢଗମରମ, କଥା ହରମ ।

୩ । ଢଗଢମାଳ (ଢଗଢମାଳି), ଦନ୍ତର କାଢନ୍ତୁ ଯାଉଛି ବଳ (ଲୁହ ମୂନ ଭଳି ଯାଉଛି ଗଳା) । [ଢଗ]

୪ । ଢଗ (ଢେଗ) ମେଲୁଛୁ, ନାକ ଫୁଲୁଛୁ, ନାକର ବସଣୀ ହଲଉ ଅଛୁ (ହଲି-ଯାଉଛୁ) । [ବ୍ୟଙ୍ଗ]

୫ । ଢଙ୍କସରପାଣି; ଖଣ୍ଡ ଖଣ୍ଡ ମୁଣ୍ଡା ମୁଣ୍ଡା କାଟି ରଖୁଥାଏ କାଣୀ ।
[ପାଣିଚାଣିଆ ଢଅଣକୁ ଲକ୍ଷ୍ୟ କରି ବ୍ୟଙ୍ଗ]

୬ । ଢକ ଢକ କରି ପିଉଛୁ (ପିଏ) ପାଣି, ମିଛେ ବୋଲୁଥାଏ ଥିରି ବାସିତୋରାଣି ।
[ବ୍ୟଙ୍ଗ]

୭ । ଢମଣା (ଢେମଣା) ପଶିଲା ଗାତେ, ବୋହୂ ଭୂଆସୁଣୀ ହାଟକୁ ଯିବେ, ଓଢ଼ଣା ପଡ଼ୁଛି ହାତେ । [ବ୍ୟଙ୍ଗ]

୮ । ଢମ ଫୁଟି ଗଲା (ଢଗା), ଅଣ୍ଟାରୁ ପଡ଼ୁଛି (ଝଡ଼ୁଛି) ସିଙ୍ଘା ବରି । [ବ୍ୟଙ୍ଗ]

୯ । ଢମନଗର; ମାଆ ଧାନକୁଟୀ ପୁଅ ନାଗର (ପତର ଗୋଟେଇ ପୁଅ ନାଗର) ।
[ବ୍ୟଙ୍ଗ]

୧୦ । ଢଳଢଳ ଆଖି, କାନ୍ଦ ମାଉଛୁ ଦେଖି । [ବ୍ୟଙ୍ଗ]

୧୧ । ଢାଉପାଣି ପରି (ଭଳି) ଯାଉଛୁ ବୋହୁ, ନଗଡ଼ ନଦରେ ପଡ଼ୁଛୁ ଶୋଇ ।
[ବ୍ୟଙ୍ଗ; ବିପଦ ବେଳେ ନିର୍ଭୀକ ଭାବ ଦେଖାଇବା]

୧୨ । ଢାଙ୍କିକରେ, ଢାଙ୍କିନା ମାଦଳ ଗୁହ୍ଣିକରେ । [ଢଗ]

୧୩ । ଢିଙ୍କି ଆଲଉ ! ତୋ ଲାଗି ମୋହର ପରାଣ (ଜୀବନ) ଯାଉ ।
[ନିର୍ଲଜ୍ଜ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୧୪ । ଢିଙ୍କି ପଡ଼ୁଛି ଆଠଗଣ୍ଡା; ଶୁଟଖେଇ ଦବାକୁ ଜଣେ ଭେଣ୍ଡା ।

୧୫ । ଢିଙ୍କି ପଡ଼ୁଛି ପଟଣ, ଶୁଟଖେଇ ଦଉଛି ଜଣେ ।
[ନିଁଦଆ; ପାଟିରେ ୩୨ ଦାନ୍ତକୁ ଗୋଟିଏ ଜିଭ]

୧୬ । ଢିଙ୍କି ପଡ଼େ ଧମ ଧମ (ଦମ ଦମ); ସାହେବ (ଧାହୁବ, ଧାହାବ, ଧାଇବ) ଘୁଙ୍କାରି ବଡ଼ କଠିଣ, ଝାଲ ବୁହେ ଗମ-ଗମ ।

୧୭ । ଢିଙ୍କି ପେଟତଳେ ଗାତ; ଧରଥି(ଥୋ)ଲା ସୁନାଫୁଲିଆ (ମୁଦିଆ) ହାତ, ଟେକା-ପାଣି ଟେକାଗତ । [କୃପଣ ବ୍ୟକ୍ତିର ସ୍ତ୍ରୀର ଅନୁଚିନ୍ତା]

୧୮ । ଢିଙ୍କି ପଡ଼େ ଧମ ଧମ (ଦମ ଦମ); କୋଡ଼ିହଣା କାମ ବଡ଼ କଠିଣ (ଗହନ), ଝାଳ ବୁହେ ଗମ ଗମ ।

୧୯ । ଢିଙ୍କି ପଡେ ରଧ ରଧ; ଚନ୍ଦ୍ରମା ମୁହଁରେ (ଚନ୍ଦ୍ରବଦନରେ) ନାହିଁ ହରଷ (ହରଷ), (ଚନ୍ଦ୍ରମାବଦନ ଯାଇଛି ଶୁଖି) ମିଛେ ବୋଲେ ବସ ବସ ।



୧ । ତତଲଖଇରେ ଘିଅ; ତତା କୁଟିଦେବ ମନକୁ ଦୁହିଁ, ଝଟକ ଦଶିବ ଦେହ ।
[ଢଗ]

୨ । ତତା ଝଡ଼କା, ଦେ ଟଆଁ; ଏଥିପାଇଁ(ପେଇଁ) ହାଟ ବସିଛୁ କଅଁ (ଏତେ ନାଟ କଅଁ) ? [ପୂର୍ବେ ଲୁହାଝଡ଼କାକୁ ନିଆଁରେ ତତାଇ ଦୁଷ୍ଟ ପିଲଙ୍କୁ ବା ଦୁଷ୍ଟା ବଧୂଙ୍କୁ ଟଆଁ ମାରି ଦଣ୍ଡ ଦେବାର ରୀତି ପ୍ରତି ବ୍ୟଙ୍ଗ]

୩ । ତତେ କୋଉ ବୋପା (ଗୋସେଇଁ) ସାହା ହବ ? ଦେଖିବା ଦେଖି !

[ଧମକାଣ; ମୋର ବିରକ୍ତିଭାଜନ ହେବାରୁ ମୋ ଡରରେ ତତେ କେହୁ ଆଶ୍ରୟ ଦେବେ ନାହିଁ]

୪ । ତତେ ଯେ ମାଇଲା ତୁ ତାକୁ ନ ମାର, ତାକୁ ମାରୁଥି(ଥା)ବ ଆନ; ଦେଖୁଥି(ଥା)ବ ତୋର ଦୁଇ (ଦି) ନୟନ, ଶୁଣୁଥି(ଥା)ବ ଦୁଇ (ଦି) କାନ । [ଢଗ]

୫ । ତନ୍ତ୍ର ନା ତଳାଭଣା ? ଅନ୍ଧ ନା ଅନ୍ଧାରକଣା ? [ବ୍ୟଙ୍ଗ]

୬ । ତପ କରିଥିଲା କୁଳମଣିଆ; ପାଇଲା ଚମ୍ପକ ଗୋରୀ କନିଆ ।
[କୁଳମଣି ନାମକ ବିବାହିତ ବାଳକ ପ୍ରତି ବ୍ୟଙ୍ଗ]

୭ । ତପ ଜପ କରେ ଯେ, ପୋକଫୁଟି ମରେ ସେ । [ବ୍ୟଙ୍ଗ]

୮ । ତବତ(ତତଲ)ଖଇରେ ଘି ! (ତୋ)ବୋପା ଖାଇଥିଲା କି ? [ବ୍ୟଙ୍ଗ]

୯ । ତରଭୁଜ ! ପୂରୁବ କଥାକୁ ମନେ ହେଜ; ପାଦୋର ଗଲଣି କୁଣ୍ଡାବୋଝ, କୁଲ୍ ଦକା ହେଲା ଗୃତର; ମାଆ ବିକୁଥିଲା କୁଲ୍ ଟୋକେଇ, ବାପ ବିକୁଥିଲା ପତର ।
[ବ୍ୟଙ୍ଗ]

୧୦ । ତଳ (ତଳି) ହାତରେ ମୁଁ ନେବି; ଉପର ହାତରେ ତମେ ଦବ ।
[ଦାତା ପ୍ରତି ବ୍ୟଙ୍ଗୋକ୍ତି]

୧୧ । ତଳତଳିଆ ତୋରା(ତା)ଣି ପାଣି, ହେଥିରୁ ହଡ ଗୋଟି ଗୋଟି ନଉଛୁ ଗୁଣି ।
[ବ୍ୟଙ୍ଗ]

୧୨ । ତଳେ ତଳେ ଯାଏ (ଯାଇ) ତଳଗଡ଼ଣା, ଉପରେ ମରଇ (ଧର୍ମି ମରୁଥାଏ) ସାଇପଡ଼ିଶା । [ବ୍ୟଙ୍ଗ]

୧୩ । ତଳେ ଥୋ (ଥୁଅ), ଗୋଡ଼ ଧୋ (ଧୁଅ) ।

୧୪ । ତଳ ବରଡ଼ା ଖସୁଛି, ମଝି (ଉପର) ବରଡ଼ା ହସୁଛି; ଉପର (ମଝି) ବରଡ଼ା ଥାଇ ବୋଇଲା (କହିଲା), ତେ. (ମୋ) ଦିନ କାଲି ଆସୁଛି । [ବ୍ୟଙ୍ଗ]

୧୫ । ତାଇଲାକୁ ମାଇଲା !

[ଯେଉଁ କାମକୁ ଉପରଠାଉରିଆ କରି କହ୍ନଯାଏ; କମ୍ବା ଲୁହା ତାଉ ହେବା ସମୟରେ ତହିଁ ଉପରେ ହାତୁଡ଼ରେ ମାଡ ଦେଲେ ତାହା ଯେପରି ଫଳପ୍ରଦ ହୁଏ, ସେହିପରି କାର୍ଯ୍ୟ ପ୍ରତି]

୧୬ । ତାଇଲା ମାଇଲା କରିବ କାମ । [ବ୍ୟଙ୍ଗ]

୧୭ । ତ(ତ)ହିଁକି ଗୋଡ଼େଇ ଆଗ !

୧୮ । ତାକୁ ଦାରିଦ୍ର (ଦାରିଦ୍ର୍ୟ) ଘୋଟୁ । [ଅଭିଶାପ]

୧୯ । ତା କଥା ତାଠେଇଁ ଥାଉ; ମୋ କଥା ମତେ ଫେରେଇ ଦଉ । [ବ୍ୟଙ୍ଗ]

୨୦ । ତାକୁ (ତତେ) ଅଚନା (ଅଚହ୍ନା) ବ୍ୟାଧି ଘୋଟୁ । [ଅଭିଶାପ]

୨୧ । ତା କଥା ତାକୁ ଜଣା, ମିଛେ ବୋଲୁଥାଏ ମୋହର କଣା !

[ଗୃହିଣୀ ପ୍ରତି ବ୍ୟଙ୍ଗ]

୨୨ । ତାକ ! ନ ରଖେ ବାକ ।

୨୩ । ତା ମାୟା ତାକୁ ଜଣା ।

୨୪ । ତାକ ଗାଉଣାକୁ ନାକା ସ୍ୱର (ଘୋର) । [ବ୍ୟଙ୍ଗ]

୨୫ । ତା କଥା (ମାୟା) ନାରାୟଣଙ୍କୁ ଅଗୋଚର (ଗୋଚରେ) ।

୨୬ । ତା କଣ୍ଢେଇ ଗୁଣ ସେ କାହୁଁ ଛାଡ଼ିବ ? କଂସା ଗିନା (ଲୋଟା) ହେଇଛୁ କି ବଦଳି ପଡ଼ିବ ?

୨୭ । ତାଟିଆରେ ଦେଲି ଦହି; ବାସି ଧୋବଲୁଗା ପିନ୍ଧିବାପାଇଁ, ଧୋବଣୀ ସାଙ୍ଗରେ ଯିବି । [ବ୍ୟଙ୍ଗ]

୨୮ । ତାଟିଆରେ ଦେଲି ଭାତ; କଟପଟ ବାସି ପିନ୍ଧିବାପାଇଁ, ଧୋବା ସାଙ୍ଗେ ହେଲି ମିତ । [ବ୍ୟଙ୍ଗ]

୨୯ । ତା ଗାଣ୍ଡିରେ ବୋଝେ ଗୁହ; ସେ ଫେର୍ କଅଣ ପରକୁ (ମତେ) ଚିଅଁରୁଛି (ଖୁଣିଛି) ।

୩୦ । ତାଠେଇଁ ତଲେ ଉପ୍ରୋଧ ନାହିଁ ।

୩୧ । ତାତା ଥେୟା (ଧେୟା); ଯାହା କହୁଥିଲି ସେଇଆ (ସେୟା) (ନାଚ ନାଚ ଥେୟା) । [ବ୍ୟଙ୍ଗ]

୩୨ । ତା ଜନମ (ଜୀବନ) ଇ ଧିକ !

୩୩ । ତା ବାପ ମୋ ବାପ ଜୋଇଁ ଶ୍ୱଶୁର, ଦେଶ ଲୋକେ ବସି ବିଚାର କର, ଆଉ ନ ରହିବ ମୋହର ଘର, ଆସିଛି ନବାକୁ ତା ଦଅର ।

[ନଁାଦଆ; ମା କହୁଛି ଝିଅ ସମ୍ବନ୍ଧେ]

୩୪ । ଢାଳ (ଳେ). ଢୋକ୍‌ଲେ ବାଳ (ଳେ) । [ବ୍ୟଙ୍ଗ; ମିଳିଲେ ଖୁବ ମିଳିବ, ନ ମିଳିଲେ କିଛି ମିଳିବ ନାହିଁ, ଏପରି ସ୍ଥଳରେ]

୩୫ । ଢା ସୁନ୍ଦର ପଣ ଦେଖି ବାନ୍ତ ମାଡୁଛି (ମାଡ଼ଇ ବାନ୍ତି) । [ବ୍ୟଙ୍ଗ]

୩୬ । ତୋର୍ (ତାହାର. ତାର) ଦେଖି; ମୋର ଡେଉଁଛି (ଡେଇଁଲା) ଡାହାଣ ଆଖି । [ବ୍ୟଙ୍ଗ]

୩୭ । ଢଆରୁବାକୁ କେହି ନାହିଁ, ବେଶ ହଉଥାଏ ଘୁନ୍ଦମୁହାଁ । [ବ୍ୟଙ୍ଗ]

୩୮ । ଢନାଦଅଁଙ୍କର ରଥ; ଶରଧା ବାଲିରେ ବସିଲା ଡକ, କଲାବେଠିଅଙ୍କୁ ଡ଼ାକ । [ଢଗ]

୩୯ । ଢନବେଳେ ଢନ କଂସା ଖାଏ; ଲୋକେ (ଘଇତା) ପଚାରିଲେ ମୁଣ୍ଡ ଝୁଙ୍ଗାରୁ (ହଲଉ) ଥାଏ । [ବ୍ୟଙ୍ଗ]

୪୦ । ଢନ୍ଲୁଲ ମଞ୍ଚି ! ତୋ ପାଇଁ ହେଲେଣି କେତେ ଗଞ୍ଜି ।

୪୧ । ତୀର୍ଥକାକ ପରି ବସିଛି ଝାକ । [ବ୍ୟଙ୍ଗ; ତୀର୍ଥମାନଙ୍କରେ ଥିବା କୁଆମାନେ ଯାତ୍ରୀମାନେ ଉତ୍ସର୍ଗ କରି ପକାଇ ଦେବା ପଦାର୍ଥକୁ ଚାହିଁ ରହିବା ପରି]

୪୨ । ତୁକାର ପଦ ମୁଁ ଦହିବ ନାହିଁ, କି ତାଟିକିଲା ମାଡ଼ ଖାଇବ ନାହିଁ, କି ଫଣ୍ଡିଆ ପଥୁରି ଧୋଇବ ନାହିଁ ।

୪୩ । ତୁଚ୍ଛା କୁ ଏତେ, ମୁହଁ ନାହିଁ ଗୋଡ଼ କଚୁଡ଼ି କେତେ, ପିତଳ ଗୁଣାକୁ ନାକ ଝାଉଁ ଝାଉଁ, ସୁନାଗୁଣା ହେଲେ ହୁଅନ୍ତୁ (ନାଚନ୍ତୁ, ଦେଖାନ୍ତୁ) କେତେ । [ବ୍ୟଙ୍ଗ]

୪୪ । ତୀର୍ଥକାକ, ଛିନ୍ନ ବିଲୁଆ । [ଗାଳି]

୪୫ । ତୁଚ୍ଛାକୁ ଏ ପରିପରା; କୁଣ୍ଡାପିଠାପାଇ ବାଳ ଧରାଧରି, ଭୁଟୁ ନାହିଁ ବରବସ । [ବ୍ୟଙ୍ଗ]

୪୬ । ତୁଚ୍ଛାକୁ ଖାଲି, ତୁଚ୍ଛାଖତ ଲାଗି ପଡ଼ୁଛି ଘାଲି । [ଢଗ]

୪୭ । ତୁଚ୍ଛାକୁ ଛୁଣ୍ଡି (ଡ଼ି) ଯାଉଛି, ପାଳଦଉଡ଼ିଆ ଘଇତା ଦେଖି ଆମ୍ଭା (ସାହା) ଉଡ଼ି ଯାଉଛି । [ଢଗ]

୪୮ । ତୁଚ୍ଛାକୁ ତୁଚ୍ଛା; ତୁଚ୍ଛା କାଞ୍ଜିପାଣି ମନ ମୁରୁଛା ।

୪୯ । ତୁଚ୍ଛା କଥା; ତୁଚ୍ଛା କଥାରେ ଏଡ଼େ ହୁନସ୍ତା ।

୫୦ । ତୁଚ୍ଛାକୁ ରଙ୍କୁଣି ଫୁଲୁଛି; ଗୋବର ଗୋଡ଼କୁ ଲୁହା ସିକୁଳି. ଗାଆଁ (ଘର, ଦାଣ୍ଡ) ଘୁରିପାଖ ବୁଲୁଛି । [ବ୍ୟଙ୍ଗ]

୫୧ । ତୁଚ୍ଛାକୁ ମଲି, ଛୁଣ୍ଡା କନା (ଚିରା) ଯାକ ଗଣ୍ଠି ରି କଲି; ଦାଣ୍ଡେ ଦାଣ୍ଡେ (ବାଟେ ବାଟେ) ଘୁଲିଗଲି; କେହି ନ ବୋଇଲେ (ବୋଇଲି) ଆସ ଅସ, କେହି ନ ବୋଇଲି (ଲେ) ବସ ବୋଲି ।

୫୨ । ତୁଚ୍ଛାକୁ ସାଙ୍ଗେ; ପାଳଜର କଲା ଗଣ୍ଡେଇ ଖାଇ ।

୫୩ । ତୁଚ୍ଛାକୁ ସୁ ସା; ଲୁଣ ପଡ଼ିଲେ ଚଉଦପା, ତୁଣ ହେଲେ ଅଣ୍ଟଉଛି କାଏ ?

୫୪ । ତୁଚ୍ଛା ଭାତ; ତୁଚ୍ଛା ଭାତକୁ ଜଗନ୍ନାଥ ।

୫୫ । ତୁଚ୍ଛାପୁଆ(ହା)ଗ, ତୁଚ୍ଛାପୁଆଗରେ ଏଡ଼ିକ ଘାଗ (ରଗ) ।

୫୬ । ତୁ ଉପରହାତରେ ଦବୁ; ମୁଁ ତଳ(ଲ)ହାତରେ ନେବି ।

୫୭ । ତୁ ଖାଉଥାଉ (ଖାଉଛୁ) ତୋର ଭାତ; ମୋର କଆଁ ଗାଳରେ ହାତ ?
[ବ୍ୟଙ୍ଗ]

୫୮ । ତୁ ଚନ୍ଦ୍ରବାଡ଼ରେ ଯା ! [ଅଭିଶାପ]

୫୯ । ତୁ କହୁଥା ମୁଁ ସହୁଥାଏଁ; ତୁ ଖାଉଥା ମୁଁ ଗୁହିଁଥାଏଁ । [ବ୍ୟଙ୍ଗ]

୬୦ । ତୁ ଡାଲେ ବୁଲିଲେ ମୁଁ ପତରେ ପତରେ ଡେଇଁବ (ବୁଲିବ) ।

୬୧ । ତୁଠ (ତୋଠ) ନିରମଳ, ପାଣି ଗଙ୍ଗାଜଳ, ମୁଗୁନିପଥର ପଡ଼ିଛି; କେତେ ଘଣ୍ଟି ଘଣ୍ଟି ମାଜି ହୋଇ ନୌ ସୁନ୍ଦରୀ; ତୋ ପାଇଁ ନାଗର (ଟୋକିଆ, ପୁରୁଷ, କାଳିଆ) ଝୁରୁଛି ।

୬୨ । ତୁଣ୍ଡପୋଡ଼ା ! ଏଇକଥା ଲାଗି ଘରଛଡ଼ା (କରଛଡ଼ା) ।

୬୩ । ତୁଣ୍ଡପୋଡ଼ା ! ତତେ କିଏ କଲା କୁହୁକ ମନ୍ତର, ମତେ କିଏ କଲା ମୁହଁମୋଡ଼ା ।

୬୪ । ତୁଣ୍ଡପୋଡ଼ା; ତତେ ଯେ କରିଛି ବାରଦୁଆର, ମତେ ସେହି କଲା ଘର (କୁଳ) ଛଡ଼ା ।

୬୫ । ତୁଣ୍ଡସୁଆଦରେ ଖାଇଲି ଗୁଡ଼, ହଗି ଧାଇଁଥାଏ ଲୁଡ଼୍‌ଲୁଡ଼୍ । [ବ୍ୟଙ୍ଗ]

୬୬ । ତୁଣ୍ଡ ନରେ(ନେ)ନ୍ଦ୍ର ପିଠି ଅରକ୍ଷିତ ।

୬୭ । ତୁଣ୍ଡଶୁଙ୍ଘେଇ ଯାଉଥାଅ, ଭାଇ ବୋହୂ ହେ ! ଆଡ଼େଇ ଯାଅ ।

୬୮ । ତୁଟଣ୍ଡେ(ଣ୍ଡୋ)ଇଟାଏ, ମିଛେରେ ବୋଲିବେ କାଣ୍ଡେ(ଣ୍ଡୋ)ଇଟାଏ ।

୬୯ । ତୁ ତ ନୋହୁ; ତୁ କାହିଁପାଇଁ ଦହକୁ ନଉ । [ବ୍ୟଙ୍ଗ]

୭୦ । ତୁ ଦଉଥିବୁ (ଦେଉଥିବୁ), ମୁଁ ଖାଉଥେବି(ଥିବି), ତୋର ସୁନ୍ଦର ବଦନ ଗୁହଁ ଥେ(ଥି)ବି; ତୁ ନ ଦବୁ କି ମୁଁ ନ ଖାଇବି, ତୋର ଫଲଫଲା (ଭରୁକୁଣ୍ଡା) ମୁହଁ ନ ଗୁହିଁବି । [ବ୍ୟଙ୍ଗ]

୭୧ । ତୁ ଦେଖେଇଲୁ କାର୍ତ୍ତିକ ପୁଷ୍ଟା, ମୁଁ ଦେଖେଇଲି ଲଉ; ମୋ ଘରେ ଯୋଗିଁ ଗ୍ରେର ପଶିଛି, ଯେ ମୋହର ଆଗରେ ଯାଉ । [ବ୍ୟଙ୍ଗ]

୭୨ । ତୁ କୋଉ ଗାଡ଼କୁ (ଚୂଲିକି) ଯିବୁ ? ମୁଁ ଦେଖିବି !
[ଧମକାଣ; ତୁ କାହା ପାଖେ ଆଶ୍ରୟ ନେବୁ ମୁଁ ଦେଖିବି, ଅର୍ଥାତ୍ ଶେଷକୁ ମୋ ଆଶ୍ରୟକୁ ଆସିବୁ]

୭୩ । ତୁ ବେହୁଦ୍ଦ'କୁ ମୁଁ ବେହୁଦ୍ଦା, ବୋହୁ କରୁ (ନାଚୁ) ଥାଏ ଥେଇ ଥେଇଗ୍ଯା ।

୭୪ । ତୁ ଫେର୍ ମୋ ଗୋଡ଼ତଳକୁ ଆସିବୁ ଯେ ।

[ଧମକାଣ; ଶେଷରେ ତୁ ମୋର ଶରଣାପନ୍ନ ହେବୁ]

୭୫ । ତୁ ମାର ନା; ମୁଁ ମଲିଣି ।

୭୬ । ତୁମର ଆମର ଦାଙ୍ଗୀ; ତୁମେ ଧଣଥବ ଳେଞ୍ଜନପଡର (ବଳଦ ଲଙ୍ଗୁଡ଼, ଲଙ୍ଗଲକଣ୍ଠି, ପାଞ୍ଚଣବୋଡ଼ି) ଆମେ ଧଣେବୁଁ ପାଞ୍ଚି । [ଡଗ]

୭୭ । ତୁମର ଯାନ୍ଧିରେ(କି) ମନ; ମୁଁ ତାହା ଜାଣେ ହେ ଧନ ।

୭୮ । ତୁ ମତେ କଲୁ ଦର୍ପେ ଜାତ, ସ୍ୱଭାବ ଛାଡ଼ିବ କେମନ୍ତ ? [ବ୍ୟଙ୍ଗ]

୭୯ । ତୁମେ ଗୋଡ଼ ଯେନ (ଘିନ) ପେଲ୍ ଦ୍ୱେଲେ, ମୁଁ ମୁଣ୍ଡ ଯେନ (ଘିନ) ପଶିବି ।

୮୦ । ତୁ ଯେତେ ବୋଲୁଥିବୁ ବେ ଲ୍, ମୋ ଦାନ୍ତହାଯାକଇ ପୋଲ୍ । [ବ୍ୟଙ୍ଗ]

୮୧ । ତୁ ଯେତେ ମାଠୁଥିବୁ ମାଠ୍, ମୁଁ ସେଇ ଦରପୋଡ଼ା କାଠ୍ । [ବ୍ୟଙ୍ଗ]

୮୨ । ତୁ ତ ମୁରୁଝା ମୁଁ ତ ମୁରୁଝା (ତୁ ମୁରୁଝାକ ମୁଁ ମୁରୁଝା), ଶେଯ (ହେଁସ) କାହାପାଇଁ ଧୋଇବା ?

୮୩ । ତୁ ଘଣ୍ଡୀ କ ମୁଁ ଘଣ୍ଡୀ, କଅାଁ ଧୋଇବା ପଥୁରଣ୍ଡି ?

୮୪ । ତୁଳସୀମାଳ; ଭିତରେ ଭିତରେ ଦଳସୁତର, ବାହାରେ ଲଗିଛୁ କଳ ।

୮୫ । ତୁ ଯାଅ ତୋ ବାଟେ, ମୁଁ ପଶେ (ଥାଏଁ, ରହେ) ମୋ ଗାତେ ଫାଟେ) ।

୮୬ । ତୁ ଗାତକୁ ହେଲୁ ନାହିଁ, କ ଚୂଲ୍ଲକୁ ହେଲୁ ନାହିଁ । [ମାଇପଙ୍କ ଗାଳି]

୮୭ । ତୁ କୋଉ ମଣିଷରେ ଲେଖାରେ ?

୮୮ । ତୁ ମରୁ(ଧାଉଁ)ଥାଉ ଯାହାର ଯାଇଁ, ମୋହର ସେ ପସ୍ ମଟିଅାଁ ଭାଇ (ଗୁରୁ-ଗୋସେଇଁ । [ବ୍ୟଙ୍ଗ]

୮୯ । ତୁ ତ ମରୁଛୁ (ଧାଉଁଛୁ) ତୋହରପାଇଁ; ମତେ କଅାଁ କଦ ନାହିଁ । [ବ୍ୟଙ୍ଗ]

୯୦ । ତୁ ହାଡ଼ିକ ମୁଁ କେଲା, ତୋର ମୋର କାହିଁ ମେଳା ?

୯୧ । ତୁ ମୁରୁଘକୁ ମୁଁ ମୁରୁଘ, କଅାଁ ଧୋଇବା ଶେଯ କଡର ?

୯୨ । ତୁ ଦଉଡ଼ ଦଉଡ଼ ଯେତେ, ମୁଁ ଘୁଲ୍ ଘୁଲ୍ ସେତେ । [ବ୍ୟଙ୍ଗ]

୯୩ । ତୁଳସୀ (ତୁଳସୀ) ଚଉରା ମାଟି; ମତେ ଦେ(ଘି)ନ ଯେବେ କରବୁ ଘର, ପକା ଭାଇମୁଣ୍ଡ କାଟି । [ସ୍ତ୍ରୀର ଉପଦେଶ]

୯୪ । ତୁଳସୀ (ତୁଳସୀ) ଚଉରା ମାଟି; ବୋଉକୁ ମାଗିଲ୍ ବସୁଣିଟିଏ ଲେ, ଭାଉଜ ମୁହଁ ଦେଲେ ଛୁଟି, ମୋ ପ୍ରଭୁ ସେ । [କନ୍ୟାର ଅନୁଚନ୍ତା]

୯୫ । ତୁଳସୀ (ତୁଳସୀ) ରାଣୀ ! ଜାଣି ନ ଜାଣି ମୁଁ ଦଉଛୁ ପାଣି, ତୁ ନଉଥା ଟାଣି । [ତୁଳସୀଗଛରେ ପାଣି ଦେବାର ମନ୍ତ୍ରର ବ୍ୟଙ୍ଗ]

୯୬ । ତେଙ୍ଗଡ଼ାରେ ଦେଲି ଚ଼ାଉ; ଆଉ ଗୁରୁଜନ ରହନ୍ତୁ ବୋଉ ଲୋ, ଝିଉଳି ବୋଇଲି ଯାଉ; ମୋ ପ୍ରଭୁ ସେ । [ଶାଶୁଘରକୁ ଯାଉଥିବା କନ୍ୟାର ବାହୁନା]

୯୭ । ତେଙ୍ଗଡ଼ାରେ ଗଲି ବସ୍ତୁ; ମୋ ଧନ ବିଦେଶ କରି ଯାଇଛନ୍ତି (ଧନ କରିଛନ୍ତି ନୂଆ ଗୃକରି ଲୋ), ପଲଙ୍କ ପଡ଼ିଛି ଗୁଚ୍ଛା । [ବିରହିଣୀର ଅନୁଚନ୍ତା]

୯୮ । ତେଲୁଣୀରେ କଲି ପିଠା; ସୁଆଦ ଗୃଖିଲି ଖାଇଦେଲି ସବୁ, ଲଗିଲି ତ ଖରି ମିଠା (ମୋଠେଇଁ ଲଗିବ ବଟା) । [ଢଗ]

୯୯ । ତେଲସାଉଁଳି; ଘଡ଼ିକ (ପଲାକ ଉପରେ ଘଡ଼ିଏ (ପଲାଏ) ଢାଳି [ବ୍ୟଙ୍ଗ] ।

୧୦୦ । ତେଲରେ ! ଯା ଯା ଯା ପେଲରେ । [ତେଲ ପ୍ରତି ବ୍ୟଙ୍ଗ]

୧୦୧ । ତେଲିଆ ସାରୁ, ମନ ମରିଗଲି ଯେହ୍ନ ପହରୁ । [ବ୍ୟଙ୍ଗ]

୧୦୨ । ତୋ ଉପରେ ବ୍ରଧାଚଡ଼ିକ ପଡ଼ୁ ! [ଅଭିଶାପ]

୧୦୩ । ତୋତେ ଚନ୍ଦ୍ରବାଣ୍ଡ ଖାଉ । [ଅଭିଶାପ]

୧୦୪ । ତୋ କଥାତକ ତୁ ନେ; ମୋ କଥା ମତେ ଫେରେଇ ଦେ ।

୧୦୫ । ତୋ ତହୁଁକ ମୋର ଅଧିକ ହେଉ; ତୋ ଦରବକୁ ମୋର ଅଣ (ଆଶା) ନ ଥାଉ । [ମାଇପଙ୍କ ସ୍ୱୀପ୍ସୁ ମଙ୍ଗଳକାମନା]

୧୦୬ । ତୋତେ ଯେ ମାଇଲା ତୁ ତାକୁ ନ ମାର ତାକୁ ମାରୁଥିବ ଆନ, ଦେଖୁଥିବ ତୋର ଦି ନୟନ ଶୁଣୁଥିବ ଦୁଇ କାନ । [ଅଭିଶାପ]

୧୦୭ । ତୋ (ତ) ତେ ଆଶ୍ରା (ଅଣ) କଲି ମୂଳିଆ ନ କଲି ବାଡ଼କପା ଝଣ୍ଟି ମଲି, ତୋ (ତ)ତେ ଆଶ କଲି ଘଇତା ନ କଲି ବଳବସ୍ତ ହୁଁ ଗଲି !

୧୦୮ । ତୋ ବାଳରେ କୁଣ୍ଡ ନ କଅଁଳୁ । [ଅଭିଶାପ]

୧୦୯ । ତୋଭି ମାଛ ଥାଇଁ ବୋଇଲି ମୋ ମୁହଁଟା ବଳତା; ମୋର ମକା ମାରି ନଉଥାଏ ବାଡ଼ିଆଡ଼େ ଯେଉଁ ନଳତା । [ମାଛ ଗୀତ]

୧୧୦ । ତୋ ଡିହରେ ବିଲୁଆ ତେଉଁ । [ଅଭିଶାପ; ତୋ ଡିହ ଶ୍ମଶାନ ହେଉ]

୧୧୧ । ତୋ ଦୁଆର ମୁହଁରେ ଜଣ୍ଟା ଛଟା ହେଉ । [ଅଭିଶାପ; ତୋର ବଂଶ ଲୋପ ହେଉ]

୧୧୨ । ତୋ (ତ)ତେ ମାଇବା ଲୋକ ଗୋପରେ ବଢ଼ୁଛି । [ଅଭିଶାପ]

୧୧୩ । ତୋ(ତ)ତେ ଯେ ମାରିବ ସେ ଗୋପନଗରେ ବଢ଼ୁଛି ।

୧୧୪ । ତୋ ନାଁ ଜନପାଙ୍କ୍ତିରୁ ପୋଛି ହେଉ । [ଅଭିଶାପ; ତୁ ମର]

୧୧୫ । ତୋ ପାଇଁ ମୁଁ; ମୋ ପାଇଁ ତୁ । [ପରସ୍ପରର ପରସ୍ପର ସହାୟ]

୧୧୬ । ତୋ ପାଇଁକି ମୁଁ; ମୋ ପାଇଁକି କେହି ନାହିଁ । [ବ୍ୟଙ୍ଗ]

୧୧୭ । ତୋ ଦୁଖ ଦେଖି, ଥନ ଥନ ହୁଏ ମୋହର ଆଖି । [ବ୍ୟଙ୍ଗ]

୧୧୮ । ତୋ ପୁଅ ନାଁ କାଠକଣ୍ଢେଇ, ମୋ ପୁଅ ନାଁ ନାର; ତୋ ଦୁଆରେ ଗଣ୍ଡେଇ (ନଡ଼ିଆ) ଗଛ, ମୋ ଦୁଆରେ ଗ୍ରୁଇ । [ଢଗ]

୧୧୯ । ତୋ ମନ ଭଳେ ଫଳୁ । [ବ୍ୟଙ୍ଗ; ଆଶୀର୍ବାଦ]

୧୨୦ । ତୋ ମାଆର ତୁ ଏକଇ ବଳା, ଘେଣ୍ଟୁ ତୁ ଅଇଲୁ ଢେଣିକ ଫଳା । [ବିଗୁ ଦେଖିଲେ କହନ୍ତି]

୧୨୧ । ତୋ ମାଅ କଅଣ ଜନ୍ମକାଳେ ତୋଠେଇଁ ଲୁଣପାଣି ପକେଇ ନ ଥିଲି କି ? [ବ୍ୟଙ୍ଗ; ନିର୍ଲଜ୍ଜ ବ୍ୟକ୍ତି ପ୍ରତି]

୧୨୨ । ତୋ ଲେଖାରେ ତୋ ମାଆ ତତେ ଦଶମାସିଆ କରି ଅନ୍ତୁଡ଼ିଶାଳରେ ବେଇଥିଲି, ମୋ ମା ମତେ ଛଅ (ଆଠ) ମାସିଆ କରି କଳାମୁହଁରେ ଗନ୍ଧର ପକେଇଥିଲି । [ବ୍ୟଙ୍ଗ]

୧୨୩ । ତୋ ମାଆ ମତେ ଯାହା କଲି; ଗାଲ ତୋଡ଼ି ତୋଡ଼ି ଘାଆ କଲି ।

୧୨୪ । ତୋ ମଲକଡ଼ି ମୋ ମଲକଡ଼ି ପେଡ଼ିକ ପକାଇ ଦବା; ପୁଅ ବାହାଘର ଝିଅ ବାହାଘର ଜେମା ଯଉତୁକ ଦବା । [ଢଗ]

୧୨୫ । ତୋ ମୁହଁରେ (ତୁଣ୍ଡରେ) ଫୁଲ ଚନ୍ଦନ । [ଆଶୀର୍ବାଦ; ତୋ କଥା ସତ୍ୟ ହେଉ]

୧୨୬ । ତୋ ମୁଣ୍ଡରେ ଚଡ଼କ ପଡ଼ୁ । [ଅଭିଶାପ]

୧୨୭ । ତୋ ଲେଖାରେ ଇନ୍ଦ୍ର ଚନ୍ଦ୍ର (ଚନ୍ଦ୍ର ସୂର୍ଯ୍ୟ) ନାହାନ୍ତି ! [କ୍ରୋଧବଚନ]

୧୨୮ । ତୋର ଯାଉ, ମୋର ଯାଉ, କାହାରି କଥା କେହି ନ କହୁ । [ଦୁହେଁ ଦୁହିଁଙ୍କ କଥା ଭୁଲିଯିବା]

୧୨୯ । ତୋର ସାତ ପୁତ, ପର ପୁତ ଦେଖିଲେ କାଠଭୁତ ।

୧୩୦ । ତୋରା (ଡା)ଣି ଯାଙ୍କୁ ନ ଥାଏ ଲୁଣ, ମିଠେଇ ବୋଲୁଥାଏ (କହୁଥାଏ) ତିନି ଗୁଣ । [ବ୍ୟଙ୍ଗ]

୧୩୧ । ତୋ ଶେରସ୍ତ ଖ ତୋର ନ ହେଲା ମତେ କାହିଁପାଇଁ କୁହୁ ? ମୋ ଠେଇଁ କଅଁ ମାନ (କୋରୋଧ) କରି, ଲୁଗା କାଢ଼ିଦେଇ ବସୁ (ମୁହଁକୁ ଅଣ୍ଟାରେ ଖୋସୁ) ! [ରକ୍ଷିତାସ୍ତ୍ରୀର ବିବାହିତ ସ୍ତ୍ରୀ ପ୍ରତି ଉକ୍ତି]

୧୩୨ । ତୋ ଶ୍ରାଦ୍ଧପତ୍ରରେ ଗାଈ କାଟ । [ପୁର୍ବକାଳ ପ୍ରଚଳିତ ଅଭିଶାପ]

୧୩୩ । ତ୍ରିନାଥମେଳା ପଡ଼ୁକୁ ଥାଉ, ଅଗେ (ପଡ଼ିଲେ) ଗଞ୍ଜେଇ ମଳା ହଉ । [ବ୍ୟଙ୍ଗ]

୧୩୪ । ତ୍ରିମୁଣ୍ଡି ଧରି ବଜେ କରେଇ ନେଲି । [ବ୍ୟଙ୍ଗବଚନ; ଚୁଟି ଧରି ଘୋଷାରି ନେବା]



# ( ଥ )

୧ । ଥଲଥଲଆ ଦହି, ଅନ୍ନଲପେଟୀ ଖାଇଦଉଚ, ଗୃହିଣି ଆଭୁଲାମୁହାଁ [ବ୍ୟଙ୍ଗ]

୨ । ଥାଉ ଲକ୍ଷ୍ମି, ମୋ ବାଣ ଅଣ (ବାଣ ଆଗେ ଆଣ) । [ବ୍ୟଙ୍ଗ]

୩ । ଥ କୁଳଟାକୁ ଆକୁଳଟାଏ, ବହି (ବଂଧାଡା) ଝଞ୍ଜିଛୁ (ଝଞ୍ଜିଲ) ଏକାଠାଏ ! [ବ୍ୟଙ୍ଗ; ସ୍ଥୂଳକାୟ ଦମ୍ପତ୍ତିଙ୍କ ପ୍ରତି]

୪ । ଥାନ୍ତ ଶଗ୍ୱକନା ଢାଉ ମଠ, ଏଥିପେଇଁ କଥାଁ କାଠ କାଠ । [ବ୍ୟଙ୍ଗ; ଯେଉଁ ବ୍ୟକ୍ତି ଅଳ୍ପ ମୂଲ୍ୟର ବସ୍ତୁ ରଖି ବହୁ ମୂଲ୍ୟ ବସ୍ତୁ ଫୋପାଡ଼ି ଦିଏ]

୫ । ଥାଳି ଉପରେ ଥାଳ, ଚମ୍ପାଫୁଲଅଙ୍କୁ ଭଲ ଦାଜଛୁ, ପଇତା ଓ (ଉ)ପରେ ମାଳ ।

୬ । ଥାଳି ଥାଳ (ଥାଳ କି ଥାଳି) ମିଟଠଇ; ଗରଜବେଳେ ତ ବୁଦ୍ଧା ଲଗିଛୁ, କେତେ ପଗ୍ଗୃରୁଛୁ ନଠେଇ । [ବ୍ୟଙ୍ଗ]

୭ । ଥାଳ ଭିତରେ ଥାଳଆ, ବଇଁଶୀ ବଜେଇ ଉଠେଇ ଆଣିଲ, ଶେଯରୁ କାଇଁଚ ମାଳଆ । [ବ୍ୟଙ୍ଗ]

୮ । ଥାଳ ଉପରେ କଂସା, କୃଷ୍ଣ କେଉଟୁଣୀ ଚୂଡ଼ା କୁଟେ, ଅଷ୍ଟାଇନାମର (କରୁଛୁ) ହିଂସା । [ବ୍ୟଙ୍ଗ]

୯ । ଥିରତୋଡ଼ାଣୀ, ବେଦ (ଠାଆ)ରେ ବସିଲେ ଢନ ପଗ୍ୱଣି । [ବ୍ୟଙ୍ଗ]

୧୦ । ଥିର୍ ଥିର (ଥିର ଥିର) ଗୃଲବୁ ବାଟ, ଏ ଚଇଜ (ଭୂଇଁ, କଆଗରେ ବହୁତ (ଖାଇ) ଫାଟ । [ଖରାରେ ଫାଟି ଯାଇଥିବା ଶୁଖିଲ ମଟାଳ ମାଟିରେ ଗୃଲବା ସମ୍ବନ୍ଧେ ବ୍ୟଙ୍ଗ]

୧୧ । ଥୁଆଥୋଇ ବାହାକୁ ମନ୍ତ ଖୋଜୁଛୁ (ଖୋଜା ଯାଉଛୁ) ? [ଶୂଦ୍ରମାନଙ୍କ ଦୁତୀୟ ବିବାହ ପ୍ରଥା ପ୍ରତି ବ୍ୟଙ୍ଗ]

୧୨ । ଥେଇଥେଇ ହୋଇ (ଥେଇକ ଥେଇକ) ଲଗିଚ ନାଟ । [ବ୍ୟଙ୍ଗ]

୧୩ । ଥୋଇଲ ମାଇପର ଯାଉଁଲ ଗୁଣା, ବେଶ୍ୟାମାଇପର ଗାଣ୍ଡିରେ କନା (ବେଶ୍ୟା-ମାଇପକୁ ଚଗ୍ଗ କନା) । [ବିବାହିତାସ୍ତ୍ରୀଙ୍କୁ ଅନାଦର କରି ରକ୍ଷିତାକୁ ଆଦର କରିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୧୪ । ଥୋଡ଼ ବଡ଼ି ଝଡ଼ା, ଝଡ଼ା ବଡ଼ି ଥୋଡ଼, ବଡ ଝଡ଼ା ଥୋଡ଼ ! [ବ୍ୟଙ୍ଗ; ଜଣକ ଘରେ ଥୋଡ଼ ଅର୍ଥାତ୍ କଦଳୀ ଭଣ୍ଡା, ବଡ଼ି ଓ ଝଡ଼ା ଦେଇ ଗୋଟିଏ ତିଅଣ ହୋଇଥିଲ; ତାକୁ ପଗ୍ଗୃରିବାରୁ ସେ ଉପାଦାନମାନଙ୍କର ସ୍ଥାନ ପରିବର୍ତ୍ତନ କରି ତିନ ପ୍ରକାର ଉଚ୍ଚାରଣ ହୋଇଥିବାର କହିଲ]

୧୫ । ଥୋଇଲ ମାଇପ ଅଇଲା ଧାଇଁ (ଆପେ ଧଉଡ଼) । [ବ୍ୟଙ୍ଗ]
୧୬ । ଥୋଡ଼ ଧର ଦାଡ଼ି ଦେଲ ହଲେଇ (ଓପାଡ଼) । [ବୃଦ୍ଧ ବୟସରେ ଋଷିତା ସ୍ତ୍ରୀଠାରୁ ଅପମାନ ବା ଲାଞ୍ଛନା ପାଇବା ପୁରୁଷ ପ୍ରତି ବ୍ୟଙ୍ଗ]
୧୭ । ଥୋ କଉଡ଼ି, ଧୋ ଗୋଡ଼ । [ବ୍ୟଙ୍ଗ, ଆଗକର ଅର୍ଥ ଦେ, ପଛେ ମୋ ଘରେ ରହିବୁ]
୧୮ । ଥୋଡ଼ିଆ ବଳଦ ଉଠରେ, ଥୋଇଲି ପଲଣ ଫାଟିରେ ।
[ଭଗବତ କୃତ୍ୟର ବ୍ୟଙ୍ଗାତ୍ମକ ବର୍ଣ୍ଣ]



# ( ଦ )

୧ । ଦଇତାପତି, ଜଗନ୍ନାଥଙ୍କର ବଶ୍ୱାହୀ ଅଛି (ବଡ଼ଠାକୁରଙ୍କ ଅଙ୍ଗ ଅଟନ୍ତି) । [ଜଗନ୍ନାଥଙ୍କ ନୂଆ କଳେବର ସମୟରେ ପୁରୁଣା ଘଟ ମଧ୍ୟରୁ ସାର ପଦାର୍ଥ ବା ବ୍ରହ୍ମାକୁ କାଢ଼ି ନୂଆ କଳେବରରେ ରଖିବା ସେବକଙ୍କୁ ଦଇତାପତି ବୋଲାଯାଏ]
୨ । ଦଇବ କଲା ! ଟୋକୀ କରମକୁ ପାକୁଆ ବୁଢ଼ା (ବୁଢ଼ା ଝଙ୍କିଲା) ।
[ବାଳିକା ବୃଦ୍ଧକୁ ବିବାହ ସମ୍ବନ୍ଧେ ବ୍ୟଙ୍ଗ]
୩ । ଦଇବ କି କଲା ! କୁଆ (କାଉ) ବେକରେ ପୋହଳା (ମାଳ) ଦେଲା ।
[କୃଷ୍ଣବର୍ଣ୍ଣ ବର ଗୋରୀ କନ୍ୟାକୁ ବିବାହ କରିବା ସମ୍ବନ୍ଧେ ବ୍ୟଙ୍ଗ]
୪ । ଦଇବ (ବ) !ଛଡ଼ା ର ଘରଭଙ୍ଗା କୁଳବୁଡ଼ା (ପେ ଘେ ବୁଡ଼ା କୁଳ ) । [ଗାଳି]
୫ । ଦଇବ (ବ)ଦଣ୍ଡ, କଡ଼ାକ ଦୋଷକୁ କାହାଣେ ଦଣ୍ଡ ( ଲଘୁ ପାପପାଇଁ ଗୁରୁ ଦଣ୍ଡ) ।
୬ । ଦଇବ ! ଏହା କିଏ ଦହ୍ନ ସହିବ ! ସୁନାଫୁଲ ପରି ଝିଅ ଜନ୍ମ କଲି, ପର ପୁଅ ସେନ ରହିବ । [ବ୍ୟଙ୍ଗ]
୭ । ଦଇବ ! ଏହା କି ଏ ଦହ୍ନ ସହିବ ! ଝିଅ କରି (ପାଳି)ଥିଲି ସୋନାଫୁଲ ପରି, ପର ପୁଅ ସିନା ରହିବ ? [ବ୍ୟଙ୍ଗ]
୮ । ଦଇବ ! ଦହି (ଦୁଧ) ଭାତ କିଏ ଖାଇବ । ସୁବା (ଭେଣ୍ଡା) ପୁରୁଷକୁ ବୁ... ପରଷିଲା (ଦରବୁଢ଼ାଟାକୁ ଟୋକୀ ପରଷିଲା), ସ୍ତ୍ରୀ କି ଏ ଦହ୍ନ ସହିବ ।
[ଅସମବୟସ୍କଙ୍କ ମଧ୍ୟରେ ବିବାହ ପ୍ରତି ବ୍ୟଙ୍ଗ]
୯ । ଦଉଡ଼ି ନୁହେଁ କି ଦଉଡ଼ା ନୁହେଁ, ବଳବଳକା । [ବ୍ୟଙ୍ଗ]
୧୦ । ଦଢ଼ ନୁହେଁ କି ଟଗ ନୁହେଁ, ଦଳବଳକା । [ବ୍ୟଙ୍ଗ]

୧୧ । ଦଉଡ଼ି ଦେ (ଦେ)ବକୁ କଠ ଧମକା, ଦଉଡ଼ି ହାଟରେ କାନ୍ଧିଟି ଦେଖା । [ବ୍ୟଙ୍ଗ]

୧୨ । ଦକ ପଶିଲା ଗ୍ରୁଡରେ; କଦ ନ ମାଡ଼ିଲା ଗୃହରେ । [ବ୍ୟଙ୍ଗ]

୧୩ । ଦକ୍ଷିଣ ଦୁଆର (ଦୁଆରିଆ) ଘର, ଯେ ନ ପଶିଲା ସେ ଦଶିଲା, କାହାକୁ କରିବ ପର । [ବ୍ୟଙ୍ଗ]

୧୪ । ଦକ୍ଷିଣି ଦାଣ୍ଡ ଭଲିଆ ବୋହୂ ଟିଏ ପାଇଛୁ । [ସୁନ୍ଦରୀ ଓ ସୁଶ୍ରୀ ବଧୂ]

୧୫ । ଦଦରା ଡଙ୍ଗା, ମଝି ନଈରେ ଦେଲା ଦଗା । [ବ୍ୟଙ୍ଗ]

୧୬ । ଦୟା କଲେ ଗ୍ରାମୁକରଣେ, ନଅଣ ଦାଣ୍ଡଙ୍କ କଉଡ଼ି ପଣେ (ପଣେ ବାହ୍ମଣଙ୍କ ହୃଦ୍ଦୃମ୍ଭ ମାଣେ) । [ବ୍ୟଙ୍ଗ]

୧୭ । ଦକ୍ଷିଣି ନାଟ, ଗୋଟି ପୁଅ ପିନ୍ଧା ବସିଛୁ (ଲାଗିଛୁ) ହାଟ ।
[ସଙ୍ଗୀତ ନାଟୁଆ ପିଲା ପ୍ରତି ବ୍ୟଙ୍ଗ]

୧୮ । ଦଦରା ବର ଓଳିଆ ! ଧୋବ ଲୁଗାପିନ୍ଧି ଦାଣ୍ଡରେ ଠିଆ, ଦନ୍ତେ ଦରବାରିଆ ।
[ବ୍ୟଙ୍ଗ]

୧୯ । ଦଦରା ହାଣ୍ଡି (ମାଠିଆ) ଭଳିଆ ପାଟିଟାଏ ପାଇଛୁ । [କର୍କଶ ସ୍ୱରବିଶିଷ୍ଟ ବ୍ୟକ୍ତି]

୨୦ । ଦରକାର ନାହିଁ ଯଉକାଉଁକୁ, ଲୋଡ଼ା ନାହିଁ ମୋର ବୁଢ଼ା ବରକୁ ।
[ବୃଦ୍ଧ ପୁରୁଷ ଯୁବତୀକୁ ବିବାହ କରିବା ସମ୍ବନ୍ଧେ ବ୍ୟଙ୍ଗ]

୨୧ । ଦଶମାହର ଗର୍ଭ ଗୋଟାଏ ବାମ୍ବୁରେ ଖଲାସ । [ବ୍ୟଙ୍ଗ; ବହ୍ୱାଡ଼ମ୍ବେ ଲଘୁକ୍ରିୟା]

୨୨ । ଦାଣ୍ଡକୁ ଗଲେ ତ ମାଇକିନା ନାହିଁ, ଘରଭିତରେ ହାତେ ଲମ୍ବରେ ଓଢଣା ପଡ଼ୁଛି (ପଡ଼ଇ) । [ବ୍ୟଙ୍ଗ]

୨୩ । ଦାଣ୍ଡ ଲୋକ ଦାଣ୍ଡେ ଦାଣ୍ଡେ ଯାଉ, ଘର କଥା ଘର ଭିତରେ ଥାଉ (ରହୁ) ।

୨୪ । ଦାଡାପଣକୁ ଭୂତ, ଦବା ନବାକୁ କଉଡ଼ାଏ ନାହିଁ, ଲଢ଼ିବାକୁ ମଜଭୂତ !

୨୫ । ଦାନି ! ନାଁ, ମୁଣ୍ଡକୁ ନ ପାଏ କାନି । [ବ୍ୟଙ୍ଗ]

୨୬ । ଦାନି; କାହଦାନି, ନାଁ ଧୂପଦାନି, ନା ମସଲଦାନି ? [ଦାନୀ ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୨୭ । ଦାନ୍ତୁରା ଦାନ୍ତ, ନଡ଼ିଆ ପୁଞ୍ଜାଏ (ଛପୁଞ୍ଜା) କୋରି ପକାନ୍ତ । [ବ୍ୟଙ୍ଗ]

୨୮ । ଦାନ୍ତୁରୀ ଦାନ୍ତୀ, ନଡ଼ିଆ ଗୁଞ୍ଜାଏ କୋରି ପକାନ୍ତି । [ଦାନ୍ତୁରା ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୨୯ । ଦାମୋଦର ! ଲେଙ୍କୁଡ଼ା ସେଙ୍କୁଡ଼ା ପାଣ କର (ଚଢକଉଡ଼ି କ ମାଠର କର, ମାଠକଉଡ଼ି କ ଚଢ କର) ।

୩୦ । ଦାନ୍ତୁଲା ନାନି, ହସିବା କାନ୍ଦିବା ନୁହେଁ ବଖାଣି (କିଛି ନ ଜାଣି) ।
[ଦାନ୍ତୁରୀ ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୩୧ । ଦାସେ ! ପାଣିରେ ବୁଡ଼ିଲେ ମାସେ; ପାଣି ହେଲା ହେମ କାକର, ଦାସେ ହେଲେ ବୁଢ଼ା ମାଙ୍କଡ଼ । [ଦାଶରଥି ପ୍ରତି ଉପହାସ]

୩୨ । ଦାଦ ! ଖୁଖୁଆ ଖାଇବ ଆସ । [ଦାଦ ପ୍ରତି ଉପହାସ]

୩୩ । ଦାଣ୍ଡଆଗଣ୍ଡ, ପୋଡ଼ି ଖାଇଛ ସେ ଲଜର ମୁଣ୍ଡ । [ବ୍ୟଙ୍ଗ]

୩୪ । ଦାନ୍ଦ ବଇଷମ ଭଲ ! ଡ଼ିମ୍ବିଟି ଭିତରୁ ଛୁଆଟି ମଲା, ଯାହା କେଉଁବାଟେ ଗଲା ।
[ଶବ୍ଦରଭେଦ ବା ବ୍ୟଙ୍ଗ]

୩୫ । ତତେ ଦାରିଦ୍ର (ଦ୍ର୍ୟ) ଘୋଟିଲାଣି । [ଗାଳି]

୩୬ । ଦିଅଙ୍କ ଘର ଲିମ୍ବୁଣୀ, ହାତ ଧରିକରି କହୁଛ ନନା ହେ । (ବାପା ହେ)
ଦଦଟି ଗୁଣା ବଘଣୀ (ବସୁଣୀ), ମୋ ପ୍ରଭୁ ସେ ।
[ଶାଶୁଘରୁ ପ୍ରତ୍ୟାଗତା କନ୍ୟାର ପିତାଙ୍କୁ ପରିହାସ]

୩୭ । ଦିଅାପଣ୍ଡ । ଓଟାର ନଉଚ (ଆଖି ଠାରୁଅଛ) କିଆବଣ୍ଡ । [ବ୍ୟଙ୍ଗ]

୩୮ । ଦିନ ଦିନକୁ; କଥା ରହିଯିବ ଯୁଗ ଯୁଗକୁ । (କାଳକାଳକୁ)

୩୯ । ଦିନକୁ ଠିଆ ଠିଆ, ରାତିକି ପାଣି ମାଠିଆ । [ବ୍ୟଙ୍ଗ; ଯେଉଁ ବ୍ୟକ୍ତି ଦିନଯାକ ଏଣେତେଣେ ବୁଲୁଥାଏ, ରାତି ହେଲାରୁ ଗୃହକାର୍ଯ୍ୟରେ ଲାଗେ]

୪୦ । ଦିନ ଦିନକର ସୁଆ (ହା)ଗ କଥା, ଘୂରି ମରବାକୁ କଲ ବଧାତା ।

୪୧ । ଦିନକେ କାଟଇଁ ସରୁତାକୁଡ଼ି, ମାସେକେ କାଟଇଁ ଖିଏ; ସାଇପଡ଼ିଶାଙ୍କୁ ପଚାରି ଥଇଲୁ, ମୋ ଠଉଁ ରାଖିଲା କିଏ ? (ଘରଣୀ କିଏ ?) । [ବ୍ୟଙ୍ଗ]

୪୨ । ଦଣ୍ଡିକ କଥା, ଦଣ୍ଡିକ କଥାକୁ ଲାଗିଛି ହାଟ ।

୪୩ । ଦିନକ କଥା, ଦିନକ କଥାକୁ ଲାଗିଛି ହାଟ । [ବ୍ୟଙ୍ଗ]

୪୪ । ଦିନକ ହାଟ, ଦିନକ ହାଟକୁ ଲାଗିଛି ନାଟ (ନଷ୍ଟ) । [ବ୍ୟଙ୍ଗ]

୪୫ । ଦିନକଯାକ ଭେଣ୍ଡା, ରାତିବେଳକୁ ଚୁଲିରେ ଲୁଣ୍ଡା । [ବ୍ୟଙ୍ଗ; ପୁରୁଷତ୍ୱବିହୀନ
ଯୁବକ ପ୍ରତି]

୪୬ । ଦିନେ ନାହିଁ କି କାଲେ ନାହିଁ, ଗହ୍ମାପୁନେଇଁ ଦିନ (ପିଠା ଖାଇଲା ବେଳକୁ) ମାଈଁ । ମାଈଁ [ବ୍ୟଙ୍ଗ]

୪୭ । ଦିନେ ଯାଇଥିଲି ଯମୁନାକୁ; ଘରେ ଛନ ଛନ ବାହାରେ ମନ, କେମନ୍ତେ ମୁଣ୍ଡିବି ନବୀନାକୁ (ମୋ ମନାକୁ) । [ବ୍ୟଙ୍ଗ]

୪୮ । ଦି (ଦୁଇ) ମାଇପର ଘଇତା । ତବତ (ତତଲା) ଖାଇବୁ କି ପଖାଳ ଖାଇବୁ, ବେଳ ଥାଉଁ ଥାଉଁ କହୁଥା । [ଦୁଇ ସ୍ତ୍ରୀ ବିବାହ କରିଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୪୯ । ଦିହରେ ମୋହର ବହୁତ ରୋଗ, ମତେ ନ ରୁଚେ କିପୁଲି ଭୋଗ । [ବ୍ୟଙ୍ଗ]

୫୦ । ଦିହରେ (ଭୃ) ପଡ଼ିଲେ ମୁହଁ (ପୁଅ) କୁ ଦେଖା । (ପକା) । [ବ୍ୟଙ୍ଗ]

୫୧ । ଦିହୁଡି ଆଗରେ ଦୀପ । [ବ୍ୟଙ୍ଗ, ବଡ଼ ଆଗରେ ସାନକୁ ତୁଳନା କରିବା ସମ୍ବନ୍ଧେ]

୫୨ । କହିବି କି ସୁଖ କହିବି, ଯାହା ଅଙ୍ଗେ ନଭେଇଛି ତାହା କହିବି ?

୫୩ । ଦୁମୁଦୁମୁ (ଦୁଲୁ ଦୁଲୁ) କରି ମାରିବ ମାଡ଼, ଭାଙ୍ଗିବ ପଞ୍ଜରି ହାଡ଼ । [ଧମକାଣି]

୫୪ । ଦୁଃଖ (ବଥ) ଓ (ଉ)ପରେ ଝଣକର ଘାଆ, ଝଣ ଝଣ କରି ବଜଉଥା ।

୫୫ । ଦୂର ଲୋକ ପୁର ଖାଏ, ପାଖ ଲୋକ ବାସନା ନ ପାଏ । [ବ୍ୟଙ୍ଗ]

୫୬ । ଦୁଃଖ କଷ୍ଟ ସହୁଥା, ମୁହଁ ମାଡ଼ ପଡ଼ୁଥା । [ବ୍ୟଙ୍ଗ]

୫୭ । ଦୁଧିଆ ଗାଈ, ପଛା କଟ କଟ ହମାଳୁଥାଇ (ହମାଳ ଧାଇଁ) ।

୫୮ । ଦେଢ଼ଇ (ଦଆ) ଘରେ ହେଲା(ହବ) ଭୁଆ (ବେହା), ଗଇସ ଗଛକୁ ଘାଲଦଉଡ଼ା, ଧୋବା ଚରି ଚରି ଠିଆ । [ଅଦାତା ବ୍ୟକ୍ତି ଘରର ବିବାହର ଆୟୋଜନ ପ୍ରତି ବ୍ୟଙ୍ଗ]

୫୯ । ଦୁଧରେ ପଡ଼ିଲ ମାଛି; ତୋ କରମକୁ ମୋ କରମ, ଜାତକପତରେ ଅଛି । [ବ୍ୟଙ୍ଗ]

୬୦ । ଦେଉଳ ଉପରେ କୁଣ୍ଡ; ମୋ ଭାଇନା (ଭାଇଙ୍କ ମୁହଁକୁ ସୁନ୍ଦର ଦିଶେ ଲୋ କେଡ଼େ ମାନୁଛି ଲୋ), ମାଗୁଛି ମାଗୁଛି ନଣ (ଗଜୁରି ନଣ) । [ଯୁବକ ଭାଇ ସମ୍ବନ୍ଧେ ଭଉଣୀର ଅନୁଚନ୍ତା]

୬୧ । ଦେଉଳ ଉପରେ କୁଣ୍ଡ, ମୁଁ ଖାଇ ନାହିଁ ପାଟି ଖାଇଛି, ନିୟମ କରିବା ଆସ । [ବ୍ୟଙ୍ଗ]

୬୨ । ଦେଉଳ ଉପରେ ଆଳ; ମୋ ଭାଇନାଙ୍କ କାନକୁ ସୁନ୍ଦର ଦିଶେ ଲୋ ପଇତା ଉପରେ ମାଳ । [ଭାଇଙ୍କ ସମ୍ବନ୍ଧେ ଭଉଣୀର ଅନୁଚନ୍ତା]

୬୩ । ଦେଉ ଯାହା ଦେଲେ ହରଷେ; କରଣେ (ପାନେ) ତା କଲେ ବରଷେ, ବାଛି ବାଛି କରି ଦେଲେ ପଡ଼ିଆ, ଶ୍ରାବଣ ମାସରେ ଭାଙ୍ଗେ ନଡ଼ିଆ, ଏମନ୍ତ ଭୂଇଁ, ଗୃହକୁଣ୍ଡା ବୁଣିଲେ ଉଠଇ ନାହିଁ ।
[ଯଦୁମଣିଙ୍କୁ ରଜା ଆଜ୍ଞା କରିଥିବା ଖଣ୍ଡିଏ ଡିପ ଜମି ସମ୍ବନ୍ଧେ ବ୍ୟଙ୍ଗ]

୬୪ । ଦେ କଉଡ଼ି ଖା ପିଠା, ଏଥିପା (ପେ)ଟି କିଆଁ ଦାନ୍ତ ନକୁଟା । [ବ୍ୟଙ୍ଗ]

୬୫ । ଦେଖା ନାହିଁ କି ସାକ୍ଷାତ ନାହିଁ (ଦନେ ନାହିଁ କି କାଲେ ନାହିଁ), ହାଟରେ (ବାଟରେ) ଦେଖିଲି (ଡାକୁଛି) ମାଇଁ ମାଇଁ ।

୬୬ । ଦେଖିସୁନ୍ଦର କଣ୍ଟାଚୁଡ଼ା । [ଦେଖିବାକୁ ସୁନ୍ଦର ଅଥଚ ଅଯୋଗ୍ୟ ବା ନିକମା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୬୭ । ଦେ ଖରଚୁ, କର ଚରଚୁ, ନେ ପାରଚୁ, ଅଇଲେ ରେ ବାବା ଅମିନବଚୁ । [ସେଟଲମେଣ୍ଟ ଅମିନଙ୍କ ପ୍ରତି ବ୍ୟଙ୍ଗ]

୬୮ । ଦେଖାସୁନ୍ଦର ପଲାଶଫୁଲ; ବାସ ଗୁଣ ନାହିଁ ଅମୂଲ ମୂଲ । [ବ୍ୟଙ୍ଗ]

୬୯ । (ତୋର ମୋର) ଦେଖାଦେଖି ହେବା । [ଧମକାଣି; ଭବିଷ୍ୟତରେ ତୋର ମୋର କର୍ମକ୍ଷେତ୍ରରେ ବଳ ପରୀକ୍ଷା ହେବା]

୭୦ । ଦେଖିଲି ସୁନ୍ଦର ବର, କୋକିଲ ପରାଏ ଗୌର, କନ୍ୟା ତହୁଁ ବଳଣ ସୁନ୍ଦର;
ମର୍କଟବଦନା ଶ୍ୟାମା, ସ୍ଥୂଳକଟୀ କ୍ଷୀଣସ୍ତନୀ, ଦଶଇ ଗୁମ୍ଫର 'ଦନ୍ତ ଯେହ୍ନେ ମନ୍ଦର ।
[କାଳିଆ ବର ଓ ଅସୁନ୍ଦରୀ କନ୍ୟାଙ୍କ ପ୍ରତି ବ୍ୟଙ୍ଗ]

୭୧ । ଦେଖ୍ (ଦେଖି) ତ (ଦେଖିବା) ଦେଖି, କାହା ସଙ୍ଗେ ଯିବୁ ଯାତକ୍ ଦେଖି । [ବ୍ୟଙ୍ଗ]

୭୨ । ଦେଖି ଅଇଲି ହଟେ ! ତିନି ମୁଣ୍ଡ ଦଶ ଗୋଡ଼ ଗଡ଼ୁଥିଲା (ଯାଉଥିଲା) ବାଟେ ।
[ନାଁଦିଆ; ବଳଦ ଲଗିଥିବା ଓ ମନୁଷ୍ୟ ଅଡ଼ାଉଥିବା ଶଗଡ଼]

୭୩ । ଦେଖିଲେ ଡର, ଖାଇଲେ (ଛୁଇଁଲେ) ମର, ତା ସଙ୍ଗେ କି ପୀରତ କର ?
[ନାଁଦିଆ; ସୁଆଁବାଳୀ ପୋକ]

୭୪ । ଦେଖିଲେ କଥା ନ କହେ ନ ଦେଖିଲେ ପାଣି ନ ପିଏ । [ବ୍ୟଙ୍ଗ; ଅଭିମାନିନୀ ସ୍ତ୍ରୀ ପ୍ରତି]

୭୫ । ଦେଖିବା ଦେଖି, କେଉଁ ଚଢ଼େଇର ତିନିଟା ଆଖି ? [ନାଁଦିଆ; ନଡ଼ିଆଫଳ]

୭୬ । ଦେଖିଲେ ଲଗେ, ଶୁଣିଲେ ଲଗେ । [ବ୍ୟଙ୍ଗ]

୭୭ । ଦେଖନ୍ତେ ବାଲିଆ କାଟନ୍ତେ (ବାଣ୍ଟନ୍ତେ) ଲଣ୍ଡା । [ବ୍ୟଙ୍ଗ, ବଡ଼ ବଡ଼ ମାଛକୁ କାଟି କରି ଦେଲେ ତାହା ଆଖିକୁ ଅଳପ ଦେଖାଯାଏ]

୭୮ । ଦେଖ୍ (ଗୃହୁଁ) ଥବୁ (ଥିବୁ) ପିନା ଖାଇବୁ (ଛୁଇଁବୁ) ନାହିଁ, ମୁରୁକି କି ହସାରେ ପେଟ ପୁରୁଥିବ (ଥିବ), ମରୁଥବୁ (ଥିବୁ) କୋଡ଼ି କଣ୍ଢେଇ ହୋଇ [ଦିନେ କୋଳେ (ଯାକେ) ଘନ ଶୋଇବୁ ନାହିଁ । ] [ବ୍ୟଙ୍ଗ]

୭୯ । ଦେଖରେ ଭାଇ ସୁକୁଟ; ଅଭିଆଣରେ ଭିଆଣ ହୋଇଛି, ପାଳଧୂଆ ଧୂଆ ଫୁଲ ମୁକୁଟ । [ବ୍ୟଙ୍ଗ]

୮୦ । ଦେ ଦେଉଣୀଙ୍କି କୋଲଥମଣ୍ଡା, ତହିଁ ମାଣଥବ (ଥିବ) ଶେଷ, ମୋ ଯେ ସିମିଥ ମାଗି ଅଇଲେ, ଶେଷ ଚନ୍ଦ୍ର (ବାର) କରି ଦେବ (ଦବ) । [ବ୍ୟଙ୍ଗ]

୮୧ । ଦେ ଧମାଧମ୍ ଡାଲରେ ପାଣି, ଶଶୁର ଯାଇଛି ବୋହୂକୁ ଆଣି [ଶାଶୁ ଅନ୍ଧୁଣୀ (କାଲୁଣୀ) କି ବୋହୂଟି କାଣୀ] । [ବ୍ୟଙ୍ଗ]

୮୨ । ଦେ ଧମାଧମ୍ (ଦୁମୁଦାମ୍, ଦୁମୁଦୁମୁ) ଗୋଡା (ପୁଞ୍ଜା) କେତେ, କତକ୍ ଛୁଉ ସେ ବରଷ କେତେ [ଦିହ ପାଉ ପାଉ (ଉଠୁ ଉଠୁ) ଯାଉ ବରଷ କେତେ [ଖୁବ ପ୍ରହାର କରିବାକୁ ଅନୁରୋଧ]

୮୩ । ଦେ ଦମ୍ଦାମ୍ ଦେ ବସାଇ, ପଞ୍ଜରହାଡ଼କୁ ଦେ ଖସାଇ । [ପ୍ରହାର କରିବାକୁ ଅନୁରୋଧ]

୮୪ । ଦେବତା, ନାଁ 'ଦେ' ତେବେ ଯାଇ 'ବତା' । (ବ୍ୟଙ୍ଗ; ଦେବତା ଶବ୍ଦରୁ ବ୍ୟଙ୍ଗପୂର୍ଣ୍ଣ ବିଶ୍ଳେଷଣ, ଆଜିକାଲି ଦେବତାଙ୍କ ସେବକମାନେ ଯାତ୍ରୀଙ୍କୁ ଧନ ବା ଦକ୍ଷିଣା ମାଗି ବିରକ୍ତ) କରିବା ଅନୁଭବକୁ ଲକ୍ଷ୍ୟ କର । [ବ୍ୟଙ୍ଗ]

୮୫ । ଦେବଲୋକଙ୍କର ଖପା ! ତୁମେ ଯାହାକୁ ବୋଲ ଗାଈ ବଳଦ, ଆମେ ତାକୁ ବୋଲୁ କଂସା । [ବ୍ୟଙ୍ଗ]

୮୬ । ଦେବା ଦେବା କହୁଥିବା, ନ ଦେବା ନାହିଁ ନ କରିବା (ଯାବତ୍‌ଚନ୍ଦ୍ର ଦିବାକର) । [ଦେବା ଦେବା ବୋଲି କହି ନ ଦେବା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୮୭ । ଦେବି ଧମାଧମ୍ (ଦୁମୁ ଦୁମୁ) ଗୋଟାକେତେ ! ଦିହ ପାଉ ପାଉ ବରଷ କେତେ । [ମାରିବାକୁ ଧମକାଣ]

୮୮ । ଦେଲି ଦେଲି ବୋଲି କହି ହେଉଥିଲି (ଥିଲା), କେତେ ଦିନ ଦେଇ (ଥି)ଲି କାହାକୁ; ଆଣ୍ଠି (ଣ୍ଠୁ)କ ପାଣିରେ ତପ କରୁଥିଲି (ଥିଲା) ପର ଧନ ଖାଇବାକୁ (ହରିବାକୁ) ।

୮୯ । ଦେଶ ନ ଥାଏ କି ବେଶ ଥାଏ, ବୁଢ଼ାକୁ ଟଗଳବସର ବୋହୁ ଯାଉଥାଏ । [ବ୍ୟଙ୍ଗ]



## ( ଧ )

୧ । ଧକ୍ ସକ୍ କାନ୍ଦ ନା ମୁଁ ଅଇଲିଣି, ଦୀପ ଲଗେଇ ଦେଖ ପିଠି ଲଉଡ଼ିର ଦାଗ ପାଇଲିଣି । [ବ୍ୟଙ୍ଗ; ଘରରେ ଚୋରି କରିବାକୁ ଯାଇଥିବା ଚୋର ମାଡ଼ ଖାଇ ପଳାଇ ଆସି ତା ଅନୁପସ୍ଥିତିରେ କାନ୍ଦୁଥିବା ଘରଣୀକୁ (ମାଆକୁ) ପ୍ରବୋଧ ବଚନ]

୨ । ଧକାନ୍ତି ସକାନ୍ତି ପକାନ୍ତି ଲୁହ, ପେଟେ ଭରିଥାନ୍ତି ଶଗଡ଼େ ଗୁହ (ପେଟ ଭିତରେ ସକଟ ଭୂଅ) ।

୩ । ଧକେଇଲା, ଧକଉଁ ଧକଉଁ ସକେଇଲା ।

୪ । ଧଈ ଧଈ ତୁ, କନିଆ ମାଆର ପୁଅ ବହୁତ, ଆଉ ଗୋଟିଏ ହଉଥିଲା କନିଆ ବୋପା (ମାଆ) ନାହିଁ କଲା । [ବ୍ୟଙ୍ଗ]

୫ । ଧଅ ! ଧଅ ! ବୋଇଲେ କାମୁଡ଼ି ପକାଉଛୁ । [ବ୍ୟଙ୍ଗ]

୬ । (ପ୍ରଶ୍ନ) ଧଇଁସଇଁ କାହିଁ ପାଇଁ ? (ଉତ୍ତର) ତୋ (ତୁମ) ଘର ତୋ (ତୁମ) ଦାନ୍ତ ଛୁଉଁଛି, ମୁଁ ଯାଇଥିଲି ନିଆଁ ପାଇଁ ।

୭ । ଧନ ଜନ ଗୋପଲକ୍ଷ୍ମୀ ବର୍ଦ୍ଧିତ ହୁଅନ୍ତୁ । [ଆଶୀର୍ବାଦ]

୮ । ଧନ ବୋଲି କଲି ବାଲିଗରଡ଼ା, ବନ୍ଧୁ ବୋଲି କଲି ଶାମ ପରଡ଼ା । [ବ୍ୟଙ୍ଗ]

୯ । ଧନଅ ଧମକ ଧମେଇଲ, ଜାଉଁଲ (ହାଉଁଲ) ନାକରେ ହାଉଁଲ (ଜାଉଁଲ) ଗୁଣା ମାରି ତ ପକେଇଲ । [ବ୍ୟଙ୍ଗ]

୧୦ । ଧନ ଧନ ବୋଲି ପାଣି ପିଉନାହିଁ, ମାଡ଼ରେ କୁଟେଇ ନାହିଁ । [ବ୍ୟଙ୍ଗ; ସ୍ତ୍ରୀକୁ ପ୍ରହାର କରିବା ସ୍ୱାମୀ ପ୍ରତି ସ୍ତ୍ରୀର ବ୍ୟଙ୍ଗ]

୧୧ ଧନ୍ୟ ତା ପିତା ମାତା, ଧନ୍ୟ ତା ଜନ୍ମଦାତା । [ପ୍ରଶଂସାବଚନ]

୧୨ । ଧନରେ କୁବେର, ବୁଦ୍ଧିରେ ତନ୍ତ୍ର । [ବ୍ୟଙ୍ଗ]

୧୩ । ଧନ୍ୟ ସେ ପ୍ରଜାପତି ବରକୁ କନ୍ୟା ଘଟାଇଛି । [ବ୍ୟଙ୍ଗ]

୧୪ । ଧନ୍ୟ ସେ ପିତା ମାତା, ଧନ୍ୟ ଜନନୀ; ଝିଅ ସେ ହେଇ ଥିଲେ କୁଳ କାରେଣୀ । [ବ୍ୟଙ୍ଗ ଓ ପ୍ରଶଂସାବଚନ]

୧୫ ଧରି ନ ପାଇଲି ମନକୁ ଦଣ୍ଡକ ପାଇଁକି ପଣ୍ଡିତ (କୁ) ପାଖେ, କଳଙ୍କ ରଖିଲି କୁଳକୁ (କାଳକୁ) । [ବିଟପୀ ସ୍ତ୍ରୀର ଅନୁଶୋଚନା]

୧୬ । ଧରି ମାଇଲ, ନାଁ, ଭଲ ସହିଲ । [ବ୍ୟଙ୍ଗ]

୧୭ । ଧନକୁ ଅପମାନ କେ କଲା ମୋର, ଜାଣିଲେ ନାକ କାନ କାଟିବି ତାର । [ବ୍ୟଙ୍ଗ]

୧୮ । ଧଅ ଧଅ (ଧର୍ ଧର୍) ବୋଇଲେ କାମୁଡ଼ (ବାନ୍ଧ) ପକାଉଛୁ । [ବ୍ୟଙ୍ଗ]

୧୯ । ଧନ ଜନ ଗୋପ ଲକ୍ଷ୍ମୀ ବର୍ଦ୍ଧିତ ହୁଅନ୍ତୁ, ରେ ବାବା । [ଆଶୀର୍ବାଦବଚନ]

୨୦ । ଧର୍ମଗଣ୍ଡିରେ ମେଖ । [ବ୍ୟଙ୍ଗ]

୨୧ । ଧାଆଁ (ଧାଇଁ) ଧପଡ଼କୁ ମାଣ୍ଡି ଆସାଉ, ବସିବା ଲୋକ ତବତ ଖାଉ । [ଗଞ୍ଜାମ ଢଗ]

୨୨ । ଧାଇଁ ନ ପାରଇ ପାଇକ ଆଗେ, ଟାଣ କରୁଥାଇ (ଗୃହିଣି କରୁଥାଏ, ଡମ କହୁଥାଏ) ମାଇପ ଆଗେ । [ବ୍ୟଙ୍ଗ]

୨୩ । ଧାନ (ନୁ) ଟାଏ, ଧାନ (ନୁ) ଟା ଛ ତ (ତେ, ଟେ ଶୃଉକ (କୁ) ଟାଏ । [ସାମାନ୍ୟ କଥାପାଇଁ ବିଶେଷ ଅନ୍ଦୋଳନ ଲଗିବା ସମ୍ବନ୍ଧେ ବ୍ୟଙ୍ଗ]

୨୪ । ଧାନ ଫୁଲ ଉଡ଼େଇଲ; ତୋ ଘର ବାଟେ ଯାଅନ୍ତୁ ରେ ଧନ, ଚଣ୍ଡି ଟିନା ଭରେଇଲ । [ଢଗ]

୨୫ । ଧନଂ ଧାନ୍ୟଂ ଧର୍ମ ଲକ୍ଷ୍ମୀ, କୀର୍ତ୍ତିରାୟୁର୍ଯଶଃ ଶ୍ରିୟଃ । [ଆଶୀର୍ବାଦବଚନ]

୨୬ । ଧାନ ନାଆଁ ନରସିଂପଦଭୋଗ, ଘଇତା ଆରକଲେ ମାଇପକୁ ଯୋଗ । [ବ୍ୟଙ୍ଗ]

୨୭ । ଧାନ ପଣିଲ, ଜର ଆଣିଲ (ଆସିଲ), ମୋ କଡ଼ବି କାହିଁ ? ଭାତ ଫୁଟିଲା, ଜର ତୁଟିଲା (ଖସିଲା), ମୋ ପଥୁରି କାହିଁ ? [ବ୍ୟଙ୍ଗ; କାମ କଲା ବେଳକୁ ଜରର ଛଳନା ଓ ଭାତ ଖାଇଲା ବେଳକୁ ଜର ଗୁଡ଼ିଯିବାର ଛଳନାକାରିଣୀ ପ୍ରତି]

୨୮ । ଧାନ ହେରକର ତେଲ; ବେଟା ଚକ୍‌କଣ, ବେଟୀ ଚକ୍‌କଣ, ସ ଅନ୍ଧାରୀ ଜ୍ୱାଇଁ ଚକ୍‌କଣ, ଯାଆନ୍ତି ହେଲେ ମାଳମଦେଜନ, ଭଣ୍ଡାର ପାଇଁକି ଟିକିଏ ଥାଉ । [ବ୍ୟଙ୍ଗ]

୨୯ । ଧାନ ଘେରକର ଚକୁଳି; ଢ' କଲେ ଘିଅ ବହିଯାଉଛି, ଧାଇଁ ଅଣ ଲୋ ଟେକଲୀ ।
[ବ୍ୟଙ୍ଗ]

୩୦ । ଧାନ ଘେରେ ଦେଇ କର କଣିଲି ଘୋଇଲି, ସେ ହେଲ ଘାଆଲ୍ତାଣୀ, ମୁଁ ହେଲ ଧୋଇଲି । [ଦାସୀ ପ୍ରତି ଅନୁରକ୍ତ ହେବା ସ୍ୱାମୀଙ୍କର ସ୍ତ୍ରୀର ଶୋଚନା]

୩୧ । ଧାନ ହାଣ୍ଡି କ କୁଟେଇବ ! ହଳଦୀ କାଠିଆକ ବଟେଇବ ! ତେବେ ଯାଇ ଝିଅ ପଠେଇବ । [ବ୍ୟଙ୍ଗ: ବୋହୂ ଅଣିବାକୁ ବୋହୂବାପ ଘରକୁ ଯାଇଥିବା ଲୋକ ଶାଶୁକୁ ଅସି ରିପୋର୍ଟ କରିବା]

୩୨ । ଧୂଳଘର ଗ୍ଭଉ ଆସିଲେ ଝିଅ, ଝିଅଙ୍କୁ ଚଞ୍ଚଳ ତବତ (ତତଲ, ପଙ୍ଖାଳ) ଦିଅ ।
[ବ୍ୟଙ୍ଗ; ଗେଲବସରରେ ବଢ଼ିବା ଝିଅଙ୍କ ପ୍ରତି]

୩୩ । ଧେଇଧେଇ ଧେଇକି ନାଟ ! ପେଜପିଆଠାରେ ବସିଛି ହାଟ । [ବ୍ୟଙ୍ଗ]

୩୪ । ଧେଇକି ନାଟ, ଲଗିଛି ହାଟ । [ବ୍ୟଙ୍ଗ]

୩୫ । ଧୋବା ମଳକ; ସଙ୍ଗାଳି କରିଛି ଝିଅ ହଳକ (ଯୋଡ଼କ); ସାହୁ ପଢଆର ଝିଅ (ବୋହୂ) ହଳକ (ଯୋଡ଼କ) । [ବ୍ୟଙ୍ଗ]

୩୬ । ଧୋରେ ବାୟା ଧୋ, ଯେଉଁ କଆରରେ ଗହମ ମାଣ୍ଡିଆ, ସେଇଠେଇଁ ଯାଇ ଶୋ
[ବ୍ୟଙ୍ଗ]

୩୭ । ଧର ମୁଠା, ପକା ଠନଠା; ତୋ ମାଆ ନାଆ କଅଣ ? ନାଁ, ମୋ ମାଆନାଁ ଦୁଲି, ଅଣ ଗ୍ଭଉଳ କୁଲି, କାଳସନ୍ଧିକା ବିଶ୍ୱେଦେବା, ଗ୍ଭଉଳ ବାନ୍ଧ ଘରକୁ ଯିବା ।
[ଶୂଦ୍ର ଘରକୁ ମାତୃଶ୍ରାଦ୍ଧ ପୁରୋହିତ କରିବାକୁ ଯାଇ ସେଠାରେ ଅଙ୍କ ଶ୍ରାଦ୍ଧକର୍ତ୍ତା ଦ୍ୱାରା ଅରନ୍ଧା ଗ୍ଭଉଳ ୩ ମୁଠାରେ ୩ଟି ପିଣ୍ଡ ୩ ସ୍ଥାନରେ ପକାଇ ଦେଇ ଏଣୁତେଣୁ ଦପଦ ମନ୍ତ୍ର ବୋଲି, ଗ୍ଭଉଳ ତକ ବାନ୍ଧ ଘରକୁ ଆସିବା ପୁରୋହିତଗୋସେଇଁଙ୍କ ପ୍ରତି ଅନ୍ୟ ବ୍ରାହ୍ମଣଙ୍କର ବ୍ୟଙ୍ଗବଚନ]



## ( ନ )

୧ । ନଅ(ହ) ବର, ନୁହେଁରେ କାଳଆ ତୋହ ଭଲ; ସୁନାଫୁଲ ବୋଲି ଗଛରେ ଖୋସିଲି, ମୋ କପାଳକୁ (କରମକୁ) ବଣମଲ୍ଲୀ । [ଢଗ]

୨ । ନଅଙ୍କିଆ, ଛତରଖିଆ । [ଗାଳି; ଯେଉଁ ଲୋକ ପେଟବିକଳରେ କାଢ ହରିଛି ଅଛି]

୩ । ନଇକି ମାଟିଅ ଗଡ଼ୁ, କାନଫିରିଫିରି ପିତଳଖଡ଼ୁ, ତୋଠେଇଁ (ଓପରେ) ଚଢ଼ିକ ପଡ଼ୁ । [ଢଗ]

୪ । ନଇକ ଗଢ଼ିଲ, ଗୁଡ଼ିଲ ଧୋଇଲ, ମାଡ଼ିଲ ମୁଣ୍ଡାଗାଗର; ମାଆଙ୍କୁ କହିବ କାନ୍ଦିବ ନାହିଁ, କୋଳି ତ ଗୁଣାସାଗର । [ଶାଶୁଘରେ ଝିଅର ଅନୁଚନ୍ତା]

୫ । ନଈ ତଙ୍ଗୁଡ଼ିଆ ଦଳ, ଖାଇଲେ ଖାଇବେ କୁଆ ଶାଗୁଣା, ହେଲେ ହେବ କଆ ତଳ । [ଢଗ]

୬ । ନଈତଳେ ଅଙ୍କସ୍ରନ୍ତ୍ର; ପେଟପୁର କର ଥରେ ଖାଅନ୍ତ୍ର, କାଲ ହବ ସଙ୍କ୍ରନ୍ତ । [ଢଗ]

୭ । ନଈ ତଳେ ତଳେ କିଏ ଯାଉଛୁ ହୋ, ମୋଠାରୁ ବାରତା ନଅ; ପାନ ବୋଡ଼କର ଗୁଆ ବୋଡ଼କର (ପାନ ଗୁଆ କର ନଅ ବୋଡ଼କର), ମୋ ବାପା (ନନା)ଙ୍କ ଛାମୁରେ ଦଅ; ମୋ ପ୍ରଭୁ ହେ । [ଅନୁଚନ୍ତା]

୮ । ନଈରେ କାଳିଆ ଶିଳ, ଉପର ବାଳିଆ ଚଢ଼ିଟ ଦେଲ, କୁଣ୍ଡାଖାଇ (ହାଣ୍ଡିଖାଇ) ବୁଡ଼ିମଲ । [ଢଗ]

୯ । ନଈରେ ପଡ଼ିଲ ବେଲ, ମୁଁ ତ ଖୋସିଛୁ ମନ୍ଦାରଫୁଲ, ତତେ ଲଗିଅଛୁ ଟେଳ । [ଢଗ]

୧୦ । ନଈ ତଳେ କାଉଁଚିଆ, ଧାନ ସେରକରେ ପଣେ ଚକୁଳି, ପୁଅ ନାଆଁ ବାଉରିଆ । [ବାଉରିଆ ନାମକ ପିଲାକୁ ଚଡ଼ାଇବା]

୧୧ । ନଈ ତଳେ ତଳେ କିଏ ଯାଉଛୁ ଲୋ, ଗହମ ଚୁଣା ହେଉଛୁ; ମୋ ଭାଇ (ଭାଇନା)ଙ୍କ ମୁଣ୍ଡକୁ ଖଗ୍ର କାଟୁଛୁ (କାଟିବ) ଲୋ, ଗୁନ୍ଦୁଆ ଝଣା ହୋଇଛୁ । [ଭଉଣୀର ଅନୁଚନ୍ତା]

୧୨ । ନଈ ପହଁରଇ ବାଳିଆ, ପାଟଲିବାଲରେ ପୁଅ ବେଇଛୁ, ନାଆ ଦେଲି ଗୋପାଳିଆ । [ଗୋପାଲ ନାମକ ପିଲା ପ୍ରତି ଢଗ]

୧୩ । ନଈ ପାଣି ନଈରେ ଗଲ (ଯାଉ), ପିତୃଲୋକଙ୍କର ସନ୍ତୋଷ ହେଲ (ହଉ) । [ଜଳ ତର୍ପଣ କରିବା ସମ୍ବନ୍ଧେ ବ୍ୟଙ୍ଗ]

୧୪ । ନଈପାଣି ଜର ଜର; କାଙ୍ଖେ ବାଉଁଶିଆ ସାଙ୍ଗେ ଦଅର, ଯାଉଥିଲି ବୋପା-ଘର । [ଢଗ]

୧୫ । ନଈ ପହଁରଇ ମୀନ; ଦଦରା ଡଙ୍ଗାରେ କେ ଦେଲ ଚଢ଼ି, ବାପଘରେ ଗଲ ଦିନ । [ଶରବରଦ୍ଧିଣୀ ପିତୃକୁଳରେ ବାସ କରୁଥିବା କନ୍ୟାର ଶୋକୋ]

୧୬ । ନଈ ବଙ୍କୁଲିଆ ଦଳ; ଗୁହିଁ ଗୁହିଁ ଅସି ଦରବୁଢ଼ୀ ହେଲ (ଗଲ ବଳ ବୟସ), ମୁଣ୍ଡରେ ପାକ(ଚ)ଲ ବାଳ । [ଢଗ]

୧୭ । ନଈରେ ପଡ଼ିଛୁ ଝିଟି; କାଳିଆ ବଳଦ ବାଡ଼ିରେ ପଶି ମାଡିଦେଲ ଚାଉଁ ଡାଟି । [ଢଗ]

୧୮ । ନଈରେ କିଏ ଯାଉଛି; ଝାଟିଏ ହାତ ଲୁଗା ଦଶି ଯାଉଛି ଲୋ ! କଲା (ଛଡା,ଲୁ ଜଣା ଯାଉଛି । [ଶାଶୁଘରେ କନ୍ୟାର ଅନୁଚନ୍ତା]

୧୯ । ନଈପାଣି ହୁକୁ ହୁକୁ; କିଏ ଦେ ନେଲା ମୋ ଚମ୍ପାଫୁଲକୁ ତଳମାଳ ଗାଇଜକୁ । [ଢଗ]

୨୦ । ନଈରେ ଗଛଟି ନାହା; ନାହା ମଙ୍ଗ ଧରି ପହରେ କାନ୍ଦଇ ଲୋ, ମତେ କିଏ ଦବ ମାଆ; ମୋ ପ୍ରଭୁ ଦେ !

୨୧ । ନଈରେ ଗଛଟି ଖାଇ; ଖାଇମଙ୍ଗ ଧରି ପହରେ କାନ୍ଦଇ ଲୋ, ମତେ କିଏ ଦବ ଭାଇ; ମୋ ପ୍ରଭୁ ସେ ! [ଶାଶୁଘରେ ନୂଆ ବୋହୂର ଅନୁଚନ୍ତା]

୨୨ । ନଈରେ ଖେଳଇ ଶେଉଳ; ଯାଆଁ ଲମନ୍ଦା (କାନ୍ତଆଡମ୍ବ)କୁ ଜଗି ବସିଛି, ଦେଖୁନାହୁଁ କି ଲୋ ବଉଳ । [ଢଗ]

୨୩ । ନଈରେ ତେଙ୍ଗା ପଣସ; ଆସ ନୂଆବୋହୂ ବେଦରେ ବସ, କାଲି ଯିବ ବନବାସ [ଆସ ଗେହ୍ଲାଝିଅ (କେମାଦେଇ) ଡୋଲିରେ ବସ, କରିଯିବ ପରବାସ] । [ଶାଶୁଘରକୁ ଝିଅ ଗଲେ ପୁଣି ବାପଘରକୁ ଫେରି ଆସିବାକୁ ବହୁଦିନ ଲାଗେ, ସେ ସମ୍ବନ୍ଧେ ଢଗ]

୨୪ । ନଇଁ ନଇଁ କରି ଚାଲଇ ବୁଢ଼ୀ; ହାତକେ ପାଚ (ଛି) ଆ ହାତକେ ବାଡ଼ି ।

୨୫ । ନଈତଳେ କାଉଁରିଆ; ଯାଉଛି ପଚ୍ଛକେ ଏ ଘରୁ ମୁହିଁ, ଆଉ ନ କର କଳିଆ । [ଢଗ]

୨୬ । ନଈପାଣି ଗଲା ଧାରେ; କଳଲଣ୍ଡି ତ (ଗବମଲ୍ଲିଫୁଲ) ମଉଳିଗଲା, ମୁହିଁ ମାଡ଼ ଶୋଇବାରେ । [ଢଗ]

୨୭ । ନଈ ପାଣି ଗଲା ନଈରେ, ସତେ କୁଅ ପାଣି ଖାଇବ ? ବାପ କଳୁଥି (ଥି)ବ, ପୁଅ ଖେଳୁଥି (ଥି)ବ, ଭଗାରଙ୍କ ଗୁଣ କହିବ । [ଢଗ]

୨୮ । ନଈରେ ଇଲିସି ମଲା; ନୂଆବୋହୂ ଭାଇ ବିଦେଶ ଗଲା, ବଉଁଶ ଉଚ୍ଛନ ହେଲା । [ଢଗ]

୨୯ । ନଈରେ ବାଲିଆ ବାଡ଼େଇ ହେଲା, ଶୁଖୁ(ଖୁ) ମଦରଙ୍ଗା ଖାଇ; କାହିଁପାଇଁ ଗମା ବାଇ ହୋଇଛୁ, ମୋ (ଟୋକାଟା) ସାଙ୍ଗରେ ରୁହ । [ବ୍ୟଙ୍ଗ]

୩୦ । ନଈରେ ଫାଳିଆ ବତା; ଝିଅଙ୍କ (ନାନୀଙ୍କ, ଭାଉଜ) ଗୋଡ଼ରେ ସବୁ ଅଳତା, ଜୋଇଁ (ନନା, ଭାଇ) ଯାଇ କଲିକତା । [ବ୍ୟଙ୍ଗ]

୩୧ । ନଉକ୍ରାଣି ଜଡକଫେଣୀ, ମୋର ନଣନ୍ଦର ଓପା; ଟାକୁଆଗାଲକୁ ବନହଳଦୀ ଖୋସି ଦେଇଥାଇ ଖୋସା । [ବ୍ୟଙ୍ଗ]

୩୨ । ନକଠାକ ବାହାପିଆ, ଜନ୍ମ ଜଳରେ ପବନପିଆ । [ବ୍ୟଙ୍ଗ; କେବଳ ନିର୍ମଳ ପାଣିକାଏ ଖାଇ ଓ ପବନ ପିଇ ଜୀବନ ଧାରଣ କରୁଛୁ ବୋଲି ଲୋକଙ୍କ ବିଶ୍ୱାସ ଜନ୍ମାଇବା କପଟାଗ୍ରହୀ ବ୍ୟକ୍ତି ପ୍ରତି]

୩୩ । ନ କହୁ ନ କହୁ ବଡ଼ (ଆଚ୍ଛା, ଖୁବ) କଥାଏ କହିଲ । [ବ୍ୟଙ୍ଗ]

୩୪ । ନଖ ମାଜିବ, ବେଣୀ ଯାଚିବ, ନିର୍ମଳ ହେବ, ଦଇର (ଭାଉଜ) ସାଙ୍ଗରେ କଟକ ଯିବ । [ଢଗ]

୩୫ । ନ ଖାଇ ନ ପିଇ କଇଥା ଘୈର । [ବ୍ୟଙ୍ଗ]

୩୬ । ନ ଖାଏ ଲୋ ବାଇଗଣ, ପୁଣି ତ ଦେହ ଉଭଣ, ବୁଝିବାର କେଉଁ ଗୁଣ । [ବ୍ୟଙ୍ଗ]

୩୭ । ନ ଜାଣି ଚଷିଲି ପଧାନ ହେଉଛା, ଆସ୍ତୁବ୍ୟସ୍ତ ଯାକ ନେଲେ ଦେକଟା; ଆଉ ବନ୍ଧି (ବଳ) ଥି(ଥୋ) ଲ ପାଳ ଭରଣେ, ତାହା ନେଇଗଲେ ଗଡ଼ (ଭ୍ରମ୍ଯ) କରଣେ । [ବ୍ୟଙ୍ଗ]

୩୮ । ନଟଗୋପାଳର ଗଣ୍ଡେଇ ଆସୁ, ଦନେ ନୋହିଲେ ଯେ ନ ଚଲେ ଟାସୁ । [ହାସ୍ୟତରଙ୍ଗ]

୩୯ । ନଡ଼ାଗଦା ଦେଲି ରେକ; ଭଲ ରେ ବାଣୁଆ ମାଇଲୁ ବାଣ, ନାକ ଫୁଲଗୁଣା ଦେଖି (ପିନ୍ଧୁରକଲିକ ଯୋଖି) । [ଢଗ]

୪୦ । ନଡ଼ିଆ ଗଛର ଚଅଁର ଡେଉର ଦେଇଛୁ; ବୃନ୍ଦାବର ବୋଲି ବାଛୁବ ନାହିଁ, ଡେଙ୍ଗରେ ବଢ଼ି ଯାଇଛୁ । [ବ୍ୟଙ୍ଗ]

୪୧ । ନଡ଼ିଆ ଗଛର ଚଅଁର; ଶାଶୁଙ୍କ ପେଟର ଗୋଟିଏ ନାହିଁ ଖାଅଁ (ଯାଇ) ଯାକ ମୋର ଦଅର । [ବ୍ୟଙ୍ଗ]

୪୨ । ନଡ଼ିଆ ଗଛର ଗୁଇ; ମାଆପେଟର ତ ଗୋଟିଏ ନାହିଁ, ଗାଅଁ (ଯାଇ) ଯାକ ମୋର ଭାଇ । [ବ୍ୟଙ୍ଗ]

୪୩ । ନଡ଼ିଆ ଗଛର ଚଅଁର; ବେଗି ବେଗି (ବେଇଗି) କର ତୋଡ଼ା (ଗ୍ୱା)ଣି ବାଢ଼, ବସିବ ଠେଙ୍ଗା ପାହାର । (ଧମକାଣ)

୪୪ । ନନ୍ଦନାଗା, ଚଉପାହାର, ବସିଥାଏ ପାଆ ଲାଗେ; ଟିକଏ କଟିଏ ଫୋଛି ଦଉଥାଏ, ଭାଇ ଘଇତାଙ୍କ ଆଗେ । [ବ୍ୟଙ୍ଗ]

୪୫ । ନ ଥିଲରୁ (କୁ) ଭଉଣୀକୋଳି ଘଇତା, ପେଲପେଲ କର ଦାନ ନଉଥା । [ବ୍ୟଙ୍ଗ]

୪୬ । ନ ଦେଖିଲେ ଝୁରୁ (ପସ୍ତୁରୁ) ଥାଏ, ଦେଖିଲେ କଥା ନ କହେ । [ବ୍ୟଙ୍ଗ]

୪୭ । ନ ଦେବ ଧନ, କହିବ ତୋଷିବ (କହୁ ଚୋଷୁଥିବ) ଦବ୍ୟ ବଚନ । [ବ୍ୟଙ୍ଗ]

୪୮ । ନ ଦେଖିବା ଲୋକେ ଦେଖ, କଇଞ୍ଚ କାଢିଛୁ ବେକ । [ବ୍ୟଙ୍ଗ]

୪୯ । ନ ଦେବା, ନାହିଁ ନ କରିବା; ଦେବା ଦେବା କହୁଥିବା, ଯାବତ୍ଚନ୍ଦ୍ର ଦିବାକର । [ବ୍ୟଙ୍ଗ]

୫୦ । ନାନା ଗଲେ ଫାଣ୍ଟିକ, ମେଞ୍ଚ ଆଣିଲେ ଗାଣ୍ଟିକ । [ବ୍ୟଙ୍ଗ]

୫୧ । ନାନାକୁ ନାନା, ଭଲ ଉଆଇଲେ (ଛୁ) ଚକରପାଣି । [ବ୍ୟଙ୍ଗ]

୫୨ । ନାନା ବେକ ଧରି କାନ୍ଦୁଛୁ, ନାନୀ ବେକ ଧରି କାନ୍ଦୁଛୁ । [ବ୍ୟଙ୍ଗ; ଯେଉଁ ବ୍ୟକ୍ତି ଦୁଇ ବିପକ୍ଷଦଳଙ୍କ ସାଙ୍ଗରେ ମିଶେ]

୫୩ । ନ ପଢ଼ି ପଣ୍ଡିତ । [ବ୍ୟଙ୍ଗ]

୫୪ । ନ ପଢ଼ି ପଣ୍ଡିତ ମହାମେରୁ, ବାବୁରି ବଦନ-ଗ୍ରଏ (ଇ) ଗୁରୁ । [ବ୍ୟଙ୍ଗ]

୫୫ । ନ ପାଇ ପାଇଛୁ ଡାଲ, ତାରି ମୁହଁଟାଯାକଇ ବାଲ । [ବ୍ୟଙ୍ଗ]

୫୬ । ନ ପାଇ ପାଇଛୁ ଇଲସି, କଣ୍ଟାମଣ୍ଟା କରି ଗିଳୁଛୁ । [ବ୍ୟଙ୍ଗ]

୫୭ । ନବ ଘନ ଘନ ପଇତା ଟାଏ, ଶଙ୍ଖା ଦ ମୁଠାକୁ ଘଇତା ଟାଏ । [ବ୍ୟଙ୍ଗ]

୫୮ । ନବଛଇଲା, ଗ୍ରିବ ନ ଜାଣିକି କଥା କହିଲା । [ବ୍ୟଙ୍ଗ]

୫୯ । ନବରଙ୍ଗୀ, କଥା କହୁଥାଏ ଭର୍ଙ୍ଗି ଭର୍ଙ୍ଗି । [ବ୍ୟଙ୍ଗ]

୬୦ । ନବାରେ ! ଫୁଲ ଖୋସିଛୁ ଗଣ୍ଡିରେ । [ନବକିଶୋର ନାମକ ବ୍ୟକ୍ତିକୁ ଉପହାସ]

୬୧ । ନବଛଇଲୀ, କଥା କହୁଥାଏ ଭଲକ ଭଲ । [ବ୍ୟଙ୍ଗ]

୬୨ । ନ ପିବ କୋଟଗ୍ରା, ନ ଖାଇବ ଓଟଗ୍ରା । [କଲହ ପ୍ରିୟ କୋଟଗ୍ରା ନାମକ ଗ୍ରାମ-ସମ୍ବନ୍ଧେ ଅନୁପ୍ରାସ]

୬୩ । ନ ରସି ଭ୍ରମର ରସିଲା, ଯାଇ କୁଇ ଫୁଲ ପାଣିକି ପକା (କେ)ଇ, ପୋକ ଶୁଆମ୍ପୁଟଲ (ଫୁଲେ) ବସିଲା । (ଢଗ)

୬୪ । ନବୀ (ନବେଇ) ଲୋ ! କେତେ ଦେଖଉଛୁ ଛବ (କେତେ ହଉଛୁ ଛବେଇ) ଲୋ । [ନବୀ ନାମକ ସ୍ତ୍ରୀକୁ ଉପହାସ]

୬୫ । ନରେନ୍ଦ୍ର ଝଣ୍ଟି ଦିନଗଲେ, ରଙ୍କ ଘଡ଼ି ଦିନଯାଏ । [ବ୍ୟଙ୍ଗ]

୬୬ । ନରେନ୍ଦ୍ର ଝଣ୍ଟି ଦିନଗଲେ, ନର (ରେ)ନ୍ଦ୍ରଙ୍କ ହାତ ଘୋଡ଼ା, ଆମ ଦୁଆର ବାଟେ ଯାଇ । [ବ୍ୟଙ୍ଗ]

୬୭ । ନଷ୍ଟର (ଙ୍କ) ଗୁରୁ, ଦୁଷ୍ଟର (ଙ୍କ) ଗୋଯା (ସେ)ଇଁ । [ଗାଳି]

୬୮ । ନାଆଁକୁ ଧନ୍ୱନ୍ତରୀ, ଚକସ୍ତାରେ ଯମ । [ବ୍ୟଙ୍ଗ]

୬୯ । ନାଆଁ ଖଟମଲ, ପିଠିରେ ଗଣ୍ଡିସି । [ବ୍ୟଙ୍ଗ]

୭୦ । ନାକ କଟିଲେ ବଚନ ବାହାରିବାକୁ ନାହିଁ । [ବ୍ୟଙ୍ଗ]

୭୧ । ନାକ ଫୁଲେଇର ଓଲେଇ (ଅପାର) ଗୁଣ, ହାଣ୍ଡିରେ ଖାଏ ସେ ଭାତ ଢଅଣ । [ହାସ୍ୟତରଙ୍ଗ]

୭୨ । ନାଆଁକୁ ଭେଣ୍ଡା, ଗୋଡ଼ ଦଉଛା ଶଗଡ଼ ଦଣ୍ଡା । [ବ୍ୟଙ୍ଗ]

୭୩ । ନାଆଁକୁ ଗୁଣୀ, ବୁଝିଲା ବେଳକୁ ଅନ୍ଧାରକାଣୀ । [ ଢଗ]

୭୪ । ନ ଉଠ ! ଦୁହା ନ କର ମତେ, ନବୁଣ କର ନ ଯିବ ତତେ । [ବ୍ୟଙ୍ଗ]

୭୫ । ନାକ ନ ଥିଲେ ମାଇପେ ବିଷ୍ଠା ଖାଆନ୍ତେ । [ସ୍ତ୍ରୀମାନଙ୍କ ଲୋଭ ଓ ଦୁର୍ବୁଦ୍ଧିକୁ ଲକ୍ଷ୍ୟ କରି ବ୍ୟଙ୍ଗ]

୭୬ । ନାକ ଟାଉଁ ଟାଉଁ କରୁଛୁ, ପରର ଛନଖି ମରୁଛୁ (ଝୁରୁଛୁ) । [ବ୍ୟଙ୍ଗ]

୭୭ । ନାନୀ ଲୋ ! ତୋ କଥା ତୁ ଜାଣୁ; ତୋ ବେଳକୁ ହାପୁଚ୍ (ତା) ହାପୁଚ୍ (ତ), ମୋ ବେଳକୁ ତୁଣୁ । [ଢଗ]

୭୮ । ନାଥିଆ, ଅଟୁ ତୁ ବଣଲ ପାଠଆ, କଦଳୀ ବୋଲ କାଠିଆ, ଗଡ଼ ଗଡ଼ ଗଲ ମାଠିଆ । [ନାଥିଆ ନାମକ ବ୍ୟକ୍ତିକୁ ଉପହାସ]

୭୯ । ନାମ୍ ବଡ଼ ।, ଦରଶନ୍ ଥୋଡ଼ା (କାମ୍ ଥୋଡ଼ା) । [ବ୍ୟଙ୍ଗ]

୮୦ । ନାଖିକ ଅପମାନ କେ ଦେଲ ମୋର, ଜାଣିଲେ ନାକ କାନ କାଟିବି ତାର । [ବ୍ୟଙ୍ଗ]

୮୧ । ନାମ ଚଉଧୁରି, କାଞ୍ଜି ଭୋଜନ । [ବ୍ୟଙ୍ଗ]

୮୨ । ନାଆଁ ପଧାନ, ଗାଁଆ ପଧାନ; ପଧାନ ପାଖରେ ଥାଇ ପଧାନ । [ବ୍ୟଙ୍ଗ]

୮୩ । ନାଆଁ ମାହାନ୍ତି, ଗାଁ ମାହାନ୍ତ, ମାହାନ୍ତ ପାଖରେ (ଙ୍କ ଘରେ) ଥାଇ ମାହାନ୍ତ (ପାଞ୍ଜି ପଢର ବୋହ୍ମ ମାହାନ୍ତ) । [ବ୍ୟଙ୍ଗ]

୮୪ । ନାଆଁ ଗହମ, ବାଛୁ ବାଛୁ କର ଗଡ଼ିଛୁ (ଲା) ଯମ । [ବ୍ୟଙ୍ଗ]

୮୫ । ନାରେ (ର) ଶିଆ ବାହା ହଉଚ, ମୋ ମନ ଯାହା ହଉଚ । [ବ୍ୟଙ୍ଗ]

୮୬ । ନାରଙ୍ଗପାଟଣା, ବଚନ ଘଟଣା, ମରଦଯାକଇ ବଳଦ; ବୁଢ଼ାଯାକ ହେଲେ ନାହୁଲଖେଣ୍ଡେଇ; ଭୁଆସୁଣୀ ହେଲେ ମରଦ । [ପୁରୀଜିଲାର ନାରଙ୍ଗପାଟଣା ଗ୍ରାମ ସମ୍ବନ୍ଧେ ଅନ୍ୟ ପ୍ରତିଦ୍ୱନ୍ଦ୍ୱୀ ଗ୍ରାମରେ ପ୍ରଚଳିତ ଢଗ]

୮୭ । ନାରଦମୁନି, ଅଇଲେ କଳିଧୋକଣ୍ଡ ଘେନି, ତିନି ଭୁବନର ବାରତା ଘେନି (ଜାଣି) । [ପରଘରେ କଳି ଲଗାଇବା ବ୍ୟକ୍ତି ପ୍ରତି]

୮୮ । ନାଲ୍ ନାଲ୍ ବେଟା, ଶେମଟା ଶେମଟା, ହୁ ହୁ ବୋଟା, ହା ହା ବେଟା । [ନିଁାଦଆ; ଲଙ୍କାମରଚ]

୮୯ । ନାହୁଆ (ଲହୁଆ) ମାଇଲା ମାଛ, ନାହିଁ କରୁ କରୁ ପଣି ଯାଉଛ, ଖାଇବ (ବି) ଡିଲୁଲଗୁଛ (ମୋ ପଣତରେ ଗୋଡ଼ ପୋଛ) । [ଢଗ]

୯୦ । ନାହିଁ ନାହିଁ କହୁଥି (ଥ) ବ; ଗନ୍ଧଆ ତିଅଣ (ତୁଉଣ) ପୋଟଆ (ଆମ୍ବିଳ) ଭାତ, ହାଭି ହାଉଁ ମାରୁଥି (ଥୋ)ବ । [ଢଗ]

୯୧ । ନସ୍ୟା (ଆ)ମୀ ନାନୀ, ଦହରେ ମାରୁଛ (ଚୁଞ୍ଚୁଛ) ଗୋବର (ତବତ) ପାଣି । [ବ୍ୟଙ୍ଗ]

୯୨ । ନଆଁ ଲଣ୍ଡା, ମାଗଦଉଥାଏ ଫାଲୁଅଗୁଣ୍ଡା । [ଢ଼ଗ]

୯୩ । ନଆଁ ନାହିଁ ଧୂଆଁ ହେ (ହ) ଉଛି; ଚାଉଳ ଦାନ ହେଲ ଚୂଲି ଲାଗି (ଜଳି) ନାହିଁ, ନାଠ ତବତ ଖାଉଛି । [ବ୍ୟଙ୍ଗ]

୯୪ । ନଆଁ ଲ (ଲା) ଗା ଘରେ ରନ୍ଧିବ ନାହିଁ; ଝଣ୍ଟିଆ ପଥୁରି ଭାଟିକିଲା ମାଡ଼, ଆଉ ଦାନାକେତେ ଦନ୍ଧିବ ନାହିଁ । [ବିରକ୍ତ]

୯୫ । ନକଟ ତଉଲ ଦାନ ବଡ଼ଲୁ, ଲାଗି ହୁଏ ଯେଉଁ ଯାଏ ତଳକୁ । [ଯଦୁମଣି ରହସ୍ୟ; ଜଣେ ରାଜା ପର୍ବତ ଉପରେ ଯାଉଥିଲେ, ଆଉ ଜଣେ ରାଜା ପର୍ବତର ନିମ୍ନଦେଶରେ ଥିବା ବାଟରେ ଯାଉଥିବାର ଦେଖି ତଳେ ଯାଉଥିବା ରାଜାଙ୍କୁ ପ୍ରଶଂସା କରି କହିଥିବା ଢଗ]

୯୬ । ନଆଁରେ ପଶ, ଚୂଲିରେ ପଶ, ଗାତରେ ପଶ । [ଅଭିଶାପ; ତୋର ସର୍ବନାଶ ହେଉ]

୯୭ । ନକମାଦାଣ୍ଡି କ କରେ ବସି ? ମୁହଁ ଦେଖୁଥାଏ ମୁକୁର (ଦର୍ପଣ; ଆରସୀ) ଘଷି (ମୁହଁ ମାଜୁଥାଏ ହାତରେ ଘଷି) । [ବ୍ୟଙ୍ଗ]

୯୮ । ନଟଉଇମା ଧୋବଣୀକି କଟେଇମା ଶଉରୁଣୀ । [ଦୁଇ ଦୁଷ୍ଟଲୋକଙ୍କ ମିଳନ ପ୍ରତି [ବ୍ୟଙ୍ଗ]

୯୯ । (ତା ଘରେ) ନିତ୍ୟ ଗ୍ରହାଘ ଲାଗିଛି । [ବ୍ୟଙ୍ଗ]

୧୦୦ । ନମୁଣ୍ଡିଲୋ ! ତୋର କେହି ନାହିଁ ମୋର କେହି ନାହିଁ· ମୋତେ ମାଡ଼ ହୋଇ ଶୋ । [ଢଗ]

୧୦୧ । ନରମାଇଲ ! କାହିଁ କଥା ନେଇ କାହିଁ ମାଇଲ । [ଢ଼ଗ]

୧୦୨ । ନର୍ବାଣୀ ଆଖଡ଼ାରେ ଅଧିକାଂଶ (ଟହଲିଆ) ମାଲିକ । [ବ୍ୟଙ୍ଗ]

୧୦୩ । ନିର୍ଲଜ୍ଜ (ଜ) ମୁହଁରେ ବାଲ, ତାହି ବରଡ଼ା ଲଣ୍ଡାଏ ଜାଲ । [ବ୍ୟଙ୍ଗ]

୧୦୪ । ନିର୍ଲଜ୍ଜପରେ ଥୋବରା କୁଣିଆ । [ବ୍ୟଙ୍ଗ]

୧୦୫ । ନିର୍ଲଜ୍ଜ ଲତ୍ର ! ଟେକଟାକ ଦେଲେ ପିଢ଼ାକୁ ଯାଉ । [ବ୍ୟଙ୍ଗ]

୧୦୬ । ନିର୍ଲଜ୍ଜଘଣ୍ଟ ! ପିଢାଢଅଣକୁ କୋଚଲା ଚଟୁ । [ଢଗ]

୧୦୭ । ନିଃଶଙ୍କ ପଲ୍ଲୀ ! ଗୋଚନା ଓପରେ ସିନ୍ଦୁରକଲ । [ବ୍ୟଙ୍ଗ]

୧୦୮ । ନୂଆ ତେଲଘଞ୍ଚି କାଣ୍ଡି; ତୁମେ ଚାଲୁଥିବ କଲିକତା ବାଟ, ମୋ ମନ ହଉଛି ପାଣ୍ଡି । [ବିଦେଶ ଯିବାକୁ ଉଦ୍ୟତ ସ୍ୱାମୀ ପ୍ରତି ସ୍ତ୍ରୀର ଶୋକବଚନ]

୧୦୯ । ନୂଆଟୋକାହୁଟି; ନଈକ ଗାଧୋଇ ଯିବୁ ନାହିଁଟି [ଢ଼ଗ ବା ଶିଶୁବଚନ]

୧୧୦ ନୂଆ ଖଣ୍ଡୁ ବାନ୍ଧି, ପିତଳ ଚଢ଼େଇ, କେତେ ଅନଉଛୁ ଝୋକା ରେ; ଧନ ଷୋଳପଇଡ଼ ପାଇଟି ସାରିଲି, ତୋ ଘରେ ଶୋଇଲି ଏକା ରେ । [ଢଗ]

୧୧୧ । ନୂଆ ଖଡ଼ଖଡ଼ ଜୁଆ ଗଉଡ଼ କୁ ମୋ ନୂଆବେଦ ହୁ । [ଢଗ ବା ଶିଶୁବଚନ]

୧୧୨ । ନୂଆଗଡ଼ ଗୁଆଳ ଆସିଛୁ ଯେବେ, ଜଣକୁ ଛାଡ଼ିକରି ଖାଆ ଦମସ୍ତେ । [ଢଗ]

୧୧୩ । ନୂଆ ନୂଆ ଧନାକେତେ; ନୂଆ ଦେଖି ପୁରୁଣା ପାଚୋଶ ଦେଲେ, ଦୂର କରିଦେଲ ମତେ । [ବ୍ୟଙ୍ଗ]

୧୧୪ । ନୂଆଶିଆ ଧନ ଯାଇ ପହଞ୍ଚିଲି ବନମାଳିପୁର ହାଟେ; କିଣି ଆଣିଥିଲି ପନ୍ନପଶିବା ମାଇଲି ବରଷକେତେ । [ବ୍ୟଙ୍ଗ]

୧୧୫ । ନୂଆନବ ଡନ ଗୋଷ୍ଠୀ; ନୂଆକରି ଯେଉଁ ବଚନ କହିଲି, ଅବନା ଅକ୍ଷରଗୁଣ୍ଠି । [ନିଁାଦଆ; ଦଣ୍ଡବନ୍ତ]

୧୧୬ । ନେଉଳଭାଇ ! ଯେଣେ ଇଚ୍ଛା ତେଣେ ଯାଇ । [ଢଗ]

୧୧୭ । ନୋହିଲା ଘରକୁ ହୋଇଛୁ ବଲା, ଥିରି ଥିରି କରି କାଟୁଛୁ ଗଲା (ନହିଁ ବୋଲି କାଟି ଦଉଛୁ ଗଲା ) । [ବ୍ୟଙ୍ଗ]

୧୧୮ । ନୋଳିଆ ହାତରେ ମାଛ; ନୋଳିଆ ଦଉଛୁ ମୁଣ୍ଡ ହଲେଇ, କିଏ ସେ ଦେଖିବ ଆସ । [ନୋଳିଆ ଶବ୍ଦର ୨ଟି ଅର୍ଥ ପ୍ରୟୋଗ; ବ୍ୟଙ୍ଗ]

୧୧୯ । ନେଉରଟିଏ କଣିଥିନ ଗୁଉରପୁରାଏ ଦେଇ; କଦଳୀର ପୂକ୍ତିଏ ଦେଲେ ମେଟେ; ପରେଇ ଗିମି ସୁର୍କ୍ଷି । [ବ୍ରାହ୍ମଣୀ ପାଲୁଣୀ ଅଦଙ୍କ ବ୍ୟବହୃତ 'ଲ' ସ୍ଥାନରେ 'ର' ଥିଲି ସ୍ଥାନରେ ଥିନ' କଦଳୀ ସ୍ଥାନରେ 'କଦର' ମତେ ସ୍ଥାନରେ 'ମେଟେ' ପୂଲଏ ସ୍ଥାନରେ 'ପୁରଏ' ଯିବି ସ୍ଥାନରେ 'ଗିମି' ଶବ୍ଦ ପ୍ରୟୋଗଦ୍ୱାରା ସେମାନଙ୍କ ଭାଷା ପ୍ରତି ବ୍ୟଙ୍ଗ]



## ( ପ )

୧ । ପଇସା (କଉଡ଼ି) ନ ଥାଇ ମୁଲଉଥାଏଁ, ଦେଖୁଥି (ଥୋ)ଲେ (ଦେଖିକରି) ପେଟ ଫୁଲଉଥାଏ । [ବ୍ୟଙ୍ଗ]

୨ । ପଇତା ବ୍ରାହ୍ମଣଙ୍କର ହଜମି ଗୋଲି । [ବ୍ୟଙ୍ଗ; ଆଧୁନିକ ପଇତାଧାରୀ ବ୍ୟକ୍ତିମାନେ ପଇତା ପ୍ରଭାବରୁ ଅନେକ ଅଖାଦ୍ୟ ଖାଇ ସମାଜରେ ପାର ପାଇଯାଉ ଅଛନ୍ତି]

୩ । ପଖାଳଭାତ (ସାଙ୍ଗ)କୁ (ରେ) ନ ଥାଏ ଲୁଣ, କହେ (ମିଛ, ପୁଅ) ବୋଲୁ (ଲେଜୁ) ଥାଏ ତିନି ଚାରିଣ । [ବ୍ୟଙ୍ଗ]

୪ । ପଖାଳଭାତରେ ଘି ! ତୋର ବାପ ଖାଇଥିଲା କି ? [ବ୍ୟଙ୍ଗ]

୫ । ପଗ୍ଡି (ପୁଣ୍ଡି) ପଇଡ଼ ! ଭସି ଯାଉଥି (ଥୋ)ଲା ମହିନଣ୍ଡର, ଧର ଆଣିଥିଲି (ରଖିଥିଲି) ତଟେ; ଟାକୁଆଗାଲରେ ମାଉଁସ ଲଗିଲା, ଜବାବ (ଉତ୍ତର) ଦଉଛୁ ମତେ । [ବ୍ୟଙ୍ଗ]

୬ । ପଞ୍ଚ୍ରାସୀ କର ଉଠିଲେ ପୁଅ, ତାଙ୍କ ହାତକୁ ପୋଥି ଦଅ (ଲେଖନ ପତର ହାତକୁ ଦଅ) । ପଢ଼ିବାକୁ ଯିବାକୁ ଅନଚ୍ଛନ୍ତି । [ବ୍ୟଙ୍ଗ]

୭ । ପଢ଼(ଢ଼ୁ) ଶୁଣ୍ଡୀଘର ପିଠା ଦେଖି ମନ ରବେଇଖବେଇ; ଘସି ଫଡ଼ାକରେ ଗୁଡ଼ ଲଗା (ଗେ)ଇ, ଭଡ୍ ଭଡ୍ ଗେ୍ରବେଇ । [ଢଗ]

୮ । ପଛ ପାପକୁ ପର୍ଚତ (ପ୍ରାୟଶ୍ଚିତ, ପ୍ରାୟଶ୍ଚିତ), ଆଗତ ପାପକୁ ବାବନା (ପଠାଣ) ଭୂତ । [ଢଗ]

୯ । ପଣାକୁ ଚେନା, କହି ଯାଇଛନ୍ତି ଗୋବର୍ଦ୍ଧ ନନା । [ଢଗ]

୧୦ । ପତରକ ଭାତ କୁକୁର ଖାଉ, ଘରେ ନ ଥାଉ ଖୁଦ (ଦୁ) ଯାଉ । [ବ୍ୟଙ୍ଗ]

୧୧ । ପଥର ଭାଡ଼ି ଖସିଲା; ଜାଣ ନବ ବୋଲି ପଠାଣ (ଶାଳମ, ନାହାକ) ଟୋକା, ଦୁଆର ମାଡ଼ି ବସିଲା । [ଢଗ]

୧୨ । ପଥର ଭସି ଭସିକା ଯାଉଛି, ତା ଉପରେ ମାଙ୍କଡ଼ ବସି ଗୀତ ବୋଲୁଛି । [ଅସମ୍ଭବ କଥା]

୧୩ । ପଥର ଯାଉଛି ଭସି; ଆସରେ ପିଲାଏ ଦେଖିବ ଅସ, ମାଙ୍କଡ଼ ବୋଲୁଛି ପୋଥି । [ଅସମ୍ଭବ କଥା]

୧୪ । ପଦୁଆ ତନ୍ତ୍ରୀ, ଲଭ ଖାଇଗଲା (ଲେ) ମାଧ ମାହାନ୍ତି । [ମୂର୍ଖଲୋକର ଲଭଯାକ ଗୁମାସ୍ତା ଖାଏ]

୧୫ । ପରକୁ କପାଇଁ ନନ୍ଦ ? ପରପୁଅ ପରଦେଶିଆ ବନ୍ଧୁ, କେତେ ବାହୁନା (ନେ)ଇ କାନ୍ଦୁ । [ଢଗ]

୧୬ । ପରଘରେ ଆଏ ପର ପଗଣୀ, ତୋଗ୍ରଣି (ଦୋଓଡ଼ା) ନ ଖାଏ ବେଳ ଜାଣି । [ଢଗ]

୧୭ । ପରପୁଅ ମଲା, ହିଁ, ବେଗ ବାହାରେ ବାହାରେ ଗଲା । [ଢଗ]

୧୮ । ପରମଲା ବାଉଏ ! ଦନେ ଯିବା ସଭଏ । [ଢଗ]

୧୯ । ପର (ପର୍କା) ମାଲ୍ ପରଖାଏ, ହାଗ୍ (ର)ମ୍ ଯାଦା ଶୋଢ଼େ (ଡ଼ା)ଇ ଥାଏ । [ଢଗ]

୨୦ । ପରଲୁଗା ପିନ୍ଧ ଜାତକୁ ଯାଏ, ଲୋକେ ପଗ୍ଚରଲେ ମୁଣ୍ଡ ହିଁଗାଭୁ ଥାଏ । [ଢଗ]

୨୧ । ପରକୁ ପର; ଭାତ ନ ଦଏ (କବାଟ କଲୁଛି) ଦନ ଦପହର । [ଢଗ]

୨୨ । ପରଧନରେ; ବନ୍ଧୁ ବାନ୍ଧୁଛୁ (ବେଉପୁଛୁ, ଶଙ୍ଖୁଣୁଛୁ, ଅରଜୁଛୁ) । [ବ୍ୟଙ୍ଗ; ପରର ଗଳଗ୍ରହ ବ୍ୟକ୍ତି ପ୍ରତି]

୨୩ । ପର (ମଗି) ଝିଅଙ୍କର ଘୃତର (ଘୃତୁଖା) ଦେଖ (ଭାର) । [ବ୍ୟଙ୍ଗ]

୨୪ । ପରରଧନ, ପରଧନ ଦେଖି ଉଚ୍ଛନ୍ନ ମନ । [ଢଗ]

୨୫ । ପର (ପଡ଼ଶା, ପଡ଼ଶୁଣୀ) ଘରେ ମଙ୍ଗଳବାର କରୁଛି (ଉଜଉଛି) [ବ୍ୟଙ୍ଗ, ପରର ଗଳଗ୍ରହ ବ୍ୟକ୍ତିପ୍ରତି]

୨୬ । ପରର ଦେଖି, ମୋହର ତେଅଁଲ (ତେଅଁଛୁ) ତାହାଣ ଆଡ଼ି । [ବ୍ୟଙ୍ଗ]

୨୭ । ପଚାଶ ହଜି ! ପଚାଶ ଭୁଞ୍ଜିଲା ତୋମୁଖ (ଶ୍ରୀମୁଖ) ଦେଖି । [ଢଗ]

୨୮ । ପରୁଞ୍ଜି ମଶିଣା (ଚଟେଇ)ରେ ଶୋଇ, ଲକ୍ଷେ ଟଙ୍କାର ସପନ ଦେଖୁଛୁ (ଦେଖ : ) [ବ୍ୟଙ୍ଗ]

୨୯ । ପରହାସ କଥା କହିଲି ମୁହିଁ, ପରମତୁଟକ ବୁଝିଲୁ ଭାଇ (ତୁହି) ? [ବ୍ୟଙ୍ଗ]

୩୦ । ପର୍ବତଗିଲା ମାଙ୍କଡ଼କୁ କେନ୍ଦୁମଞ୍ଜି ଟାଏ । [ବ୍ୟଙ୍ଗ, ନ୍ୟାୟ]

୩୧ । ପର୍ବତଶିଖରେ ଆମ୍ବ ଗଛଟି (ଟିଏ) କିସୁନ୍ଦର ବଢ଼ିଲାଛୁ; ପାଚିଥିଲେ ସିନା ତୋଳି ଖାଆନ୍ତୁ, କଞ୍ଚା ଯେ ଦୋଳି ଖେଳୁଛୁ; (ଲାଗିଥିଲେ ମୁହିଁ ପାରି ଖାଆନ୍ତି, ଉଞ୍ଚରେ ଦୋଳି ଖେଳୁଛୁ) । [ଢଗ]

୩୨ । ପର୍ବତ ଶିଖରେ ଟେକା (କି) ପଥର ଲୋ, ରଗଡ଼ିଲି ମୁଗ (ଗୁ) ଯାଇ; କାଶୀରେ ଦାହିଣ (ଗଙ୍ଗା ସ୍ନାହାନରେ) ଏ ଫଳ (ଏ ବର) ପାଇଛୁ, ମୁରୁଛିଲି ବାପ ଭାଇ । [ଢଗ]

୩୩ । ପଳା (ଲେ)ଇ ପଶିଲି ମାଉସୀ ଘରେ, ମାଉସୀ ମାଇଲି (ମାରୁଛି, ତଡ଼ୁଛି) ଦପହରେ । [ଢଗ]

୩୪ । ପସାରୁଣି ପସ ପ୍ରାପ୍ତେ ଦହି ବାସୁଛି । [ବ୍ୟଙ୍ଗୋକ୍ତି]

୩୫ । ପହିଲେ ଆଦର ପଲ ଷାଠିଏ, ଦୋଷରେ ଆଦର ଚଳେ ଢଣେ; ଦିନକୁ ଦିନ ଆଦର ତୁଟେ (ତୁଟଇ), ପଛକୁ ରହଇ (ରହେ) ଝଧକରଣି । [ଢଗ]

୩୬ । ପାଇଟି (ଆଡ଼ଢ) ସାରିଲି (ସାଇଲି) ଘଡ଼ିଅଧରେ, ଶୋଇଲି ଯାଇ ମୁଁ ହେଁସ କାନରେ (ଯାଜିସୁନ ହୋଇ ଶୋଇଲି ଘରେ) (ପଣ୍ଡିନ୍ତ ପାଶଲି ଚିର୍କି ଶାଳରେ) । [ବରଦଣୀର ଅନୁଚନ୍ତା]

୩୭ । ପାଇଲି ଗାଡ଼ିଆ (ଗଡ଼ିଆ) ବୋହୁଛି (ବୁହାନ୍ତି) । [ଢଗ, ନ୍ୟାୟ]

୩୮ । ପାଚି (କେ)ଲି ଆମ୍ବକୁ ଫାଲେ; ବାପା (ନନା) ଡାକୁଛନ୍ତି ଦାଣ୍ଡଦୁଆରେ ଲୋ; ଲବଙ୍ଗୀ ନାହୁଁ କ ଘରେ, ମୋ ପ୍ରଭୁ ସେ । [ଶିଶୁଗୀତ]

୩୯ । ପାକଲ (ପାଚଲ) ଗମ୍ଭୁଛ଼. ଫାଳେ (ଝିଲେ) ପାନ, ଘରେ ନ ଥାଏ ଟେହେରେ ଧାନ । [ବ୍ୟଙ୍ଗ]

୪୦ । ପାକୁଆ ପାଚିକି ବଙ୍ଗଳା (ମହୁତା) ପାନ । [ବ୍ୟଙ୍ଗ]

୪୧ । ପାଚଲ କଦଳୀ ଗୁେପା, ଥିର ଥିର କର ମାରବୁ ବାପା । [ବ୍ୟଙ୍ଗ]

୪୨ । ପାଚଲ (ପାକଲ) କଦଳୀ ରସ; ମୁହିଁକୁ ଗ୍ରହଣ (ମୁହିଁ ଟେକିକରି) ଖ୍ରତପରଷ, କାଲିଯିବ ପରବାସ (ପରଦେଶ) । [ଢ଼ଗ]

୪୩ । ପାଚଲ କଦଳୀଟିଏ ପାଇବୁ । [ବ୍ୟଙ୍ଗ, ଅର୍ଥାତ୍ କିଛୁ ପାଇବୁ ନାହିଁ]

୪୪ । ପାଚଲ (ପ.ଚଲ) ଧାନରେ ମଇ ଦଉଛୁ । [ବ୍ୟଙ୍ଗ]

୪୫ । ପାଚଲ ପଣସ କୋଷା; ଝୁମ୍ପା ବଣ୍ଟୁଆକୁ ପାଚ୍ (କ)ଲ ଗାମୁଛା, ମୁଣ୍ଡରେ ବାଇଆ (ବାୟା) ବସା । [ବ୍ୟଙ୍ଗ]

୪୬ । ପାଚଲ (ପାକଲ) ବାଳରେ ମହଣ; ବୁଢି ! ମୁହିଁକୁ ଗ୍ରହିବ କଅଁଣ ? [ବ୍ୟଙ୍ଗ]

୪୭ । ପାଠକୁ ରସେ, ନ ପଢି ନ ଶୁଣି ଗୁଳରେ ଖୋସେ । ବ୍ୟଙ୍ଗ]

୪୮ । ପାଠ ଡ଼ାକୁଛୁ, ଏଥିଉଁ ମୁଆଜା (ପ୍ରମାଣ) ଆଉକି ଅଛୁ ? [ବ୍ୟଙ୍ଗ]

୪୯ । ପାଠ ଡାକୁଛୁ ବାପେ ! ଧାନ ପାଚେ ପୁଷ (ପୁଷ୍ୟ) ମାସେ । [ବ୍ୟଙ୍ଗ]

୫୦ । ପାଡ଼ୁଆଟାଏ ! ପଇସା ଦବାକୁ କାଢୁଆଟା । [ବ୍ୟଙ୍ଗ]

୫୧ । ପାଣି ଗଲା ନାଳେ ନାଳେ, ମାଛ ଗଲା ତହିଁ ତଳେ; ସତେକି ଖ୍ରଇନା ମନେ ପଡ଼ିବ ହେ ! ତୁମ ପୂଜା ବସୁଦଅ (ବସୁଦେବ) ବେଳେ [ଶାଶୁଘରେ ନବାଗତ ବ୍ରାହ୍ମଣ ବଧୂର ଅପଣା ବଡ଼ ଭାଇଙ୍କ ସମ୍ବନ୍ଧେ ଅନୁଚନ୍ତା]

୫୨ । ପାଣିରେ ବୋର (ଲ) ଝାଙ୍କି ଯାଉଛୁ ହଡି, ପେଟରେ ଦୁଃଖଅଛୁ (ଥାଉ) କୋଳପ ପଡ଼ି । [ଶାଶୁଘରେ ନବାଗତ ବଧୂର ଅନୁଚନ୍ତା]

୫୩ । ପାଣିକମାଇଲ ଗ୍ଭେଟ, କାହିଁ କଲକତା କାହିଁ କଟକ, ବଡ଼ ଦେଉଳରେ (ବଡ଼-ଚଣାଟେଙ୍କିରେ) ଭେଟ (କାହୁଁ ପାଇବ ତୋ ଭେଟ) । [ଢଗ]

୫୪ । ପାଣିଦେଲ ମରୁଆରେ; ବଦେଶୀ ବଚନ (କଅଁଳ ବଚନ, ଶୁଆଗିଆ କଥା) ବାନ୍ଧ (ସହି, ସାଇତ) ରଖିବ, ହାତଦାନ୍ତ ଫରୁଆରେ । [ଢ଼ଗ]

୫୫ । ପାଣିରେ ହଗିଲେ ଲାଜ ନାହିଁ, କ, ମୁହିଁରେ ହଗିଲେ ଲାଜ ନାହିଁ । [ଧିକ୍କାରବଚନ]

୫୬ । ପାଣିପଣ (ପଶ), ଗଲା ମୋ ଦୁଃଖ, ତଳେ ଦୂରରୁ ଦେଖି; ତୋ ଆଖିଠାର, ବାଙ୍କ ଗୁହାଣୀ, ଥିବ ମନେ ରଖି । [ବ୍ୟଙ୍ଗ]

୫୭ । ପାଣି ନାହିଁକ ଫନ୍ଦ ନାହିଁ ଅମୁକ ଗାଁ ନନ୍ଦ । [ନନ୍ଦ ଉପାଧିଧାରି ବ୍ରାହ୍ମଙ୍କେ ପ୍ରତି ପରିହାସ ବଚନ]

୫୮ । ପାଣ୍ଡେ ପଢ଼ିଲେ ପାଠ, ଛନ ଦଗୁଣେ ଆଠ । [ବ୍ୟଙ୍ଗ]

୫୯ । ପାନ୍ ପଛକେ ଗୋଟାସୁଦ୍ଧା ଯାଉଛି, ଦେଖିରୁ ପୁଣି ଶିର (ଶିଗ୍) କଡ଼ା ହଉଛି [ବ୍ୟଙ୍ଗ]

୬୦ । ପାନ ଖାଏ, ଗୁଆ ଖାଏ, ଲୁଗା ପିନ୍ଧେ (ପିନ୍ଧଥାଏ) ସରୁ; ଘରରେ ଯେମନ୍ତ ବୁଲୁଥାଏ, ନଗୋସେଇଁଆ ଗୋରୁ । [ବଦରସିକ ବା ଫିଟିକ ବସିକଙ୍କ ପ୍ରତି ବ୍ୟଙ୍ଗ]

୬୧ । ପାଲଙ୍କି ବାଉଁଶ ବଙ୍କା; ପଡ଼ିଲେ ପଡ଼ିବ (ଗଣିଲେ ଗଣିବ) ଡନଶ ଟଙ୍କା, କାନମଲକଡ଼ି (ଫରଫିଗ୍) ଦେଖା । [ଢଗ]

୬୨ । ପାଲଧୂଆ କାଠ ଧୂଡ଼ୁକ; ଦାଣ୍ଡମାଡ଼ଖିଆ ବଳଦଆଖିଆ. ବାଇ ହେଲା ଦରବୁଢ଼ୀକ । [ବ୍ୟଙ୍ଗ]

୬୩ । ପାଲଦଉଡ଼, ଘର ପୋଡ଼ଗଲା ଯାଆ ଧ (ଦା)ଉଡ଼ । [ଢଗ]

୬୪ । ପାଲିଙ୍କି ଉପରେ ପାଟ; ବେଦରେ ପିନ୍ଧବେ ବର କନିଆଁ, ପାଞ୍ଚ ବଉଳବାଟ । [ଢଗ]

୬୫ । ପାଲଗଦା ଦେଲ ଚେକ; ସୁନ୍ଦର (ସିନ୍ଦୂର) ଟିକାରେ ପଡ଼ିଲା ଆଖି, ନାକଫୁଲ-ଗୁଣା (ମୟୂରଗୁଣା, ଦକ୍ଷିଣୀନୋଥ) ଦେଖି । [ଢଗ]

୬୬ । ପାହିଲା ରାତି, କୁଆ (କାଉ, ଗ୍ୱେର) ନେଇଗଲା କଜଲପାତି । [ଢଗ]

୬୭ । ପାହିଲା ରାତି, ରାତିକ ଭିତରେ ବୋହିଲା (ଆଣିଲା) ହାତୀ । [ଢଗ]

୬୮ । ପିଠି ଅରକ୍ଷିତ, ମୁହଁ ନରେ (ଗ୍ୱ)ନ୍ଦ୍ର । [ବ୍ୟଙ୍ଗ]

୬୯ । ପିଢ଼ାଛଣ ଗର ଗବ; ସୀତାଙ୍କୁ ରାବଣ ନଉଛି ହରି, ବଭୂତଭୂଷଣ କର (ରଥରେ-ବସାଇ କଶ) । [ଢଗ]

୭୦ । ପିଢ଼ାରେ ପୋଇପତର; ମାହାନ୍ତିଟୋକାକୁ ଭଲ ସାଜିଛି, ଲେଖନ ତାଲପତର । [ଢଗ]

୭୧ । ପିଢ଼ା (ବାଡ଼)ରେ ସଜନାଛୁଇଁ; ଯେତେ ରାତି ହେଉ (ହେଲେ)ଆସିବ (ଫେରବ) ମୁହିଁ, ଭିତ ପଖାଳବୁ (କବାଟ କଲବୁ) ନାହିଁ । [ଢଗ]

୭୨ । ପିତଳ ! ହାତକୁ ଲାଗିଲା (ଲଗେ) ଶୀତଳ । [ଢଗ]

୭୩ । ପିଢ଼ାରୁ (ଠାଆରୁ) ନ ଉଠେ ବର, ତାକୁ ଧରାଧର ବାଗ୍ଭ କର । [ବ୍ୟଙ୍ଗ]

୭୪ । ପିତଳମୁଦ, ଏଥିପାଇଁ (ପେଇଁ) କିଆଁ ଏତେ ସିଦ୍ଧି ? [ବ୍ୟଙ୍ଗ]

୭୫ । ପିଢ଼ା ଫାଟେ, ଲହୁ ଲେଉଟେ; ତେବେ ସେ ବାହ୍ମଣ ଠାଆରୁ ଉଠେ । [ପେଟୁ ବ୍ରାହ୍ମଣ ପ୍ରତି ବ୍ୟଙ୍ଗ]

୭୬ । ପୀତାଶାଗ ବୁଦ ବୁଦ; ବୁଚେଇ (ପୀତେଇ) ଗୋଡରେ ଯାଉଛି ମୁଦ, ଗ୍ୱଲୁଥାଏ କୁଦ କୁଦ (ପିନ୍ଧିଛି ମୁଗେଇ ଖଦ) । [ବ୍ୟଙ୍ଗ]

୭୭ । ପିତାଶାଗ କୁରୁବେଲ (ତାଳତାଳ); ସତେ କ କାଳଆ ମୋ ଧନ ନବ (ନବ୍ରା), ମନ ସିନା ବଢୁଥିଲ । [ଢଗ]

୭୮ । ପିତାଶୁଖୁଆର ମଥା; ତୋ ଆଗେ ତରୁଣୀ କଏ କହିଲ, ମୋ ପାଣି ବୁହା କଥା । [ଢଗ]

୭୯ । ପିତେଇ ନାମ ହସିଲ, ଚହଟଚମ୍ପା (ଗଭରୁ ଦୁଲଭ) ଖସିଲ (ମହମହ ହୋଇ-ବାସିଲ) । [ବ୍ୟଙ୍ଗ]

୮୦ । ପିମ୍ପୁଡ଼ି ଗଳିବାକୁ ବାଟ ନାହିଁ, ହାତୀ ଗଳି ଯାଉଛି । [ବ୍ୟଙ୍ଗ]

୮୧ । ପିତାଶାଗ ବୋଲେ ମୁଁ ଗୁହ୍ଵରୁ ଜାତ, ମତେ ନ ଖାଇଲେ ନ ରୁଚେ ଭାତ । [ଶାଗ ଗୀତ]

୮୨ । ପିମ୍ପୁଡ଼ି ରକତ, ଟେପେ ଭଣାର ପିତ୍ତ; ମିଶାଇ (ମହୁରେ) ଖାଇଲେ ଗୁଣ ବହୁତ । [ପଡ଼ିହାର ବଚନ]

୮୩ । ପିମ୍ପୁଡ଼ି ଦୁଧ, ଯିଏ ଖାଇଲେ ଛୁଡ଼ିଇ ନଦ । [ପରିହାସ]

୮୪ । ପିମ୍ପୁଡ଼ି ମୁହାଁ, ଫିମ୍ପୁଡ଼ି ମାରୁଛି ମୁହାଁକୁ ଗୁହାଁ । [ବ୍ୟଙ୍ଗ]

୮୫ । ପିମ୍ପୁଡ଼ି ଖାଇଲା ଗୁଡ଼; ସାଙ୍ଗ ହୋଇ ଯିବା ଜ୍ରୈବନଗର, ପଡ଼ିଛି ବାଡ଼ିରଣୀବୁଢ଼ (ବୁଢ଼ୀକି ସାଙ୍ଗରୁ ତଡ଼) । [ଢଗ]

୮୬ । ପିଲ୍ଲଟି ଧନୁ ମୁଣ୍ଡରେ ଟୋପି, କୃଷ୍ଣଅବତାରେ ମୋହିଲେ ଗୋପୀ; ରାମଅବତାରେ ରାବଣ ମାରି, ଅଷ୍ଟଭ ବଉଁଶ ହେଲେ ଭଗାରି । [ନାଁଧିଆ; ବାଉଁଶ ଗଛ; ସେଥିରୁ କୃଷ୍ଣଙ୍କ ବଂଶୀ ଓ ରାମଙ୍କ ଧନୁ ହୋଇଥିଲ]

୮୭ । ପିମ୍ପୁଡ଼ି ବାପ (ପୁ)ଡ଼ା ବଭ (ବାହା) ହୋଇଗଲା ଗଗନେ ଉଡ଼ିଲା ଧୂଳି; ବିଲର କଙ୍କଡ଼ା ମୃଦଙ୍ଗ ଟିପିଲେ, ବେଙ୍ଗ ଦେଲେ ହୁଳହୁଳି । [ବ୍ୟଙ୍ଗ]

୮୮ । ପିଲଟି ଭଲ କହିଲ ! କୋଟିକେ ଗୋଟିଏ ହତ କହିଲ । [ବ୍ୟଙ୍ଗ]

୮୯ । ପିହାଣ (ପଲମ) ପରି କରିଛି ମୁହଁ । [ଗାଳି]

୯୦ । ପିହାଣ ଭିତରେ ଧନ ଛଟକା, ପରିଶି ଜାଣିଲେ ହୁଏ । [ଢଗ]

୯୧ । ପିହାଣମୁହିଁ ! ଯେତେ ବାହୁନିଲେ (ଧିକ୍କାରିଲେ) ଶରମ ନାହିଁ । [ଗାଳି]

୯୨ । (ମତେ) ପଶିବାକୁ ପିମ୍ପୁଡ଼ି ବାଟ ମିଳୁ ନାହିଁ । [ବ୍ୟଙ୍ଗ]

୯୩ । ପୁଅଙ୍କ ମନ ଘର ଧରି ନାହିଁ ।

୯୪ । ପୁଅଙ୍କ ନଦ ଭାଙ୍ଗି ନାହିଁ ।

{ [ଯେଉଁ ବ୍ୟକ୍ତି ଆପଣାର ଦାୟିତ୍ଵ ବା ଆସନ୍ନ ବିପଦକୁ ହୃଦୟଙ୍ଗମ କରି ନ ଥାଏ ତା ପ୍ରତି ବଦ୍ରୂପୋକ୍ତି]

୯୫ । ପୁଅର ଅଜା, ହେଲବେଳେ ବାଣ୍ଟୁଛି ଖଜା, ସେ ନ ଆସିବେ କି ? ପୁଅର ଅଈ, ପୁଅ ହେଲବେଳେ କାଟିଛି ଲହି, ସେ ନ ଆସିବେ କି ? ପୁଅର ମାମୁଁ, ପଞ୍ଚୁଆତ

ମୁଁ ଆଣିଛୁ ସବୁ, ସେ ନ ଆସିବେ କି ? ମାଉସୀ, ପୁଅ ହେଲବେଳେ ଦେଇଛୁ ଘସି (ହଳ) ସେ ନ ଆସିବେ କି ?

ପୁଅର ମାଈଁ, ପୁଅ ହେଲବେଳେ ଅଇଲେ ଧାଇଁ, ସେ ନ ଆସିବେ କି ? (ମୋ ଭଉଜ, ହାଣ୍ଡି ଶାଲଖଣ୍ଡି କରବ ଉଜ, ସେ ନ ଆସିବେ କି ? ) ମୋ ଭଉଣୀ, ଉରଣ ହାଣ୍ଡିକି ବାଣ୍ଟିଛି ପୁଣି, ସେ ନ ଆସିବେ କି ? ତୁମ ଭଉଣୀ, ଘେନ ବୁଲୁଥିବ କଲଗଉଣୀ, ସେ ରାଣ୍ଡୀ କାହିଁକି ଆସିବ ? ଶୁଭଘରେ ମୋର ଖଲ ମିଶେଇବ !

[ଆପଣା ପୁଅର ବିବାହ କି ବ୍ରତଘର ସ୍ଥିର ହେଲେ ପୁତ୍ରର ମାତା ଆପଣାର ବାପ, ମା, ଭାଇ, ଭଉଣୀ ଓ ଭାଉଜଙ୍କୁ ଉକ୍ତ ଉତ୍ସବକୁ ନିମନ୍ତ୍ରଣ କରିବା ସକାଶେ ସ୍ୱାମୀଙ୍କୁ ଅନୁରୋଧ ଯୁକ୍ତ ଓ ଜିଗର କରେ; କିନ୍ତୁ ସ୍ୱାମୀଙ୍କ ଭଉଣୀ ନ ଆସନ୍ତୁ, ଏହା ହିଁ ବାଞ୍ଛା ଓ ଚେଷ୍ଟା କରିବା ସମ୍ବନ୍ଧେ ବ୍ୟଙ୍ଗୋକ୍ତି]

୯୬ । ପୁଅ ବାଟ (ବଙ୍ଗଳାବାଟ)ରୁ ଅଇଲା ବେଳକୁ ବାପ ଗୋବର୍ଦ୍ଧନ ! ଘରକୁ ଆସ; ପୁଅ ବାଟକୁ ଗଲବେଳକୁ ଗୋବରରେ ଚଞ୍ଚଲ ଖସ (ପଳା) । [ବିଦ୍ରୂପୋକ୍ତି; ପୁଅ ରୋଜଗାର କରି ବିଦେଶରୁ ଫେରିଲେ ମାଆଙ୍କର ଆଦର ବଚନ ଓ ଘରେ ଦନାକେତେ ରହି କପର୍ଦ୍ଦିକ ଶୂନ୍ୟ ହୋଇ ଘରୁ ବିଦେଶକୁ ଯିବା ପୂର୍ବରୁ ଅନାଦର ପାଇବା ସମ୍ବନ୍ଧେ] ।

୯୭ । ପୁଅ ନାଆଁରେ ମାଆ ଖାଏ, ବାଙ୍କା ଗଡ଼ଗଡ଼ଉ (କୁରୁକୁରେଉ) ଥାଏ । ପୁଅ ନାଆଁ କରି ପୁଆଡ଼ ଖାଏ, ବାଙ୍କ କରକରି (ରଉଥାଏ) । [ଢଗ]

୯୮ । ପୁଅ ନାହିଁ ପୁତୁରି, ହେସ ନାହିଁ କତରି । [ଢଗ; ହେସଟାରୁ ଚରି ମସିଣା ଯେପରି ହୀନ, ସେହିପରି ପୁଅଠାରୁ ପୁତୁରି ହୀନ] ପୁଅ ପୁତୁରି କି ସରି ? ହେଦକୁ କତରିଭଳି ।

୯୯ । ପୁଅ ନାହିଁ ପୁଅ ପେଟରେ; ପୁଅର ବାପ (ବାବୁ, ମାମୁଁ,) ଝଡ଼ୁ ଗଢ଼ା(ଢ଼)ଉଛୁ, ଦାମୋଦର (ବନମାଳି, ରୂପଦେଈ) ପୁର ହାଟରେ । [ଢଗ]
[ପୁତ୍ର ଜନ୍ମ ହେବା ଆଶାରେ ପୁଅ ପାଇଁ ଅଳଙ୍କାର ଗଢ଼ାଇବା]

୧୦୦ । ପୁଁଇ ଛେଳି କି (କୁ) ଭନ୍ତ ଗରାଖ (ଗ୍ରାହକ) । [ବ୍ୟଙ୍ଗ]

୧୦୧ । ପୁଚରି ସାଙ୍ଗରେ କଲି କଲ; ବଡ଼ ମନ୍ଦରରୁ ଡଙ୍କାଏ ଖାଆନ୍ତି, ଭୃଷ୍ଟ ପରସାଦୁଁ ନାଶଗଲ । [ଢଗ]

୧୦୨ । ପୁରପ୍ରଧାନ ଗାଁଆ ଲଙ୍କା ମରିଚ ଲେ, କୁଆ ଖାଇଗଲ ରସ; ମେଣ୍ଢା କୁଡ଼ଆକୁ ତାଟି କବାଟ ଦିଅନ୍ତି ଦରଣ୍ଡି ଆସ (ପଶ) । [ଢଗ]

୧୦୩ । ପୁରାଣ (ପୋଥି) ବାଇଗଣ ଭିନ୍ନେ, ବାଡ଼ି ବାଇଗଣ ଭିନ୍ନେ । [ବିଦ୍ରୂପୋକ୍ତି, ପୁରାଣରେ ଲେଖାଅଛି ଧଳା ବାଇଗଣ ଖାଇବ ନାହିଁ, କିନ୍ତୁ ଜଣେ ପଣ୍ଡିତ ଧଳା ବାଇଗଣ ଖାଇବାର ଦେଖି ତାଙ୍କୁ ଜଣେ ମୂର୍ଖ ଲୋକ ପଚାରିବାରୁ କହିଲେ ଆରେ ! ପୋଥିରେ ଲେଖାଥିବା ବାଇଗଣ ଓ ବାଡ଼ିରେ ଫଳିବା ବାଇଗଣ ଏକ ନୁହେଁ]

୧୦୪ । ପୂରୁବ ଭାବ, ଏଥିପେଇଁ କଥା ଏତେ ସୁଆଗ (ପରବ) । [ବ୍ୟଙ୍ଗ]

୧୦୫ । ପୁରୁଣା ମୂଷା; ଗଡ଼ଯାକ କାନ୍ଥ ଫସର ଫସା, ଭିତରେ ଭିତରେ କାଟିଛି ଖୋଷା । [ଢ଼ଗ]

୧୦୬ । ପୁରସ୍ତମର ଡେଙ୍ଗଖଜୁର, ଶିଅଳ କାଟିଛି ମଦ; ହାତ ମୁଦ ଦେଇ ଶିଖି ଆସିଛି (କାନରେ ବାନ୍ଧି ମୁଁ ଘିନି ଆସିଛି) କାଉଁର ରାଇଜ ପଦ । [ଢ଼ଗ]

୧୦୭ । ପୂରୁବ ସିନେହ (ସୁଆଗ, ଆଦର) ନାହିଁଲେ ସଖୀ । କାଣ୍ଡ ଗରଜଇ (ଗରଜୁଛି) କଷଣୀ ଦେଖି । ପୁରୁବ ସେନେହ ଯେବେ ଥାଆନ୍ତା, କାଣ୍ଡକୁ କଷଣି ଲାଗି ଯାଆନ୍ତା । [ଢ଼ଗ]

୧୦୮ । ପୂରୁବ କହେ୍ଲଇ (ମାଧିଆ, ଗୋପିଆ, ମଧୁଆ) କି ? କହେ୍ଲଇଁ ହାତରେ ଟଙ୍କା ଠୋକର, ମଣିଷ ଚହ୍ନଇ କି । [ବ୍ୟଙ୍ଗ]

୧୦୯ । ପୂରୁବ ସନେଇ କି ? ସନେଇ କାନ୍ଧରେ ପାଚିଲ (ପାଚିଲା)ଗାମୁଛା, ମଣିଷ ଚହ୍ନଇ କି ? [ବ୍ୟଙ୍ଗ]

୧୧୦ । ପୂରୁବ ସଦେଇ କି ? ସଦେଇ ହାତରେ ଯାଉଁଳାମୁଦ, ତାକୁ ମଣିଷ ଦିଶଇ କି ? [ବ୍ୟଙ୍ଗ]

୧୧୧ । ପୂରୁବ ସେନ୍ଦେଇ କି ? ସେନ୍ଦେଇ ଗୋଡ଼ରେ ପାହୁଡ଼ ବଳା, (ଯାଉଁଳାମୁଦ) ମଣିଷ ଚହ୍ନଇ କି ? [ବ୍ୟଙ୍ଗ]

୧୧୨ । ପୂରୁବ ପିତେଇକି ? ପିତେଇ ନାକରେ ଦନ୍ଥିଣୀ ନୋଥ, ପିତେଇ ମଣିଷ ଚହ୍ନଇ କି ? [ବ୍ୟଙ୍ଗ]

୧୧୩ । ପୂରୁବେରେ ଥିଲ ଚପାଟାଏ, ଏବେ ହୋଇଲ ମହାଟାଏ । [ବ୍ୟଙ୍ଗ]

୧୧୪ । ପୁରୁଷ ପଣକୁ ଦାଶରଥୀ । ବୁଢ଼ା (ଟୋକା) ଦଉ (ଦେଉ) ଥାନ୍ତି ଗୃହକଢ଼, ଅଣ୍ଟାରେ ମାଉଛ (ଖୋସିଛି) ହିଙ୍ଗୁଳକାଢ଼ । [ବ୍ୟଙ୍ଗ]

୧୧୫ । ପୁରୁଷ ପୁଅ, ଯେତେ ହଗିଦେଲେ ନ ଲାଗେ ଗୁହ । (ଢ଼ଗ) (ଆମ ସମାଜରେ ପୁରୁଷ ପୁଅର ଆଚରଣ ନଷ୍ଟ ହେଲେ ସମାଜ ତାହା ଧରେ ନାହିଁ, କିନ୍ତୁ ସ୍ତ୍ରୀ ଦୋଷ କଲେ ତାକୁ ଗୁରୁଦଣ୍ଡର ବ୍ୟବସ୍ଥା କରିବା ରୀତି ଥିବ) । [ବ୍ୟଙ୍ଗ]

୧୧୬ । ପୁରୁଷୋତ୍ତମ (ପୁରୁପ୍ରମ)ର ତେଙ୍ଗ ନଡ଼ିଆ, ଓହୋଳି ପଡ଼ିଲ (ଛୁ) ପେଣ୍ଡା, କାଲ୍ ଆସିବ ମୋ ନୂଆ ସମୁଦ (ସମୁଦୁଣୀ) ଖାଇବ ନଡ଼ିଆମଣ୍ଡା; (କାଲିସିନା ଥିଲି ଚେକାଠାକଣିଆ, ଆଜି ହେଲଣି ଭେଣ୍ଡା), (କାଲି ଖାଉଥିଲି କହୁଣୀ ମାଡ଼, ଆଜି ମାରୁଛୁ ହେଣ୍ଡା) । [ଢଗ]

୧୧୭ । ପେଗ୍ସ ! ଆରଜନମରେ ଲୁହା ଗ୍ରେରେଇ (ଗ୍ରେରଣୀ) (ଦେବଗୁରଙ୍କର ଅଁଠା ଖାଇ), ହାତ ଗୋଡ଼ ତୋର ମେଞ୍ଚା । [ଢଗ ବା ଲୌକିକ ସଂସ୍କାର]

୧୧୮ । ପେଗ୍ସକୁ ପେଚୀ, ଯହିଁ (ଦହେଁ) ବସିଛନ୍ତି ମାଉସ ମେଞ୍ଚି । [ଢଗ]

୧୧୯ । ପେଜ ପାଇଁକି (ଯାଙ୍ଗକୁ) ନ ଥାଏ ଲୁଣ, ପଖାଳ ଭିତରେ ଟକେ ଡଅଣ (ମିଛେ ବୋଲୁଥାଏ ଟକେ ଉନ୍ନଣ) । [ବ୍ୟଙ୍ଗ]

୧୨୦ । ପୋଇଲିପୁଅର ଘୃତର ଦେଖ, ପେଜ ପିଅଟେଇଁ ବାଜଇ (ବାଜୁଛି) ଢେଁ । (କ୍ଷତ୍ରୀୟ ଓ କରଣମାନଙ୍କ ଦାସୀପୁତ୍ରମାନେ ଆପଣାକୁ କ୍ଷତ୍ରୀୟ ଓ କରଣ ବୋଲି ପରିଚୟ ଦେବା ସମ୍ବନ୍ଧେ) । [ବ୍ୟଙ୍ଗ]

୧୨୧ । ପେଟ ରେଗର, କାନ୍ଧ ଅଲୁଗୁଣି । [ବ୍ୟଙ୍ଗ, ଯାହାର ଖାଇବାକୁ ଘରେ ଦାନା ନାହିଁ ଓ ପିନ୍ଧିବାକୁ ଦ୍ୱିତୀୟ ବସ୍ତ୍ର ନାହିଁ]

୧୨୨ । ପେଟ ବକଲରେ ମାଧିଆ ଯୋଗୀ (ବଇଷମ) । [ବ୍ୟଙ୍ଗ]

୧୨୩ । ପେଟରେ ହେଲ, ମୁଁ ନାଗ୍ନ ହାତେ ଅର୍ଜିଲି । (ଅବୈଧ ଭାବରେ ଗର୍ଭ ହୋଇ-ଥିବା ସ୍ତ୍ରୀର ଅନୁଚନ୍ତା )

୧୨୪ । ପେଟର ଝିଅକୁ ଦେଲଟି ପେଲ (ପେଟର ଝିଅକୁ ଜନମ କଲି, ମହିଦେଶିଅକୁ ଦେଲଟି ପେଲ) । [ବହୁ ଦୂର ଦେଶରେ କନ୍ୟାକୁ ବିବାହ ଦେଇଥିବା ମାତାର ଅନୁଚନ୍ତା]

୧୨୫ । ପେଟ ବକଲରେ ମାଧିଆ ତନ୍ତ୍ରୀ; ଘରେ ରହିଗଲେ (ପଶିଗଲେ, ପନ୍ଧ ମହାନ୍ତ) । [ବ୍ୟଙ୍ଗ]

୧୨୬ । ପେଟେଣ୍ଟ ମେଡ଼ିସିନ୍ ପାନକେ ଯାଆନ୍ତ ବେମାର ଛୁ ! (ସିଦ୍ଧହସ୍ତ ଯାଆନ୍ତାଣୀଙ୍କ ଝଣ୍ଡିଆ ଗୁଣ୍ଡୁଣୀ ପ୍ରହାର ରୂପ Patient Medicine ବା ସିଦ୍ଧ ବୁଟି ଦ୍ୱାରା ଯାଆନ୍ତଙ୍କ ଲଡ଼୍ବଡ଼ିଆ ବା ବହୁଲିଆ ଅଭ୍ୟାସ ଛାଡ଼ିସିବା ଗଳ୍ପ ସମ୍ବନ୍ଧେ) । [ବ୍ୟଙ୍ଗ]

୧୨୭ । ପେଣ୍ଟି ପେନ୍ତୁ ଆମ୍ବ ଦୋଳି ଖେଳୁଛ (ଉକୁଚ ଅଛ)ଲେ, ମୋ ମନ ଯାହା ହଉଛି; ନଗି ଝଣ୍ଟେ ଥେଲେ ପାରନଅନ୍ତ ଲେ, (ହାତକୁ ବଢ଼େଇ ତୋଳି ନଅନ୍ତ ଲେ) ମତେ ତ ଡର ମାଡ଼ୁଛି । [ଢଗ]

୧୨୮ । ପେଲଣା ଗୁଣ୍ଡା ! ନଡ଼ ଚୁନା ମାଛ, ନଡ଼ ମକା (ଭଜା) । [ଢଗ]

୧୨୯ । ପୋଇଲ ଧରୁଛୁ ପାଣି ଝପଗ୍ର, ପୁଅ ଗାଧୋଇବ ପଗ୍ର ! ଶାଶୁ ଧରିଛନ୍ତି ପୁନା ଶାମୁକା ନାହି କାଟିବେ ପଗ୍ର ! ଶଶୁର ଯାଉଛୁ ବଣିଆ ଡାକି ଖଡ଼ୁ ଗଢ଼ା (ଢେ) ଇବେ ପଗ୍ର । [ଆସନ୍ନ ପ୍ରସବା ବଧୂର ଅନୁଚନ୍ତା ବିଷୟକ ବ୍ୟଙ୍ଗ]

୧୩୦ । ପୋଇଲ ଆଡ଼ର ପୁଅ, ତାଙ୍କୁ ଠାଆରେ ବଢେଇ ଦିଅ; (ଯାଆଲ୍ତ ମର୍ଯ୍ୟାଦା (ବ୍ରଦାକ) ଦିଅ । [ବ୍ୟଙ୍ଗ; ଗ୍ରଜାଆଦିଙ୍କ ରକ୍ଷିତାସ୍ତ୍ରୀଙ୍କ ପୁତ୍ର ବା ଯାଆଲ୍ତମାନେ ବେଶି ଆଦର ଖୋଜିବା ଦମ୍ଭରେ]

୧୩୧ । ପୋଖରୀ ଖୋଳେଇଲି ଗୁରୁଚଉରସ, ତମ୍ବ ପାଡ଼ (ର) ଗଲ ଅଣ୍ଡିରି ହଂସ, ମାଥ ଅଟେ ପୁଣି ଚକରବର୍ତ୍ତୀ, ତମ୍ବ ଗଢେ ଖେଲେ ଷାଠିଏ କାଢ । [କାଁଦିଅ, କୁମ୍ଭାର ଉହ୍ମା ଓ ଚକ ଏବଂ ତହିଁରୁ ବାହାରିବ ଅସଂଖ୍ୟ ହାଣ୍ଡି ମାଠିଆ ଆଦି ପାତ୍ର]

୧୩୨ । ପୋଡ଼ା ପାଇଁକି ନ ପାଏ (ଥାଏ) ଲୁଣ, ନାଡ ଲେଡ଼ୁ (ଖୋଜ) ଥାଏ ତିନାଡ (ତୁ) ଉଣ । [ବ୍ୟଙ୍ଗ]

୧୩୩ । ପୋଡ଼ା ମୁଣ୍ଡି ଖାଏ ଘରେ ନାହିଁ, ଦାନ୍ତେ ଝଟହଲଇ (ଝଟହଲୁଛି) ପାନ ଖାଇ; ପାକ (ଚ)ଲି ଗାମୁଛି କାନ୍ଧେ ପକାଇ । [ବ୍ୟଙ୍ଗ]

୧୩୪ । ପୋଡ଼ା କରମ (ମୁହାଁ)କୁ ନାହିଁ ଧରମ । [ନିର୍ଲଜ୍ଜ ବ୍ୟକ୍ତିକୁ ଗାଳି]

୧୩୫ । ପୋଡ଼ାମୁହଁ ବାନ୍ଦର ! ମୋଠଉଁ ନାହିଁ ସୁନ୍ଦର ! } [ହନୁମନ୍ତ ଲଙ୍କପୁରରେ
୧୩୬ । ପୋଡ଼ାମୁହାଁ ବାନ୍ଦରୀ ! ମୋଠଉଁ ନାହିଁ ସୁନ୍ଦରୀ ! } କନା ବାନ୍ଧି ନିଆଁ ଲଗାଇ ଲଙ୍କା ପୋଡ଼ି ସେ ନିଆଁ ପାଉଁଶ ହାତ ଓ ମୁହଁରେ ବୋଳିବା ଯୋଗୁଁ ମାଙ୍କଡ଼ ମୁହଁ କଳା ହେବା ପ୍ରବାଦ]

୧୩୭ । ପୋଡ଼ପିଠା ! ଏଇଥିରେ ପୁଣି ଏତେ ଛଟା (ବାରବଟା) ! ଏଇଥି ପାଇଁକି ଦାନ୍ତ-ନକୁଟା (ଦାନ୍ତରେ କୁଟା) । [ଢଗ, ବ୍ୟଙ୍ଗ]

୧୩୮ । ପୋଡ଼ାମୁହାଁ ମଣିଷ, ଗୁେରେଇ ଖାଏ ପଣସ । [ଢଗ]

୧୩୯ । ପୋଥି (ପୁରାଣ) ବାଇଗଣ, ବାଡ଼ିବାଇଗଣ ଏକା ନୁହେଁ । [ବ୍ୟଙ୍ଗ]

୧୪୦ । ପୋଷଣାହାରୀ ପୁଅ, ତାଙ୍କୁ ପିଢ଼ା (ଆସନ) ଖଣ୍ଡେ ଦିଅ । [ବ୍ୟଙ୍ଗ]



## ( ଫ )

୧ । ଫଟା ମୃଦଙ୍ଗକୁ କଡ଼ା ଗାୟକ, ତହିଁ କାଣୀ ଦାସୀ ନାଚୁଛି; ଅବୁଝା ରଜାକୁ କେମ୍ପେଇ ପାତର (ପାଳବଣ୍ଡା ମନ୍ତ୍ରୀ), ଯାହା ଇଚ୍ଛା ତାହା (ଆଣୁ ଆଡ଼ୁ ସବୁ) ବୁଝୁଛି । [ବ୍ୟଙ୍ଗ]

୨ । ଫଟା ରଇଁନ ! କଖ ରୁ ଫୁଲକୁ ପାରୁଡ଼ାପୋକ । [ବ୍ୟଙ୍ଗ]

୩ । ଫଳ ନେଲୁ, ଫୁଲ ନେଲୁ, ପତର ନେଲୁ ଚୋଳି; ଆଉ ଯାହା ଛାଡ଼ି ଗଲୁ, ନବୁ ଆସି କାଲି । [ଢଗ]

୪ । ଫଳ ଫଳ ଯାକ ତୋର, ଖୋଳ ଖୋଳ ଯାକ ମୋର । [ବ୍ୟଙ୍ଗ]

୫ । ଫଳ ଫୁଲ ପତର ଡାଳ ମୂଳ ନେଇ ହବୁ; ଆଉ ଯାହା ମୁଁ ଛାଡ଼ିଗଲି, ଖୋଳି ଖାଳି (ଖୋଳି ଖାଳି, ଗୋଟେଇ ଗୋଟେଇ) ନବୁ ।

୬ । ଫାଉ ମାଇଲା (ଫାଇଦା କଲା), ଲଭ ତେଣେ ଥାଉ, ମୂଳରୁ ଗଲା । [ବ୍ୟଙ୍ଗ]

୭ । ଫାଟକୁ ଫାଟ କାନ୍ଥ ଉପରେ ଗୋବର ଘାଣ୍ଟ । [ଢଗ]

୮ । ଫୁଲ ଫୁଟିଗଲା କଞ୍ଚନ; ଜାଳି ଦେଇଗଲା ମକୁନ୍ଦ ଉଖୁଡ଼ା (ମୁରୁକାହାଦ) ଗୋଷ୍ଠୀ ଦେଇଗଲା ବଚନ । [ବ୍ୟଙ୍ଗ]

୯ । ଫୁଲ ଫୁଟିଗଲା ଫୁଲଶଯ୍ୟା; ଲକ୍ଷେ ଭେଣ୍ଡି ଅଛନ୍ତି କାହାକୁ ଦେଇ (ମୁହଁ ଲୁଚେଇ), ମୁହଁକୁ ନ ଚାହିଁ), ଘର ଯେ (ଯି)ନା ଗଲୁ ସୁନ୍ଦରୀ । [ବ୍ୟଙ୍ଗ]

୧୦। ଫୁଲ ଶାଗୁଣା (ଶାଗୁଣି) ! ଆଉଁଷ (ମାଉଁସ) ପାଇଁକି ଏଡ଼େ ରଜ୍କୁଣା (ରଜ୍କୁଣି) । [ବ୍ୟଙ୍ଗ]

୧୧ । ଫୁଲବାସକୁ, କଥାରସକୁ, କଥା ରହିଗଲା ଧନା ଦଶକୁ । [ଢଗ]

୧୨ । ଫୁଲ ଶୁଖିଗଲା ଗଛେ; ଭାତ (ମୁହଁ)ଶୁଖିଗଲା ଖସ୍ତବସ୍ଥେ (ଯୁବାବସ୍ଥେ), ଚିଟଉ ଲେଖିବୁ ପଛେ । [ବ୍ୟଙ୍ଗ]

୧୩ । ଫଟା (ଫୁଟା) ହାଣ୍ଡିରେ ବାସି ତୋରଣି, ଦେଲେ ସାଆନ୍ତାଣୀ ମୋ ମନ ଜାଣି, ଭାତ ଗୋଟିଠଉଁ ଛାଣି । [ବ୍ୟଙ୍ଗ]

୧୪ । ଫାଲୁଆ ଫାଲୁଆ ଗୁଣ୍ଡା, ମାର ଦଉଥାଏ ପିଆଣମୁହାଁ, ବୃନ୍ଧି ବସି ଥାଏ ଭେଣ୍ଡା (ହୁଣ୍ଡା) । [ବ୍ୟଙ୍ଗ]

୧୫ । ଫୁଟିଲା ଭାତରେ ଜାଳ; ବୁଢ଼ୀ ବୋଲି କଅଁ କହୁଛୁ (ବହୁରୁ) ମତେ, ବାଡରେ ପାଚିଲା ବାଳ । [ଢଗ]

୧୬ । ଫୁଲ ଅଗଣ ରେ ଗୋଷ୍ଟି, ପଢ଼ଉଥିଲା ଶାସ୍ତ୍ର, ତା ଦେଖି ମୁଁ କୃତାର୍ଥ ହୋଇଲି, ଅନେଇଲି ପଦ୍ମ ଗୁର । ଫାନ୍ଦେ ପଡ଼ି ହେଲା କୁଳବତୀ, ଆଜି ହବ ନାହିଁ, କାଲି ହବ ନାହିଁ, ହେଲେ ହବ ପଅଶଦନ ବ୍ରତ । [ବ୍ୟଙ୍ଗ]

୧୭ । ଫୁଲ ଫୁଟେ ବଣ ମଲ୍ଲୀ, ଟୋକା ଦଅରକୁ ଟାପର କଲି, ଛପା (ଗୋଡ଼) ମୁଡ଼ ହସ (ରେ) ଇଲି । [ଢଗ]

୧୮ । ଫୁଲବିଅଁଣାର ନଳ, କାହା ପାଇଁ ଗୋସ୍ତ କରଛୁ କଳ, ମୁହଁ ଯାଇଅଛୁ ଜଳ (ଝଳ) । [ଢଗ]

୧୯ । ଫୁଲ ତ ଫୁଟିଲା, ଲଟା ତ ମାଡ଼ିଲା, ଫଳାଲା ଝୁଡ଼ଙ୍ଗ (ବରଗଡ଼ା) ଛୁଇଁ; କୋଉଁ କଥାପାଇଁ ରସିଆ ନାଗର (ପୁରୁଷ), ପଦ୍ମରେ ରହିଲା ଶୁନ୍ଧି; ରସିଆଟାଏ ! ରସିଆ ଜାନରେ ଫାସିଆଟାଏ, ଫାସିଆରେ ଝୁମ୍ପା ନାହିଁ, ଏଇଥିପାଇଁ କ ରସିଆ ପୁରୁଷ, ମୁଣ୍ଡ ହଲେଇଲା ନାହିଁ । [ବ୍ୟଙ୍ଗ]

୨୦ । ଫୁଲ (ଲୁ) ସ ମାଳ, ବାସିଫୁଲ ଦେଇ କରୁଛୁ ଅଳ । [ତ୍ରଗ]

୨୧ । ଫୁଲ ଫୁଟେ କେତକ, ମୋ କଥାଟି ଏତକ । (କାହାଣୀର ଉପସଂହାର । )



## ( ବ )

୧ । ବଉଁଶୀ ନାଦ, କଲ ପ୍ରମାଦ । [ବ୍ୟଙ୍ଗ]

୨ । ବଉଁଶଖାଇ, ତୋଠେଇଁ ଉଲେ ଦୟା ନାହିଁ । [ବ୍ୟଙ୍ଗ]

୩ । ବଉଁଶ ନକ୍ଷତ୍ର ପରପାଟୀ, ବାପ ମଲେ ସୂତା କାଟି କାଟି (ମାଆ ମଲେ ସୂତା କାଟି କାଟି), ଏବେ ନାଉଚ ଚନ୍ଦନପାଟୀ । [ବ୍ୟଙ୍ଗ]

୪ । ବଗ ! ଗୁଟଲ ଡଗ ଡଗ । [ବ୍ୟଙ୍ଗ]

୫ । ବଗର ପୁଣି ଗୁଡ଼ଖାଇ ? [ବଗ ତ ସବୁଦନେ ମାଛ ଖାଏ, ବ୍ରତାଗୃହୀ ଲୋକ ଯେନା ମାଛ ଗୁଡ଼ଥାଏ, ଏଥିପାଇଁ ବ୍ରତ ଶେଷରେ ଗୁଡ଼ଖାଇ କରେ । ବଗ କିଆଁ ଗୁଡ଼ଖାଇ କରବ ? ]

୬ । ବଗ ମୁହଁ ଶୁନ୍ଧି ବଗୁଲି ବସେ, ତୋ ମୁହଁ ମୋ ମୁହଁ ସୁନ୍ଦର ଦଶେ; (ମୁରୁକି ହସାରେ ମଧୁର ଭାଷେ) । [ବ୍ୟଙ୍ଗ]

୭ । ବଙ୍ଗାଳୀ ବଢ଼ିଲେ ବଢ଼ଇ ହୁକା, ପଠାଣ ବଢ଼ିଲେ ପକାନ୍ତି ଡକା, କରଣ ବଢ଼ିଲେ ପୂଜାର ଠାଣି, ବ୍ରାହ୍ମଣ ବଢ଼ିଲେ ଢାଳନ୍ତି (ବୁହାନ୍ତି) ପାଣି ।
[ଅନୁଭବଯୁକ୍ତ ବ୍ୟଙ୍ଗ]

୮ । ବଗ ଲେ ବଗ ! ଧାନ କୁଟିବୁ ? ନାଁ, ମୋ ଗୋଡ଼ଗୁଡ଼ାମାନ ବଙ୍କା; ବଗ ଲେ ବଗ ! ମାଛ ଖାଇବୁ ? ନାଁ, ଡହ୍ନିକ (ଡେଇଁକ) ଗୋଡେଇଁ ଅଗ । [ବ୍ୟଙ୍ଗ]

୯ । ବଙ୍ଗାଳୀ ବାବୁଙ୍କ ଖାଇବା ଠାଣି (ବଙ୍ଗାଳୀଙ୍କ ଜଲ ଖାଇବା ଠାଣି), ଫାଳେ ହନ୍ଦେଶକୁ (ମିଠେଇକି) ଗିଲସେ ପାଣି । [ଅନୁଭବଯୁକ୍ତ ବ୍ୟଙ୍ଗ]

୧୦ । ବଟା ଲେ ଗୋଡେଇଁ ବଳା, ହରୁ ସୂତାକଟା କୁଟୁମ୍ବ (ବଉଁଶ) ପୋଡ଼ା, ଆଉ ପରଗୁଣ ନ ଯା । [ଅରଟରେ ସୂତା କାଟିବା ଗୀତ]

୧୧ । ବଜ ରହୁଲ କୁତ୍ତା } ଅଇଁଠା ପତର ଚଟା (ଗୁଟି) । [ଗାଳି]
୧୨ । ବଜାରବୁଲ କୁତ୍ତା }

୧୩ । ବଡ଼ଘର ବୋଲ ଝିଅକୁ ଦେଲ, ଜୋଇଁ ଗୁଠା (ସଢ଼) ବୋଲ (ପରଗୁଣ)

ଜାଣି ନ ଥିଲ । [ବ୍ୟଙ୍ଗ]

୧୪ । ବଡଘର ବୋଲି ନାଁ ପଡ଼ୁଛି, ଅଡ଼େଇ କୁଳ ଶାଗ ସିଝୁଛି । [ବ୍ୟଙ୍ଗ]

୧୫ । ବଡ଼ଦେଉଳରେ ବାଜିଲା ଘଣ୍ଟା, ଖାଣ୍ଡି (ପୋଲ) ଖିଆଙ୍କର ଉଠିଲା ଅଣ୍ଟା । [ବ୍ୟଙ୍ଗ]

୧୬ । ବଡ଼ଦେଉଳରେ ବାଜିଲା ବୀଣା, କାଳିକା ନ ଗଲା ଗୁଜୁଳା ଜଣା । [ବ୍ୟଙ୍ଗ]

୧୭ । ବଡ଼ ବଡ଼ଙ୍କ ବାଇଦ ନାହିଁ, ବାଇଦ ବାଜୁଛି ତାଉଁକି ତାଉଁ (ତାଉଁ ତାଉଁ ହୋଇ) । [ବ୍ୟଙ୍ଗ]

୧୮ । ବଡ଼ ବଡ଼ ଗଲେ ପଥର ଫାଟି, ଧାନ ଧାନ ଅଇଲେ (ଗଲେ) ବେଢର ବାଟି ! [ବ୍ୟଙ୍ଗ]

୧୯ । ବଡ଼ଟି ବଣ ବିଲୁଆଣ୍ଡ, ସାନଟି ବାଇଡ଼ଙ୍କ ଜାଣ୍ଡ । [ବ୍ୟଙ୍ଗ]

୨୦ । ବଡ଼ ବଡ଼ ବେଇଠ କଖାରୁ, ତା ମଜା କହିବି ପଘରୁ । [ବ୍ୟଙ୍ଗ]

୨୧ । ବଡ଼ବୋହୂ ବଣିଆଁଙ୍କ, ସାନବୋହୂ ଗୁଲିକ ଦେଇ; ମଝିଅଣୀ ତେହିଁକି ଠାଣି, ଗୁଲୂଆଏ ମୁହିଁକୁ ହାଣି । [ବ୍ୟଙ୍ଗ]

୨୨ । ବଡ଼ଲୋକର ବାଏଁ (ବାଆଁରେ, ପଛରେ, ଧାଙ୍ଗରେ) ଯାଏ, ବଡ଼ ଲୋକ ମୁଁ ବୋଲାଉ ଥାଏଁ । [ବ୍ୟଙ୍ଗ]

୨୩ । ବଡ଼ବଡ଼ଜା ସିଂହପତର, ମଣି କାଢୁଥିଲା କୁଅଭିତର; ମାଆଗୋ ! ତୁମ ପୁଅ ଖରି ହଟିଆ; ଗୋଡ଼ରୁ କାଢିଲେ ସୁନା ଝୁଣ୍ଟିଆ, ବାଟଘରେ ହେଲେ (କଲେ) ଠିଆ । [ଢଗ]

୨୪ । ବଡ଼ଘର ଝିଅ ମାଇକି କଲେ, ଲୁଗାଟି ଭିତରେ ମୁଣ୍ଡଟି ଘୋଡ଼େଇ ମୁହଁଟି ଦେଖାଇ ଦେଲେ (ଲୁଗାଟି ଭିତରେ ମୁହଁଟି ଘୋଡ଼େଇ ଦାନ୍ତଟି ଦେଖେଇ ଦେଲେ । [ବ୍ୟଙ୍ଗ]

୨୫ । ବଡଘର ଠାକୁରାଣି; ଖାଆ ଖାଆ ବୋଲି ଡାକ ପଡ଼ୁଛି, ଖାଲି ଭୁଞ୍ଜା (ନଡ଼ା ଦାନ: ତୁଚ୍ଛାଟଙ୍କ) କାଞ୍ଜିପାଣି । [ବ୍ୟଙ୍ଗ]

୨୬ । ବଡ଼େଇ ହଉଚୁ କେତେ ? ଲୁଚର ମୁଣ୍ଡ ତୁ ପୋଡ଼ି ଖାଉଛୁ, ଲୁଚ ମାଡ଼ୁଥାଇ (ଅଛୁ) ମତେ । [ବ୍ୟଙ୍ଗ]

୨୭ । ବଡ଼ ଶୁଙ୍ଖୁଆର ଆଙ୍ଖି; ଖସିବେଳେ ପୁଅ ବାଟ ଚାଲୁ ଥିବୁରେ, ତତେ ମାଆ କିମ୍ବଲେଇ ସାକ୍ଷୀ । [ପ୍ରବାସୀ ପୁତ୍ର ସମ୍ବନ୍ଧେ ମାତାର ଉକ୍ତି]

୨୮ । ବଡ଼େଇଖାଇର ଗରବ ଦେଖ ! ନାଡ଼ ପୋଡ଼ିଖେ ମାଛେଇ ଦେଖ । [ହଠାତ୍ କିଛି ଗୁପ୍ତ ଧନ ପ୍ରାପ୍ତ ହୋଇ ଗର୍ବିତା ହେବା ସ୍ତ୍ରୀ ପ୍ରତି ଗାଳି]

୨୯ । ବଡ଼ା (ଡ଼ା) ଖାଉ ସକାଳୁ ଉଠି, ପିମ୍ପୁଡ଼ି ଗେବାଏ ଖୁଣ୍ଟି ଖଣ୍ଡି । [ବ୍ୟଙ୍ଗ]

୩୦ । ବଢ଼େଇ ଘରର ସାହାଡ଼ା ଡିଙ୍କି, ମୁଣ୍ଡ (ବାଆ) ବୁଲୁଥାଏ ଟେକି; ଅକଣ୍ଡା ଗୃହିଳ କଣ୍ଟେଇ ନଉଚ୍ଛି, ପୋଲ ମଣିଷକୁ ଦେଖି । [ବ୍ୟଙ୍ଗ]

୩୧ । ନଣଦେବତାଙ୍କୁ (ଦେଅଙ୍କ) ପତର (ଫଳ) ପୂଜା, ବାଲଗରଡ଼ାକୁ ଗୃଉଳ ଭଜା । [ଚ଼ଗ]

୩୨ । ବଣକୁ ଗଲି, ବାଙ୍କିଆ କଣ୍ଟୁରି ଗୁଡ଼ ଅଇଲି ? [ନାଁ ଦିଅଁ; ବିଷ୍ଣାର ଲଣ୍ଡ]

୩୩ । ବଣିଆ ଘଇତା ଯର (ଯାହାର), ନିତ ନୂଆ ଅଳଙ୍କାର ତାର (ତାହାର) । [ଢଗ]

୩୪ । ବଢଣା କଦଳୀ ଗଛ; ଛଡଣା ବତାଶ (ପବନ) ଝାଙ୍ଗି ପକେଇଲି, ଭଣ୍ଡା କଏ ନବ ଆସ । [ଢଗ]

୩୫ । ବତର ପଡ଼ିଲା (ଲେ) ଚାଉ, ଫେଣ୍ଟ ଫୋକ ତାହା (ତାଙ୍କ) ପାଇଁ । [ବ୍ୟଙ୍ଗ]

୩୬ । ବଦେଇ ଆଣିଛୁ ଭଣ୍ଡାରେ, ପିନ୍ଧା ଲୁଗା ନଏ (ନଉଛୁ) ଓଟାର । [ବ୍ୟଙ୍ଗ]

୩୭ । ବଢଣି ଡିଙ୍କି ପଡ଼ିଅଛୁ ଘର ଗୃହକଣେ, ଶୁଟେଇ ଦଉଛୁ ତାକୁ ବୁଲି ବୁଲି ଜଣେ । [ନାଁ ଦିଆ, ୩୨ ଦାନ୍ତକୁ ୧ ଜିଭ]

୩୮ । ବଟେଇ ଦଏ (ଦଉଛୁ, ଦଉଥାଏ) ପରକୁ, ବୁଙ୍କି ନ ଆସେ ଘରକୁ । [ବ୍ୟଙ୍ଗ]

୩୯ । ବନ୍ଧୁ ବୋଲି କର (କରି) ଶାମ ପରଡ଼ା; ଦଅଁ ବୋଲି କର (କରି) ବାଲି-ଗଳ (ର)ଡା । [ବ୍ୟଙ୍ଗ]

୪୦ । ବନ ବନା ଲ (ନ)ହକଲ; ବାଟେ ଚୂଳିଗଲି ସେବତୀ (ରେବତୀ, ଗେଢ଼େଇ. ମାଗୁଣୀ) ନାନି (ତନୁ ପାତେଳୀ), ଟଗ୍ର ମଲ୍ଲୀଫୁଲ ମହକଲା । [ବ୍ୟଙ୍ଗ]

୪୧ । ବନନ୍ତକୁ ଗଲି, ବଣ କୋଳି ଖାଇ, ଦାନ୍ତମୂଳ କଲି କଷା; ବନନ୍ତ ଭିତରେ ଦେଖି ଅଇଲି ମୁଁ, ରଜା ଖେଳୁଥିଲେ ପଶା । [ଢଗ]

୪୨ । ବସ୍ତୁ (ଅ'ସ ବେଳେ ଛଅଣ (ନଅଣ) ଘଇତା (କାହା'ଣେ ପାପ); ବୁଢ଼ୀ (ବୁଢ଼ା) ବଟନ (କାଳେ) ହର ମନ୍ଦିର ଚଡା (ଗ୍ରୁପ), ବୁଢ଼ୀ (ବୁଢ଼ା) ବନେ ଦେଖ ଦ୍ୱାରକା ଛପା (ଗ୍ରୁପ) । [ବ୍ୟଙ୍ଗ].

୪୩ । ବନ୍ଧ ସେ ପଟରେ ଗଞ୍ଜେଇ ଗଛ ଲୋ, ଫୁଲ ଫୁଟେ ରଙ୍ଗଣ; ମୋ ଝିଅଙ୍କ ହାତରେ ସୁନା ଲେଞ୍ଜନ ଲୋ, ବାଲିକାଠୀ ମହାଜନ, ମୋ ପ୍ରଭୁ ହେ । [ଭଉଁଣୀର ଅନୁଚକ୍ରା]

୪୪ । ବସ୍ତୁ (ଅ) ସ ଛଉ, ଦହିଯାକ କେତେ ଖେଳେଇ ହଉ (ଯାଉ) ।

୪୫ । ବରଗଛ ତଡବ୍ରି (ରେ)ଇ, ଶୋଇଲି ଶେଜରୁ ନେଲି ଉଠା (ଠେ)ଇ, ମଲ୍ଲୀଫୁଲ ମନୁରିଇ; (ମନୁରେଇ); ପୁଚ ଖେଳିବା ପାଇଁ । [ଢଗ]

୪୬ । (ପ୍ରଶ୍ନ) ବର ବରନା ଗୋ ଯାଉଛ କେଉଣେ ? ସଙ୍ଗରେ ନେବ (ସଙ୍ଗରେ ନବ) କି ଗରବ ଜଣେ ? (ଉତ୍ତର) ଆସିଲେ ଆସ, ଅଭୟ ଚରଣେ ଶରଣ ପଶ । (ପ୍ରତିବଚନ) ଶରଣ ପଶିବ କେଉଁ (କୋଉ) ଚରଣେ ? ଦହରେ ବାଙ୍କିବ ଠେଙ୍ଗା ଭରଣେ, (ଲେଉ଼ା ହେ (ହ) ବ ମୋର ଠେଙ୍ଗା ଭରଣେ) ।

[ଯଦୁମଣି ପାଇକର ଦାଣ୍ଡରେ ଗୋଟିଏ ରସିକା ଯାଉଥିବାର ଦେଖି ତା ସଙ୍ଗେ ବକ୍ରୁପୋକ୍ତି ପ୍ରଯୁକ୍ତ ]

୪୭ । ବରପେକେ କାଟେ ଘନ ଡାକୁଡ଼ା, ଦନେକେ କାଟଇ ଖିଏ; ଯାଇ ପଣ୍ଡୁଶୁଣ୍ଡୀ ପଗ୍ଗର ଅଇଲୁ ମୋଠଉଁ ଘରଣୀ କିଏ ? [ହାସ୍ୟତରଙ୍ଗ]

୪୮ । ବଉଷ (ସେ) କେ ଥରେ ଖାଏ, ମୁହଁମାଡ଼ି ପଡ଼ି (ଶୋଇ) ଥାଏ । [ନିଁ । ଦିଆ, ଘରଜ୍ୱଳ]

୪୯ । ବଳଦ ଟାଏ । [ଗାଳି, ନିର୍ବୁଦ୍ଧିଆ ଲୋକ ପ୍ରତି]

୫୦ । ବଳଦ (ଦୁ) ଟାଏ, ନାଁ, ଟୋପାଏ ଦୁହୁଁ । [ବ୍ୟଙ୍ଗ]

୫୧ । ବଳଦ ଗୋଡ଼ରେ ଦାଗୀ; ଏ ଯୁବା ବୟସ ଯାଉଛୁ ଭାଙ୍ଗି, ଏକା ପାନଖିଆ ଲାଗି । [ଢ଼ଗ]

୫୨ । ବଳପଣୀ; ପରକଳା ଦେଖି ଯାଆନ୍ତି ଖସି (ଆସନ୍ତି ହସି, ଧାଉଁଛୁ ହସି) । [ବ୍ୟଙ୍ଗ]

୫୩ । ବଲେ ପଶି ମଙ୍ଗଳବାର ଉଜଉଁଛୁ । [ବିନା ନିମନ୍ତ୍ରଣରେ ପର ଘରର ଉତ୍ସବା-ଦିରେ ଯୋଗଦେବା, ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୫୪ । ବସି ଉଠ ହଉ ଥା, ଆଲୁଏ ଆସି ଅନ୍ଧାରେ ଯା । [ବ୍ୟଙ୍ଗ, ସ୍ୱୈରପ୍ରତି]

୫୫ । (ପ୍ରଶ୍ନ) ବସନ୍ତମୁହାଁ କି (କୁ) ଉପମା ଖଟୁ, (ଉତ୍ତର) କାମ କାକର ଛଙ୍କା ଜାଲିଚଟୁ ।

[ଯଦୁମଣି ବସନ୍ତ ଚିହ୍ନ ମୁହଁରେ ଥିବା ସ୍ତ୍ରୀକୁ ଲକ୍ଷ୍ୟ କରି କହି ଥିବା ଉପମା ପଦ]

୫୬ । ବସିଲେ ବସ, ଖସିଲେ ଖସ, ବସିଲେ ଖସିଲେ ନାହିଁଟି ଯଶ । [ବ୍ୟଙ୍ଗ]

୫୭ । ବସିଲେ କହନ୍ତି, ମଟି ଖମ୍ବ (ଖୁଣ୍ଟ) ବସିଛୁ; ଶୋଇଲେ କହନ୍ତି, ଚିଙ୍କି ପଡ଼ିଛୁ; ଚାଲିଲେ କହନ୍ତି, ବଗ ଚାଲୁଛୁ; ଖାଇଲେ କହନ୍ତି କୁଆଖାଉଛୁ ।

[ଶାଶୁଘରେ ନୂଆ ବୋହୂ ଭୋଗ କରିଥିବା ଗଞ୍ଜଣା ବାପଘରକୁ ଫେରି ଯାଇ ବର୍ଣ୍ଣନା କରିବ ପଦ ]

୫୮ । ବନ୍ଧୁ (ପଠ) ଡାକୁଛି, ଏଥଉଁ ମୁଆଜା ଆଉ କି ଅଛୁ ? [ବ୍ୟଙ୍ଗ]

୫୯ । ବମ୍ବାଳି ଓପରେ ତୋପବାଜି, ଗୋଟାକୁଗୋଟା (ଡୁଉ ଡୁଉ କରି) ଦଉଡ ଗାଜି ।

[ଏକାଧିକ ଉଚ୍ଚ ଶବ୍ଦ ବିଶିଷ୍ଟ ଅଧୋବାୟୁ କରୁଥିବା ଲୋକ ପ୍ରତି ବ୍ୟଙ୍ଗ]

୬୦ । ବାଆଲୁ ବଡ଼, ମୁକ୍ତିଆଁମୂଣ୍ଡକୁ ମନ୍ତ୍ରେ ଛଡ଼ା । [ବ୍ୟଙ୍ଗ]

୬୧ । ବାଆ ମୁଠା କଲ, ବାଆ ମୁଠା କଲ, ବାଆ କି ମୁଠାରେ ରହିବ ? ସାତଥର କର ବୁଝାଇ କହିଲେ ପର କି ଆପଣା ହୋଇବ । [ଢ଼ଗ]

୬୨ । ବାଇଗଣ କଣ୍ଟା ଡାଳକୁ; ଉଠ ଦେଢ଼ଶୁର ଟାଙ୍ଗିମୁଣ୍ଡା (ଘ.ଅ ପାଖେଇ), ଖାଇବୋହୁ ଯିବେ ଘରକୁ । [ବ୍ୟଙ୍ଗ]

୬୩ । ବାଇଗଣ ଝଟେଇ; ଏଠା କଥା ସେଠେଇ କହେ, ନାଲ ବାଲ୍ଗି (ବାଇ) ଝେଣ୍ଟେଇ । [ବ୍ୟଙ୍ଗ]

୬୪ । ବାଇଗଣ ଫୁଲ ଡାଳକୁ; ଉଠ ଦେଢ଼ଶୁରେ ଦୁଆରମୁହଁରୁ (ଇରୁଣ୍ଡି ବନ୍ଧରୁ), ଖାଇବୋହୂ ଯିବେ ଘରକୁ । [ବ୍ୟଙ୍ଗ]

୬୫ । ବାଇଗଣ ବାଡ଼ିରେ ଫଳ (ଫଳୁ) ଥିବାଯାକେ ରଘୂନାଥଙ୍କ ବୋଉ ! ଫଳ ସରିଗଲେ ରଘୁଆ ମା । [ବ୍ୟଙ୍ଗ]

୬୬ । ବାଇଗଣ ବାଇଗଣ, ନେଉଟ (ଫେରେ) ଝାଇଲୁ ସେହି ରୁଉଟ, ରୁହିବାର କେଉଁ ଗୁଣ । [ବ୍ୟଙ୍ଗ]

୬୭ । ବାଇଦାସଙ୍କର ଭଜନ ଟାଣ, ହେକ କଲ ହାତ (ଥାଳ) ପାଖକୁ ଆଣ । [ବ୍ୟଙ୍ଗ]

୬୮ । ବାଇଦ ଛାଉଁ (ବଡ଼େ) ବାଜିଲା; ଭଲବେଳେ ଗୋଷ୍ଠ ଭେଟ ହୋଇଲା (ହାବୁଡ଼ିଗଲା), ଓରମାନ ମେଣ୍ଟିଗଲା । [ଢଗ]

୬୯ । ବାଇଧନ ବାଇଧନ ! ବାଇଧନକୁ ମୁଁ ଗ୍ଭଡ଼ି ଅଛିଲି (କାହୁଁ ପାଇବ ), ଯାଗର ଯାତଗ୍ଭ ଦନ । [ଢ଼ଗ]

୭୦ । ବାଇଗଣ ତରକାଷ୍ଟି, ଗେରସ୍ତ (ସାଆନ୍ତ) ହେଲେ ମୋ ପରଦୁଆଟ, ଘର ହେଲା ସରକାଷ୍ଟି । [ଢଗ]

୭୧ । ବାଇଘି ପାହାଚରେ ଗଡ଼ଗଡ଼ଉଥା । [ମାଗିଡ଼ିଆ ପ୍ରଢ]

୭୨ । ବରଡ଼ (କାଳିଆ) ଗାଈର ଲଞ୍ଜ, ମତେ କହୁଥାଉ ଅମଣିଷ ବୋଲି ତୁ କାହିଁପାଇଁ (ଜିଆଁ ହେଲୁ) ବାଞ୍ଝ । [ଢ଼ଗ]

୭୩ । ବାଇଧନ ତ, ବାଇଧନ ଗଲେ ବୃନ୍ଦାବନ ତ । [ଢ଼ଗ]

୭୪ । ବାଇଘାକୁଟା ପ୍ରମାଣେ, ଧାନ କେତେ (ଏତେ) କୁଟିଲା ମାଣେ ।

୭୫ । ବାଘଗ୍ଭ (ବାଘୁଆ) ମହୁର ଫେଣା; ରଜା ବଜେ କଲେ (ଚୁଷିଗଲେ) ଚଉଦୁଅର (ଷୋଳବନ୍ଦରେ), ରାଣୀ ବାଉଥେଲେ (ବାଜେଇଲେ) ବୀଣା । [ଢ଼ଗ]

୭୬ । ବାଇସା କୁଟିଲି ଧାନ; ବାଇଶି ପାହାଚେ ଲାଗିଲା ମନ, ଛନଛନ ଦରଶନ (ଛନଛନ) । [ଢ଼ଗ]

୭୭ । ବାଇସାଇକଲ, ଏଥିରେ ଲଗିଛି ବାଇଶି କଳ । [ଇଂରାଜୀ Bicycle ବା
ଦୁଇଚକିଆ ଗାଡ଼ି ସମ୍ବନ୍ଧେ ଅନୁପ୍ରାସ ବଚନ]

୭୮ । ବଘାରଲ ଡାଲି; ରସୁଣ ପକାଇ, ବାହାର ଚୁଲିରେ ନେଇ; ସନ୍ତବନ ଗଲା,
ମୁଖ ମଉଳିଲା (ଏବେ ତ ଗଲଣି ବଳ ବୟସ). ପଚାରିବେ କାହିଁପାଇଁ ?
[ବ୍ୟଙ୍ଗ]

୭୯ । ବାଉଁଶ ଅଗରେ ନିଆଁ, ଚୁଲିବାଉଁଶ କଣ୍ଟକ ଯିବା, ସାହା (ହେ, ହ୍ଵ)ବ
ଖାଇବ ଧୂଆଁ । [ଢଗ]

୮୦ । ବାଉଗ୍ରଣୀ ବାଉଗ୍ରଣୀ, ଆଳୁଲଣ୍ଠ ମୂଳେ ସାପ କାମୁଡ଼ିଲା, କାହିଁଗଲୁ ପାହୁଗ୍ରଣୀ
(ଛିଣ୍ଡିଗଲା କଉପୁନି) । [ବ୍ୟଙ୍ଗ]

୮୧ । ବାଉଳା ହେଲି, ଘରଧନ ନେଇ ପର (ସ୍ୱୈର)କୁ ଦେଲି । [ଅନୁତାପ]

୮୨ । ବାଉଗ୍ରଣୀ ଝିଅ ଗେଡ଼ୀ; ଭେକ କଲେ ଭତ ଖାଇବୁ ବାଛି ମୁଁ; ଯାଉଛି
କଙ୍କଡ଼ା କାଢ଼ି । [ଢଗ]

୮୩ । ବାଉଁଶମୂଳେ ପାଉଁସ; ଏହି ଭେଣ୍ଡି ଅଳୁକାଣ୍ଡ ବାଉଁଶ, ଗଳାରୁ ଆସୁଛି କଣ !
[ବ୍ୟଙ୍ଗ]

୮୪ । ବାଉଁଶ ଅଗରେ ଫୁଲ, ଟୋକା ଦଅରର ମନ ରେଣ୍ଡାଇ, ପିନ୍ଧିଲି ମୁଁ ଦରୁବୁଲ
(ବସିଲି ଦୁଆର ମେଲି) । [ଢଗ]

୮୫ । ବାଉଁଶ ଗଛର ଗ୍ରଇ; ମୁଁ ଧାଇଁଆଏଁ ସବୁର ପାଇଁ, ମୋହୋ ପାଇଁ କେହି
ନାହିଁ । [ଢଗ]

୮୬ । ବାଉଁଶ ଗଛର କନା, ଏବେ ବଢ଼ିଗଲା ଗୋବର୍ ନନା, ଆଗେ ସେଉଁ ଥେଲା
ଦନା । [ବ୍ୟଙ୍ଗ]

୮୭ । ବାଉଁଶ (ଇଙ୍କର) ବଣର ଘଟ; ଦନେ ଦେଖା ନାହିଁ, କାଲେ ଦେଖା ନାହିଁ,
ଆଜି ଭଗ୍ନବିଶୁଅସ । [ଢଗ]

୮୮ । ବାଉଁଶଗ୍ରଣୀ ବାଉଁଶରେ ଚଢ଼ି କାଟୁଛି ବାଣୀ (କାଟଇ ବାଣୀ) । [ଢଗ]

୮୯ । ବାଉଗ୍ରଣୀ ବୋହୁଗ୍ରଣୀ; ଅକଣ୍ଡା ଗୁଉଲ କାଣ୍ଡି ବହିଲି, ଛିଣ୍ଡିଗଲା, ପାହୁଗ୍ରଣୀ
[ବ୍ୟଙ୍ଗ]

୯୦ । ବାଆ (ଝୀ) ମାଇପର କି ଦଂଶିଲି (ପାଇଛି) ? ହଳଦୀକାଠୁଆ (ସିନ୍ଦୁରୀ-
ଫରୁଆ) କଜଳପାତି । [ଢଗ]

୯୧ । ବାଘଖିଆ, ବଘଗ୍ରମୁହିଁ । [ଗାଳି]

୯୨ । ବାଆ କାକଦ୍ରୁପିଠା; ବୁଢ଼ୀ ଦନେ କଥା ଦାନ୍ତକୁଟା (ମହଣ୍ଟୁଣ୍ଟା) ଦାନ୍ତେ
ବସିଲାଣି ହଣ୍ଟା (ହସିଲେ ଉଠିଠାଚଟା) । [ବ୍ୟଙ୍ଗ]

୯୩ । ବାଜିଲା ଘଣ୍ଟା, ଖାଣ୍ଟି (ପୋଲ) ଝିଆଙ୍କର ଉଠିଲା ଅଣ୍ଟା । [ବ୍ୟଙ୍ଗ]

୯୪ । ବାଜିଗଲା ଡବଡବ; ଶହେ ଟଙ୍କା ଦେଲେ ନ ଯିବ ନନା (ବାପା) ହେ, ଯୋଡ଼ି ବଳା ଦେଲେ ଯିବ । [ଦୁଆର ପାଳ ଯିବା ପୂର୍ବରୁ କନ୍ୟାର ବାପାଙ୍କ ନିକଟ ଅଳି]

୯୫ । ବାଟଘରେ ଦେଲି ଭାଟି, ଗୃହ୍ନି ବସି ବସି ବଅସ ଗଲା, ନଇଲେ କାନଭଙ୍ଗିଟୀ ।
[ଛିଗ]

୯୬ । ବାଟରେ ପୋଡ଼ିଲି ଜହ୍ନି; ଏଇବାଟେ ଗଲା ମୋହୋଶ ନାଗ ଲେ, ଦକ୍ଷିଣଗଲା ରଙ୍ଗକାନ, ମୋ ପ୍ରଭୁ ସେ । [ଅନୁଚନ୍ତା]

୯୭ । ବାଟବରକୋଳି ମଲା, ବାଟିଲି ହଳଦୀ କାହାକୁ (ପରକୁ) ଦେଲି, ଦହନ୍ତି ଲୁଖୁରୁ କଲା । [ଛିଗ]

୯୮ । ବାଟରେ ଦେଖିଲି କମାର, ଫାଳ ପକେଇଦେ ଆମର । [ବ୍ୟଙ୍ଗ]

୯୯ । ବାଟରେ ମାଡ଼ିଲି ଲୁଣ, ମଉନମୁହାଁର ଅପାର ଗୁଣ । ବ୍ୟଙ୍ଗ]

୧୦୦ । ବାଟେ ଯାଉ ଯାଉ ପାଇଲି ଧନ, ବାପ ଦେଇଗଲେ (ଥିଲେ) କନିଆ ଦାନ । [ଆପଣା ପିତାର ନିନ୍ଦନ ଅବସ୍ଥା ଶାଶୁଘରେ ଯାଇ ବିବାହ ହୋଇଥିବା ପିଲା କନ୍ୟାର ଅନୁଚନ୍ତା]

୧୦୧ । ବାଟରେ ପୋଡ଼ିଲି ମକା; ଦାଣ୍ଡବାଟେ ଗଲେ ମୋହର କକାଲେ, ଦକ୍ଷିଣଗଲା ରଙ୍ଗଛତା (ମୁଣ୍ଡଠେକା; ମୋ ପ୍ରଭୁ ସେ । [ଅନୁଚନ୍ତା]

୧୦୨ । ବାଟମଙ୍ଗଳା ! ମୁଣ୍ଡ ଫୁରୁ ଫୁରୁ ଗାଣ୍ଡି ଲଙ୍ଗଳା (କେତେ ଦନେ ହବ ଆଠମଙ୍ଗଳା; ଦକ୍ଷିଣୀକୋଷାକୁ ଦହ ନଙ୍ଗଳା) । [ଛିଗ]

୧୦୩ । ବାଉଁଶ (କଟାରୁ, ଡମ୍ବରୁ) ପତର ଆଁଶୁ; କଳା ଲୁଗା ପିନ୍ଧି ଦୁଆରେ ବସୁ, ପୁଅମାଆପର ଦଶୁ । [ଛିଗ]

୧୦୪ । ବାଉଁଶ ଅଗର ଫୁଲ; ଟୋକା ଦଅରର ମନ ଜଗାଇ (ମନାଇ) ମୁ, ଦୁଅର ମୁହେଁ ବସିଲି । (ଛିଗ)

୧୦୫ । ବାଟେ ଯାଉ ଯାଉ ଦେଖିଲି କୂଅ, ଆଉ ବୁଢୀକାଳେ ବେଇବ ପୁଅ ? (ବୁଢୀକାଳେ କୋଳେ ଖେଳିବ ପୁଅ) । [ଅନୁଚନ୍ତା]

୧୦୬ । ବାଟରେ ପାଉଲି ଚୂଲି, ଏତେ ଗୁଣ ବୋଲି କାଣିଥିଲି କି ? ବଚନରେ (ବଚନରେ) ଭୁଲି (ଭୁଲି) ଗଲି । [ଅନୁତାପ]

୧୦୭ । ବାଟରେ ପାଉଲି ଚୂଲି; ଝିଅନାଆଁ ଦେଲି ଅଣ୍ଟବେକୁଲି, ଝିଅ (ପୁଅ) ମୁଣ୍ଡେ ଚାଟଫୁଲି । [ଛିଗ]

୧୦୮ । ବାଟେ ଯାଉ ଯାଉ ଦେଖିଲି ହାତୀ, ଯେତେ (ଏତେ) ବୁଡ଼ାକାଳେ ଦେଖିବି (ପାଇବି) ନାଣ୍ଡ । [ଅନୁଚିନ୍ତା]

୧୦୯ । ବାଟେ ଯାଉ ଯାଉ ପାଇଲି ଗୋଡ଼; ନନା (ବାପା) ଦେଇଛନ୍ତି ହାତକୁ ଚୂଡ଼ି, ଭାଙ୍ଗି ଯିବ ଦେଲେ ମୋଡ଼ି ।

[ଚୂଡ଼ି ଦେଖି ଅପ୍ରନ୍ତୁଷ୍ଟା କନ୍ୟାର ଅନୁଚିନ୍ତା]

୧୧୦ । ବାଟେ ପାଉଗଲି ଚୂଲି, ଧପାଦିଆ (ଦଗାଦାର, ଦଗାଦିଆ) ବୋଲି ଜାଣି ନ ଥିଲି, ବଚନେ ପଡ଼ିଲି (ଗଲିଟି) ଭୂଲି । [ଢଗ]

୧୧୧ । ବାଡ଼ି କନିଶିର ଘାଇ, ଦୋଷ ଦେଖି ଧନ ମାରଣ ଥିଲି ତ, ହାତଧରି କାହିଁପାଇଁ ? ମାଡ଼ତ ମାଇଲି, ହାତେ ଖୁଆଇଲି, ପଣତ ଧଇଲି ବଳେ; ଅକାରଣେ ମତେ ମାଡ଼ ମାରଥିଲି, ଏବେ ପଡ଼ (ପଡ଼ୁଥାଅ) ଗୋଡ଼ତଳେ । [ସ୍ତ୍ରୀର ସ୍ୱାମୀ ପ୍ରତି ଅଭିମାନ]

୧୧୨ । ବାଡ଼ିଖିଆ, ବାଡ଼ିଦେଡ଼ା [ଗାଳି; ଅଭିଶାପ; ଅର୍ଥ—ଏଇଲୁଟା ବେଗରେ ତୋର ମରଣ ଘଟୁ]

୧୧୩ । ବାଡ଼ିଆଡ଼େ ମଟମଟା; ଖାଇଲୁ ନାହିଁ କି ପିଇଲୁ ନାହିଁ (ନ ଖାଇ ନ ପିଇ ହେଲୁ ଖିମାଣ), ଦାନ୍ତେ କଲୁ ହଟହଟା । [ଢଗ]

୧୧୪ । ବାଡ଼ି (ଶ) ଅଡ଼େ ବାଡ଼ି (ଶ, ଇ) ଗବ; କଥା ନ କହିଲେ କି ବୁଝିହିବ, ଯୁଗେ ଯୁଗେ କଥା ଥିବ । [ଢଗ]

୧୧୫ । ବାଡ଼ିରେ (ଦୁଆରେ) ପୁନିଅ ଜହ୍ନ, ଭଇନାଙ୍କ ମୁଣ୍ଡେ ଟୋପିଚନ୍ଦନ, ତୋଳି ଅଣିବାକୁ ମନ, ମୋ ଦ୍ରବ୍ୟ ସେ । [ଭଉଣୀର ଅନୁଚିନ୍ତା]

୧୧୬ । ବାଡ଼ିଆଡ଼େ ଅନାବ (ମ) ନା, କେଣିକି ଯାଉଛୁ ଚନ୍ଦ୍ରବଦନା, ଏଣିକି ଟିକିଏ ଅନା; କି ଅନାଇବି ତୁମ୍ଭଙ୍କୁ ମୁହିଁ, ନୁହେଁ ତ ଆପଣା ଦେଶ, ଚୋର ମାରିବ କି ଝଣ୍ଟି ମାରିବ, ଯିବ ମୋ ଯୁବା ବୟସ । [ଢଗ]

୧୧୭ । ବାଡ଼ି ଝଣ୍ଟେ ଡେଉର ଦେଲି; ଯେତେ କି ନନା (ବାପା) ମୁଁ ଡାକ୍ତ ମାଗୁଥିଲି କି ? ମନ (କଥା) ଯିନା ବଢ଼ୁଥିଲି, ମୋ ଦ୍ରବ୍ୟ ସେ । [କନ୍ୟାର ଅଭିମାନ]

୧୧୮ । ବାଡ଼ିରେ ବୋଇଲି ଗଙ୍ଗେଇ ଗଛ, ଫୁଲ ଫୁଟେ ରଣଝଣ; ଟିପେଇ ମୁଣ୍ଡରେ ଟିପି (ଟୋପି) ଚନ୍ଦନ, ଦାନ୍ତେ ଦଶେ ଶୋଭିବନ, (କମ୍ପୁଅଛ) ତ୍ରିଭୁବନ । [ବ୍ୟଙ୍ଗ]

୧୧୯ । ବାଡ଼ିରେ କାଗଜି ଲେମ୍ବୁ; କଲିକତା ବାଟ ଗୁଲୁଥିବ ତୁମେ, ମନେ ପଡୁଥିବ ଦେବୁ । [ବିଦେଶକୁ ଯାଉଥିବା ବ୍ୟକ୍ତିର ସ୍ତ୍ରୀର ଅନୁଚିନ୍ତା]

୧୨୦ । ବାଡ଼ି (ଗୁହାଳ) ପିଣ୍ଡାରେ ଲଉ (କୂଲରେ କାଟଇ ଲଉ); ଦବୁଦନ କଥା ମନରେ ଥାଉ, ଏକାଦିନେ ନେବି ଦାଉ । [ଢଗ]

୧୬୧ । ବାଡ଼ି (ର) ଆଡ଼େ ବାଡ଼ି (ର) ଗବ (ବାଇଗବ); କଥା ନ କହିଲେ କିସ (କଅଣ) ହବ, କରମରେ ଯାହା ଅବ (ଥିବ) । [ଢଗ]

୧୬୨ । ବାଡ଼ରେ ଛେଉ ମନ୍ଦାର; ଏତେ ଘରେ ମୁଁ (ଏକୁଟିଆ ନାରୀ, ଏକୁଟିଆ ହୋଇ) କେମିତି ଯିବି ଲୋ ? କରିଛି ମେଘ ଅନ୍ଧାର (ମୁହଁ ଅନ୍ଧାର); (ମତେ ତ ମାଡ଼ିଲି ଡର) । [ବ୍ୟଙ୍ଗ]

୧୬୩ । ବାଣ କଏ ମାରିଦେଲ; କଅଁଳ ଥିଲି କଅଁଳା ଗଛ, ଗୁହିଁ ଗୁହିଁ ଝାଉଁଳିଲି । [ଢଗ]

୧୬୪ । ବାପ ଲୋ ବାପ ! କାନରେ କାପ ! ତୁଲି ମୁଣ୍ଡଠେଇଁ ଯୋଡ଼ାଏ ସାପ ! ଆଉର ଗୋଟାଏ ଲଅକ ଲକ, କାଲି ଆସିବ ଭାଇ ମାଇପ, ତା ଦାଉ କଏ ସହିବ ? ବୁଢ଼ୀ ସଉରୁଣୀ ହେଁସରେ ମୁଠାଲ; ସ୍ୱାମୀ (ବର) ଆଗେ କଏ କହିବ ? [ଢ଼ଗ]

୧୬୫ । ବାଛି ମାଇଲ, ନାଁ ଅଛା (ଭଲ) ସହିଲା । [ବ୍ୟଙ୍ଗ]

୧୬୬ । ବାଛ ଯେ ଥିବ ସ୍ୱଛନ୍ଦର (ସ୍ୱ ସୁନ୍ଦର) ଫଳ, ବଣ୍ଟି ଯେ ଦେଉଥିବ ଟଙ୍କ ନିର୍ମଳ । [ସ୍ତ୍ରୀମାନେ ଧାଇ ପଡ଼ିଶାଙ୍କୁ ପିଠାଅଦ ବାଣ୍ଟିବା ସମୟରେ ଆପଣର ଦାତୃତ୍ୱ ଦେଖାଇବାପାଇଁ ବୋଲିବା ପଦ]

୧୬୭ । ବାପ ଖାଇଲା, ପୁଅ ଖାଇଲା, ଆଉ କି ସେଥିରେ ରସ ରହିଲା ? [ଢଗ]

୧୬୮ । ବାପଘର ଢମ କହିବି କେତେ, ଧାନ ଶୁଖୁଥିଲି ବହୁଣାଟାକେ । [ବ୍ୟଙ୍ଗ]

୧୬୯ । ବାପ (ବୋପା) ନାଆଁ ଷଣ୍ଢ ବେହେରା, ପୁଅଙ୍କ ନାମ ଅର୍ଜୁନ ବିଦ୍ୟାଧର (ବଳିଆର) ଶିଂହେ । [ବ୍ୟଙ୍ଗ]

୧୭୦ । ବାପ ତେଲ ସାତରେ (ହାଣ୍ଡିରେ, ଡାବ୍ଲେରେ, ପାଇଁକି) ଲଣ୍ଡା; ପୁଅ ବେଣ୍ଟି (ସବାବାଳ, ବୁଡ଼ଲେଇ ବେଣ୍ଟି) ରଖିଛି ! [ବ୍ୟଙ୍ଗ]

୧୭୧ । ବାଲି ତଳେ ତଳେ କଏ ଯାଉଛି ଲୋ ରଙ୍ଗ (ପ୍ରେମିକ) ଲୁଗା ଫର ଫର; ତହିଁରୁ କାନଏ ଦଅନ୍ତା ମତେ, ଯାଆନ୍ତି ଧବଳେଶ୍ୱର; ଧବଳେଶ୍ୱରଙ୍କ କ୍ଷୀର ଖେଚୁଡ଼ି, କପିଳେଶ୍ୱରଙ୍କ ଲଡ଼ୁ; ଭାଇ ହାପକିଆ କି ମାଡ଼ ମାଇଲା, ଭାଙ୍ଗିଗଲା କମଣ୍ଡଳୁ; କମଣ୍ଡଳୁ ରୁଆ ରୁଆ, ଆଉ କମଣ୍ଡଳୁ ଦେବି ଲୋ ମାଗୁଣୀ ! ବାଲୁଙ୍ଗି ତଉଁରିଆ ।

୧୭୨ । ବାଡ଼ିଅଗଣାରେ ଗୋଛି; ପଡ଼ାଉଥିଲି ଶାଢ଼ି; ତା ଦେଖି ମୋ ନେତ୍ର କୃତାର୍ଥ ହୋଇଲା, ଅନାଇଲି ଗଣ୍ଡା ଗୁଡ଼ି; ଫାଟନ୍ତ ପଡ଼ି ହେଲି କୁଳବତୀ, ଆଜି ହେବ ନାହିଁ କାଲି ହେବ ନାହିଁ, ହେଲେ ହେବ ପର ଧନ ଗ୍ରନ୍ଥି । [ବ୍ୟଙ୍ଗ]

୧୭୩ । ବାପ ପୂଜାହାରି, ପୁଅ ମାଳି, ନାଟକ ତାକ ସେ ଉଠଉ (ଉଠାଉ) ଥାଲି; [ବ୍ୟଙ୍ଗ; ଏକସ୍ଥାନରେ ସ୍ତ୍ରୀଜନର ଜଣ ୩ ପୁରୁଷ ପୋଷି ହେବା ସ୍ଥଳରେ]

୧୩୪ । ବାପ ଦେଙ୍ଗା ସରସର ! ପୁଅ ଗେଟେଇମାଦଳ ! [ନିଁଆଦଆ; ନଡ଼ିଆ ଗଛ ଓ ଫଳ ]

୧୩୫ । ବାପ ଭାଇଙ୍କର (ବାପଦାଦାଙ୍କର) ସମ୍ପତ୍ତି (ଜମି) ଦେଖ, ପେଜ ପିଅଁଟେଁଇ ବାଜୁଛୁ ଶଙ୍ଖ ! [ବ୍ୟଙ୍ଗ]

୧୩୬ । ବାପ ଭାଇ ଥିଲେ କସ କରବେ ଲେ, ଟଣ୍ଡେ ବେଙ୍ଟେ ପିନା ଦେବେ; ପୋଷିଲ ସାଆନ୍ତ ମଉଡ଼ମଣି ଲୋ, କାଲେ କାଲେ ଘାଇଡବେ (ଟେକଥିବେ) । [ଢଗ]

୧୩୭ । ବାପଦାଦାଙ୍କରୁ ଆଖି ତ ନାହିଁ, ଦୋରୁଅ ପିଉଛୁ ଛେଦା ବୁଡ଼େଇ (ଛୁଟେଇ) ! [ବ୍ୟଙ୍ଗ]

୧୩୮ । ବାପ ବଙ୍କା, ପୁଅ ସଳଖା, ନାତି ଟୋକା ବଡ଼ (ଭାରି) ତରକା । [ନିଁଆଦଆ; ଧଳୁ, ଗୁଣ, କାଣ୍ଡ, ବାଉଁଳିଖଡ଼ା, ଗୁଣ, ବାଉଁଳି]

୧୩୯ । ବାପଠାରୁ ପୁଅ ଗୃହୁଟେଣ୍ଡେ ଉଞ୍ଚ । [ବ୍ୟଙ୍ଗ]

୧୪୦ । ବାପ ବାର ବରଷର; ପୁଅ ଗୁଁଡ଼ିକ ଚତୁର (ଡେଙ୍ଗା ଥରଥର) । [ନିଁଆଦଆ, ବାର ବରଷିଆ ଗଛ ]

୧୪୧ । ବାପକୁ ନ ମିଳେ ଖୁଦ, ପୁଅ ଖୋଜୁଥାଏ ଦୁଧ । [ବ୍ୟଙ୍ଗ]

୧୪୨ । ବାପ ମାଆଙ୍କ ଅଯୋଗ୍ୟପଣେ, ପୁଅ ନାଁଆଟି ଗୁହିଆ । [ବ୍ୟଙ୍ଗ]

୧୪୩ । ବାପ ପୁଅ ଦହେଁ ଗାଡ଼ି ଅନାଡ଼ି, ମୁଗୁରା (ଦାନ୍ତୁଆ, ଘୁମୁରା) ଗାଣ୍ଡି ମେଳ । [ବ୍ୟଙ୍ଗ]

୧୪୪ । ବାମଗୁଣ, ଡିଙ୍କି ଗିଲ୍ } [ଗୁଣ ପକାଇ ଅଯାଧ କାମ
୧୪୫ । ବାପୁଟା ଗୁଣ, ଡିଙ୍କିଟା ଗିଲ୍ । } କରିବାକୁ ଅନୁରୋଧ]

୧୪୬ । ବାପା ହେ ! ବାପା ହେ ! ଘୁଞ୍ଚି କୋଉ (କେଉଁ)ଠାରେ ଅଛନ୍ତି ? (ଉତ୍ତର) ନାଁ, ଘୁଞ୍ଚି ବଡ଼ଙ୍କ ଘରେ ପଣ୍ଡିଙ୍କ ମଧ୍ୟରେ ସିଙ୍ଗଙ୍କ ଉପରେ (ଓପରେ) ଅଛନ୍ତି । [କଥାବାର୍ତ୍ତାରେ ସଧୁଭାଷା ବ୍ୟବହାରର ପକ୍ଷପାତୀ ବ୍ୟକ୍ତିଙ୍କ ପ୍ରତି ବ୍ୟଙ୍ଗ, ଉଦାହରଣ]

୧୪୭ । ବାପା ହେ ! କାଳି ଗାଈଟି ନି ଦବ ! ନାତି ଜନ୍ମ ହେଲେ ଦୁଧ ଖାଇବ, ଅଜା ଅଜା ଡାକୁଥିବ । [ବ୍ୟଙ୍ଗ]

୧୪୮ । ବାଲିଆ ବାଉଁଶ କଣି; ଦେଖେଇ ଶିଖେଇ ଗାଲି ଦଉଛୁ, ନଳି ଗୋଡ଼ୀ ସଉତୁଣୀ । [ଢଗ]

୧୪୯ । ବାପା (ଟୋପା) ବଭା (ବାହା) ଘର ଦେଖେଇ ଦେବ, ଝିଅ ଧରି ପାଠ ଶିଖେଇ (ନେଖେଇ) ଦେବ । [ବ୍ୟଙ୍ଗ]

୧୫୦ । ବାବାଜୀ ମୋର, ମହେବେ ବୋଲି, ଚୂଡ଼ା ଗଉଣୀଏ କଲି; ବାବାଜୀ ମୋର, କେଉଁଠି ଉଠିଲେ, ପାଣିକି ପକେଇ ଦେଲି । [ବ୍ୟଙ୍ଗ]

୧୫୧ । ବାବୁନ (ବାବୁଙ୍କ) ପାଇଁ, ମନା ସାଆନ୍ତାଣୀ (ଠାକୁରାଣୀ) ବସିଛୁ ଗୁହ୍ଣି (ହେଲେଣି ବାଇ) । [ବିରହିଣୀର ଅନୁଚିନ୍ତା]

୧୫୨ । ବାବାଜୀ ସଂସାରଯାକର ବାପା, ମାତାଜୀ ସଂସାର ଯାକର ମାଆ; ମାଆ ବାପ ଦୁହେଁ ମଠରେ ରହିଲେ, ସଂସାରକୁ କଲେ ଗାଁଆ (ବଦେଇ ଗଲେ ଗାଆଁ; ନାଡ଼ି ପକେଇଲେ ନାଆଁ) । [ବାବାଜୀ ମାତାଜୀ, ବ୍ୟଙ୍ଗ]

୧୫୩ । ବାଡ଼ି ବାଡ଼ି (ବାରି ବାରି) ସବୁ ବୁଲି ଅଇଲି, ଭଲ ବାଡ଼ି ଗଲି ପଶି; ଫୁଲ-ମହକରେ ଚିତ୍ତ ଚମକିଲା, ଗଛମୂଳେ ଗଲି ବସି । [ଢଗ]

୧୫୪ । (ପ୍ରଶ୍ନ) ବାବାଜୀ ହେ ! ବାବାଜୀ ହେ ! କଉପୁନି କାହିଁ ଓଦା ? (ଉତ୍ତର) ନିହଙ୍ଗୀ ମଠରେ ପାଚି କରୁଛୁ ଖାଇବୁ ପୁଷ୍ଟାଏ ବଧା ! [ଆଧୁନିକ ବାବାଜୀ ମାତାଜୀଙ୍କ ସମ୍ବନ୍ଧେ ଅନୁଭବୀ ଭକ୍ତର ଅନୁଚିନ୍ତା, କ୍ରୋଧାଦି ପରବଶ ବୈଷ୍ଣବଙ୍କୁ ଲକ୍ଷ୍ୟ କରି । [ବ୍ୟଙ୍ଗ]

୧୫୫ । ବାଭଏ ! (ବାବୁ ହୋଏ), ଖଣ୍ଡ ଉଣ୍ଡ୍ରବନ୍ତ (ଦିନେ ଯିବା) ସଦ୍ଭଏ ।
[ଗଉଡ଼, କେଉଟ, ଧୋବା, ବାଉରି, କଣ୍ଡରା ଆଦି ଶଗୁର ଓ କୋଇଁ ପରସ୍ପରକୁ 'ବାଭଏ, ବୋପେଇ' ସମ୍ବୋଧନ କରି ଡାକନ୍ତି]

୧୫୬ । ବାମନସୁନ୍ଦରୀ (ନା), ଚମ୍ପାବରଣୀ (ନା), ଖୋସି ଦେଇଅଛୁ ଖୋସା, ଥରି ଥରି କରି କାଢୁ ପାଣି, ଦେଉଛୁ ମୁରୁକି ହସା । [କୂଅରୁ ପାଣି କାଢ଼ିବା ସମୟରେ ହସୁଥିବା ରସିକା ସ୍ତ୍ରୀ ପ୍ରତି]

୧୫୭ । ବାରଘର ବୁଲି ଅଇଁଠା ଚାଟା (ଗୋଟା), ଦିନ ଦୀପହରେ ହଟିଛଟା । [ଗାଳି]

୧୫୮ । ବାଲି ଶୁଖିଉଛି ଚୋପା ଖଇରୁଡାରେ ପିନ୍ଧିଅଛି ରଙ୍ଗପାଟ, ଯାଆନ୍ତି ପାଟିକୁ ଚାହାନ୍ତି ତାହାକୁ, ସଲଖ ତ ନାହିଁ ବାଟ । [ଢଗ]

୧୫୯ । ବାଲିଆ ମାଛ ଆଇଁ ବୋଇଲା ମୋର ହାଉଁଆ ପାଚି, ମୋ ମଜାକୁ ମାରି ନଉଥିବ ହଳଦୀ ବେଶରେ ବାଟି । [ମାଛ ଗୀତ]

୧୬୦ । ବାଲିଆ ମାଛ ଥାଇ ବୋଇଲା, ମୁଁ ମାଛଙ୍କ ଭିତରେ (ମାଛଯାକରେ) ରଜା; ମତେ ଖାଇଲେ ଗୃହିଣୀ ନଉଥିବ, ସବୁ ମାଛଙ୍କ ମଜା । [ମାଛଗୀତ]

୧୬୧ । ବାରଭଙ୍ଗିରେ ପଲ ଖଟନ୍ତି, ତାକୁ ସମସ୍ତେ ଧଇଲେ ଦଣ୍ଡେ ଦଣ୍ଡେ । [ବ୍ୟଙ୍ଗ]

୧୬୨ । ବାର ବରଷର ପୁଅ ପାଟିରେ ମା ଗୁଣ୍ଡା ଖୋଇଲା ବେଳକୁ, ପୁଅ ବହୁ ଭାଗ୍ୟକୁ କମିତି ଆଁ କରୁଛୁ । [ବ୍ୟଙ୍ଗ]

୧୬୩ । ବାରବ୍ରତ (ବରତ) ତେର ଓଷା; ତେବେ କରିବୁ ପୁଅରେ ଆଶା । [ଢଗ]

୧୬୪ । ବାରବାଟି ତୋଟା (ତୋଟାଟାଏ), ଫୁଲ ଫୁଟିଛି ଗୋଟା (ଗୋଟାଟାଏ) । [ନାଁଦଆ; ଜହ୍ନ]

୧୬୫ । ବାହାଡ଼ାଦାନ୍ତୀ ! ତତେ ଦେଖିକରି ମାଡ଼ୁଛି ବାନ୍ତ, ନଡ଼ିଆ ପୁଷ୍ପାଏ ଜୋର ପକାନ୍ତ । [ବ୍ୟଙ୍ଗ]

୧୬୬ । ବାରହାତ କଟୁରି (ଖଣ୍ଡା) ଆସି } ଦାଆବେଣ୍ଟରେ ରହିଲଣି !
୧୬୭ । ବାରହାତ ମଇ (ବାରହାତ ବାଉଁଶ) } [ବ୍ୟଙ୍ଗ; ବିଭବଶାଳୀ ଲୋକର ଦାରିଦ୍ର୍ୟ ଘଟଲେ]

୧୬୮ । ବାରରେ ବୁଣିଲି ଅଘୋରଷ, ତେରରେ ବୁଣିଲି ଖସା; ଲୋକଙ୍କ ଭରମକୁ ବାଞ୍ଝ (ବାହା) ହୋଇଲି, ପଇଡ଼ା ଦେଲା ଏ ଦଶା । [ଢଗ]

୧୬୯ । ବାହାରକୁ ଦିଶେ କେଡ଼େ ସୁନ୍ଦର, ଭିତରଯାକ ତା ପୋଡ଼ାଅଙ୍ଗାର । [ନାଁଦଆ; ପାଚିଲା ମହାକାଳ ଫଳ]

୧୭୦ । ବାହ୍ମଣ ବାଡ଼ରେ ବେଙ୍ଗ, ଗୋରୁ ହୋଇଥିଲେ ମରି ଶୁଅନ୍ତା, ମଣିଷ ନାଁ ଉଠା ଭୂତ । [ବ୍ୟଙ୍ଗ]

୧୭୧ । ବାହାର ଗାଁକୁ ବାଟ କଏ ? ନାଁ, ଏଇ ବାଟେ ବାଟେ ଯା । [ବ୍ୟଙ୍ଗ]

୧୭୨ । ବାହାରେ ମାରିବେ ବାହାରିଲୋକେ, ଭିତରେ ମାରିବେ ସ୍ୱବୁଦ୍ଧି; ବଡ଼-ଦେଉଳରେ ପଶି ମାରିବେ, ଏଥିକି ମୋହର (କରିବ) କି ବୁଦ୍ଧି ? [ଢଗ]

୧୭୩ । ବ୍ରାହ୍ମଣବାଡ଼ିରେ, ବାଆକୁ ଝଟେଣ । [ବ୍ରାହ୍ମଣପ୍ରତି ବ୍ୟଙ୍ଗବଚନ]

୧୭୪ । ବ୍ରାହ୍ମଣବାଡ଼ିର ସଉପ, ଅଫିମ ଖାଇ କି ମରଯାଇଅଛୁ, ଅମୁକ (ବାଇଆ) ବ୍ରାହ୍ମଣ ଘ ।ଉପ । [ବ୍ୟଙ୍ଗ]

୧୭୫ । ବରି ଭଜ ବରି ଭଜ, ହାଟରେ ପକେଇ କିଣି ଆଣିଛୁ; ଆଉ କାହିଁପାଇଁ ଲାଜ । [ଢଗ]

୧୭୬ । ବରବୋଡ଼ ଧାନ (କଳାକର ଧାନ) ଖିରକି, କେଡେ ଅନାଉଛୁ କରିଟି ! ଫଳ ହୋଇଛୁ କି ଖାଇବୁ ? ଫଳ ହୋଇଛୁ କି ନାଇବୁ ? ତୁ ଯାହିଁପାଇଁ ତହଲବିକଳ, ମରିଗଲେ ଅବା ପାଇବୁ ? [ବ୍ୟଙ୍ଗ]

୧୭୭ । ବ୍ରାହ୍ମଣବାଡ଼ିରେ ବେଙ୍ଗ, ଗୋରୁ ହୋଇଥିଲେ ପଲପଲିକା, ମଣିଷ ହେଲେ ଚେତ । [ଢଗ]

୧୭୮ । ବ୍ରାହ୍ମଣୀଙ୍କର ମୁଣ୍ଡରେ ଖୋସା, ପାଞ୍ଚପଣ୍ଡିତରେ ଖଣ୍ଡିଏ କଂସା । [ବ୍ୟଙ୍ଗ]

୧୭୯ । ବ୍ରାହ୍ମଣୀଘରର ଖୁଦପିଠା, ରଜାଙ୍କ ହାତର ବଳା; ନାଥେ କାଣନ୍ତି ହାତେ କାଣନ୍ତି, ଯାହାର ଯେତେ ଗଳା । [ଢଗ]

୧୮୦ । ବ୍ରାହ୍ମଣଙ୍କ ଘରେ ଚଡା ପଇତା, କାର୍ତ୍ତିକ କଲେ ସେ ଇଷ୍ଟଦେବତା [ହାସ୍ୟ-ତରଙ୍ଗ କାର୍ତ୍ତି ଗୀତ]

୧୮୧ । ବଡ଼ାନାସି ନଈକୂଳ, ତୋ ସଙ୍ଗେ ବସିଲି ପେଣ୍ଠି ବଉଳ, ହରେଇଲି କାଠକୁଳ [ଢଗ]

୧୮୨ । ବଗୁଡ଼ି (ଚଢେଇ) କ (କୁ) ମାଛ ଝିଆ ଶିଖା (ଖ) ଉଛୁ ! [ବ୍ୟଙ୍ଗ]

୧୮୩ । ବଗୁଡ଼ି (ବିଟଲଗ) } ମ୍ୟାଉଁ (ମେଉଁ) ଶବଦଟି ଥାଉ ! [ବ୍ୟଙ୍ଗ]
ପଛକେ କାଣି ହଉ, } ମିଆଉଁ ଶବଦ ଥଉ (ବଡ଼) ।

୧୮୪ । ବିରଡ଼ାଳି କଲି ବାସୀ; ଚଟା (ଟ) ଉ ଓ (ଉ) ପରେ ଚଟା (ଟ) ଦେଇ, ବୁଢ଼ୀ ହୋଇଗଲି ଆସି (ଦଦେବୁଢ଼ୀ ହେଲି ଆସି) । [ଢଗ]

୧୮୫ । ବର ଫାଳକୁ ସହସ୍ରେ ଘୋଡ଼ା ଟାପୁ ମାରୁଛନ୍ତି ! [ବ୍ୟଙ୍ଗ]

୧୮୬ । ବର ବସ ! ଯା ଖାଇଲେ କ ପେଟ ପୁରୁ ? [ଢଗ]

୧୮୭ । ଦର ବଡ଼ଗୁଡ଼ ଖଜା, ଡେଙ୍ଗୁରା ଦେଇ ମୁଁ କିଣି ଆଣିଛୁ, ଆଉ କାହିଁପାଇଁ ଲାଜ । [ଢଗ]

୧୮୮ । ବଲ (ଇଟା) ମାଟି ବଡ଼ ଟାଣ, କଟୁ ବଚନ ମୁଁ ସହି ନ ପାରେ, ହେଲି ଝାରି (ହୋଇଲିଣି) ହଇରାଣ । [ଢଗ]

୧୮୯ । ବାଲୁଆ ପ (ଣେ) ଯା ମାଉଁସ ଛ ମାସ (ବରଷେ) ଖାଇବେ । [ସ୍ଥୂଳକାୟ ବ୍ୟକ୍ତି ପ୍ରତି ବ୍ୟଙ୍ଗ ବଚନ]

୧୯୦ । ବାଇଶି ଦହର ମଲା, ଗୋଟି ଜାତି ସଙ୍ଗେ କରନ୍ତି କଳି, ମୁଖ ଯାଇଅଛି ଜଳି (ମୁହଁ ଦଶୁ ନାହିଁ ଝଳି) । [ଢଗ]

୧୯୧ । ବାହାନ ଗଲେଣି ବମାଖାଇ, ଡିଙ୍କି (ଓଳଆ) ପଡ଼ିଛୁ ଠୋକରା ହୋଇ । [ବ୍ୟଙ୍ଗ]

୧୯୨ । ବାର ବେଣ୍ଟକୁ ହଡ଼ା ଘୋଡ଼ା ! କେମନ୍ତେ ଧାଉଁଛୁ କହରେ ବୁଢ଼ା । [ଢଗ]

୧୯୩ । ବାର ବରମାନେ ବାର ପଇତ (ବୁଲି ଯାଆନ୍ତି), ଝୋକଡ଼ମାନେ ପଡ଼ି (ଶୋଇ) ଥାଆନ୍ତି; [ନାଁ ଦଅ; ବଳଦ ଓ ବଳଦବନ୍ଧା ପଘା]

୧୯୪ । ବୁଢ଼ା ମରିବାକୁ ଯାଉଛି, କାଲେ କଣ୍ଟା ମାଡ଼ିବ ମତେ ତୁ ବଇଡ଼ି ଦେଖାରେ, କାଲେ ଫେରି ଆସିବ । [ବ୍ୟଙ୍ଗ]

୧୯୫ । ବୁଢ଼ାଶୁଆ କଟର କଟର । [ବ୍ୟଙ୍ଗ; ବର୍ଦ୍ଧିଷ୍ଣୁ ଗ୍ରନ୍ଥ ପାଠ ପଢ଼ିବା ସମ୍ବନ୍ଧେ]

୧୯୬ । ବୁଢ଼ାକୁ ବୁଢ଼ୀ, ଖଣ୍ଡ ନଡ଼ିଆକୁ ଦୋଭଜା ମୁଢ଼ି (ପାକୁଆ ଦାନ୍ତକୁ ନଡ଼ିଆ ମୁଢ଼ି) । [ଢଗ]

୧୯୭ । ବୁଢ଼ୀ ଦାନ୍ତକ ନାଚ (ଠାର) ଶିଖୁଅଛୁ ! [ବ୍ୟଙ୍ଗ]

୧୯୮ । ବୁଣିଲି ମସୁର ଉଠିଲା ବର, ଫୁଲ ଫୁଟିଗଲା ଲବଙ୍ଗ କଢ଼ି, ଫଳ ଫଳିଗଲା ବେଲ; ଏ ନାଁଆଟି କହି ନ ପାରିଲେ, ମୁଣ୍ଡରେ ଢାଳିବି ତେଲ (ତା ମୁଣ୍ଡରେ ଚେର) । [ନାଁଦିଆ, ବାଇଗଣ]

୧୯୯ । ବୁଲାକୁ ବୁଲା, ଘାସ ଖାଇବାକୁ ବାହାର ଚୁଲୀ । [ବ୍ୟଙ୍ଗ]

୨୦୦ । ବୁଲି ଗୁଲି ଭାତ ଖା (ଖାଉଥା), ମୋର ହୋଇ ପଡ଼ିଥା । [ବ୍ୟଙ୍ଗ]

୨୦୧ । ବୁଲି ଯାଇଥିଲି ଯାଇକି, ହଜେଇଲି କୁନ୍ଦ ଟିକ ଭାଇକି (ହଜେଇ ଅଇଲି ଭାଇକି) । [ବ୍ୟଙ୍ଗ]

୨୦୨ । ବୃଷ ଭାନୁ କେମା ଅନ୍ଧ ଦୁଲଣୀ, ବାଟେ (ଘାଟେ) ହଜା (ଜେ) ଇଲେ ଗୁଣା ବସୁଣୀ (ବସଣୀ) (ହଜେଇ ଅଇଲେ ଗୁଣା ବସଣୀ) । [ବ୍ୟଙ୍ଗ]

୨୦୩ । ବୁହେ ପାଣି ଝର ଝର, କାହା ଗୋଡ଼ତଳେ ଶୋଇଲୁ କାଳିଆ, (କାହା ଗୋଡ଼ ଘସୁଥିଲୁ ରେ କାଳିଆ,) ହଳଦିରେ ଜରଜର (ଗର ଗର) । [ବ୍ୟଙ୍ଗ]

୨୦୪ । ବୁଢ଼ୀ ଜାଗୁଲେଇ (ମା ଠାକୁରାଣୀ, ଇଚ୍ଛା ଠାକୁରାଣୀ) ପଚାରନ୍ତି ଆସି କନକ ଝିଅଟି କାହିଁ ? କନକ ଝିଅଟି ମାଡ଼ ଖାଇଅଛି, ଶୋଇଛି କବାଟ (କୋଳପ) ଦେଇ; ବଧାଏ ମାରଇ (ଗୋଇଠା ମାରଣ) କବାଟ (କୋଳପ) ଭାଙ୍ଗଇ, ବସଇ ମୁଣ୍ଡ ଉପରେ, ଝଁଇ ଝଁଇ । ହୋଇ ପିଠି ଅଉଁସଇ, ପଡ଼ିଥାଏ ଗୋଡ଼ ତଳେ । ଉଠ ଚମ୍ପାକଢ଼ି ଭୁଞ୍ଜ ଭାତ, ପଡିଲା ହାବୁଡ଼େ ବଗର ବେଳେ; ହସି କରି ପଦେ କହନ୍ତି କଥା, ପଡ଼ନ୍ତି ଯମୁନା ଜଳେ । [ଢଗ]

୨୦୫ । ବେଠିଆ ଖାକର କୋଠିଆ ଖାଏ, କୁଣ୍ଡା ଖାଇ ଖାଉ (ଘର) କୋଠିଆ ଖାଏ ! [ବ୍ୟଙ୍ଗ]

୨୦୬ । ବେଠିଆ ଖାଏ ! ତାକୁ ଜଗିବାକୁ କୋଠିଆ ଖାଏ । [ବ୍ୟଙ୍ଗ]

୨୦୭ । ବେଡାର ଟୋକେଇ ପୁଞ୍ଜି ପୁଞ୍ଜି କା, ଶୋଲ ହାଗ ତୋଳିବାକୁ, ବାପ ଦେଇଛନ୍ତି ବୁଢ଼ା ବରକୁ, ଗୁଳ ଧରି କାନ୍ଦିବାକୁ (ହେଁସ ଧରି ଶୋଇବ କୁ) । ଗୁଳଧରି (ହେଁସ ଧରି) କାନ୍ଦୁଥିଲି; କିଏ ସେ କହିଲା ବାପା ଆସିଛନ୍ତି, ଲୁହ ପୋଛି ପାଣି ଦେଲି । ଶାଶୁ କହିଲା ଭଲ, ନଣନ୍ଦ କହିଲା ଭଲ ! ନମୁଲା ଖୁଣ୍ଟିର ଏଡ଼େ ଗାରିମା, ଲୁହପୋଛି ପାଣି ଦେଲି । [ଢ଼ଗ]

୨୦୮ । ବେତା ବେତା ପାଠ କଢ଼ାକୁ ଯୋଗ୍ୟ ହେଉ ନାହିଁ । [ବ୍ୟଙ୍ଗ]

୨୦୯ । ବେତ ଗଛ ମୂଳେ ଗାତ, ଦନ ଗୁଡ଼େଖାରେ ମୁହିଁ ଶୁଖି (ଦଶି) ଯିବ, କିଏ ପରଚିବ (ବାଢ଼ିଦବା) ଭାତ ? [ବିଦେଶକୁ ଯାଉଥିବା ବ୍ୟକ୍ତିର ସ୍ତ୍ରୀ, ଭଉଣୀ ବା ମାତାଙ୍କର ଶୋଚନା ବଚନ]

୨୧୦ । ବେଣ୍ଟ ପୋଖରୀର (ଇଅଁର ପୋଖରୀ) ତେଣ୍ଟେଇ (ଡଅଁର) ଗଣ୍ଡରେ ଫୁଟିଅଛି ପଦ୍ମଫୁଲ । ଏବେ ତ କରୁଛୁ କେତେ ମଉଜ, କେ ଜାଣେ ପୀରତ ମୂଲ । [ବ୍ୟଙ୍ଗ]

୨୧୧ । ବେଙ୍ଗାରୁ ନ ଉଠେ ବର, ତାକୁ ଧରାଧରି ବର କର ! [ବ୍ୟଙ୍ଗ, ସ୍ଥୂଳକାୟ ଅଚଳ ବ୍ୟକ୍ତି ପ୍ରତି]

୨୧୨ । ବେଲ ଦା ଘଡ଼ିକ (କୁ) ତଡଲ (ତବତ) ଖତ,
ଗନ୍ଧ ବାଡ଼ି ଦଉଥିବୁ ସଙ୍ଗାତ;
ଘରକଥା ମତେ କହିବୁ ନାହିଁ,
କାତରୀ ପକେଇ ଶୋଇବ ଯାଇଁ । [ବ୍ୟଙ୍ଗ]

୨୧୩ । ବେହା (ଇ) ମାଇପରୁ ଗୋଟିଏ (ଜଣେ) ନାହିଁ (ନାହିଁ ଜଣେ), ଥୋଇଲା ମାଇପ ପଣେ ପଣେ । [ବ୍ୟଙ୍ଗ]

୨୧୪ । ବେହେଲା ବାଜେ କେଁ, କବାଟ ଡାକେ କେଁ, କବାଟ କଣରେ ଡାକଇ ଗୋସ୍ୱାମୀ ପାନ ଖଣ୍ଡେ ନେ ନେଁ । [ଢଗ]

୨୧୫ । ବୋପା (ମାଆ ବୋଉ) ଡାକରା (ଡାକର) ସୀମା ନାହିଁ କୋଟେଇ ନାହିଁ), ପେଟର ହୋଇ (ହେଇ)ଗୋଟିଏ ନାହିଁ [ଆଣ୍ଠୁକୁଡ଼ା ଆଣ୍ଠୁକୁଡ଼ୀଙ୍କ ପ୍ରତିବ୍ୟଙ୍ଗ]

୨୧୬ । ବୋଉଲେ ବୋଉ ଅଳିଅଳ କରି ବଢ଼େଇ ଥେଲୁ, ହେଲା ଏତିକି ଦାଉ । [ଶାଶୁଘରେ ନୂଆ ବୋହୂର ଚିନ୍ତା]

୨୧୭ । ବୋପା ଲୋ ବୋପା ! ପାଣି ବୁହାନ୍ତିଙ୍କ ମୁଣ୍ଡରେ ଖୋପା !
ନ ଦେଇ ନ କର ଏତିକି ଖୋପା (ଝପା) !
ଗୋବର ଖାତରେ ଫୁଟିଛି ଚମ୍ପା !
ବୋହୂ ପଡ଼ୁଅଛି (ନାକକୁ ବୋହୂଛି) ସୁନ୍ଦର ଥୋପା !
ଗୋଟାଏ ଦାଆକୁ ଦପୁଞ୍ଜା ଢେପା !
କଥା ପଦକରେ ଗୁଡ଼ୁଛି ଚେପା ! [ବ୍ୟଙ୍ଗ]

୨୧୮ । ବୋପା ଲୋ (ରେ) ଛଡ଼େଇ ଦଉଛି ଚେପା ଲୋ (ରେ) ! [ବ୍ୟଙ୍ଗ]

୨୧୯ । ବୋପା ଲୋ ! କଅଁଳେଇ କରି (କରି) ମାଇଲା (ମାରୁଛି) ହାତ ଛଡ଼େଇ ଦେଲା (ଦଉଛି) ଚେପା ଲୋ ! ହସି ହସି ହାତ ବୁଲେଇ ଦେଲେ, ଗୁଡ଼ି ଯାଉଥାଏ ଚେପାଲୋ) । [ବ୍ୟଙ୍ଗ]

୨୨୦ । ବୋହୂ ରନ୍ଧୁନାହିଁ କାଞ୍ଜି ପାଣି, ଶଶୁର ଯାଇଛି (ଧାଇଁଛି) ବଇଦ (ଓଷଦ, ବଟିକ) ଆଣି । [ବ୍ୟଙ୍ଗ]

୨୨୧ । ବୋହୂ ସୁନ୍ଦର ବୋଲି ପୁଣ (ଚୁ) ଚ ମହା, କେହି ନ ଜାଣେ ତାର ଭିତର ଗଇ । [ବ୍ୟଙ୍ଗ]

୨୨୨ । ବୋପାକାଳେ ନା ଘୋଡ଼ାଶାଳେ ! [ଢଗ]

୨୨୩ । ବୋପା କାଳ ପଥିବ (ବୋପାଙ୍କ ଅମଳ ପଥିବ), ବୋହୂ ବସିଥିବେ ସୁନା ପଲଙ୍କେ, ବୁଢ଼ୀ ପୋଇଲଣୀ (ଅନ୍ଧୁଣୀ) ରାନ୍ଧିବ; [ଝିଅ ମାରୁଥିବେ ଯାହାରେ ଦାଣ୍ଡି (ହେଣ୍ଡି); ନୂଆ (ଢୁଆ) ବୋହୂ ଭାତ ବାନ୍ଧିବ] । [ବ୍ୟଙ୍ଗ]

୨୨୪ । ବୋଇଡ଼ କଖାରୁ ଚୁଙ୍ଗୁଡ଼ି ପକେଇ ଢକଡ ମାରୁ, ପୁଅ ଦାହ ଗାବୁ ଗାବୁ । [ଢଗ]



# ଭ

୧ । ଭଗାରି ହସେଇଲା, ରାନ୍ଧ ଅଧରେ ଡାଟି ଭାଙ୍ଗି ପଶି, ଦାଣ୍ଡରେ ବସେଇଲା । [ସ୍ତ୍ରୀର ସତୀତ୍ୱ ନାଶ କରୁଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ]

୨ । ଭଙ୍ଗା ଖଇଣ୍ଡିରେ ବାଳିଆ (ଖଙ୍କୁର) ମାଛ, ଆରେ ସାହିପିଲା (ଆହେ ପଡ଼ିଶାଏ) ଦଉଡ଼ି ଆସ । [ବ୍ୟଙ୍ଗ]

୩ । ଭଲି ଭଲ (ବଲବଲ) କରି ଅନେଇଅଛୁ, ଲୋକେ ପଚାରିଲେ ନ କହେ କିଛୁ । [ଗାଳି]

୪ । ଭଙ୍ଗା ଡିଙ୍ଗି ଶାଳ ରୁଅ; ହେଲା ଗୁଆଳକୁ କେତେ କଣ୍ଡ (ଣ୍ଡା) ଉଛୁ, ପାଇଛୁ (ଲୁ) କି ପୋଲା ଦାହ ? [ଢଗ]

୫ । ଭଙ୍ଗା ଦେଉଳ, ଅପନ୍ତରା ଯାଇ; କୋଉଁ (କେଉଁ ଯୋଗୀ) କୋଉ (କେଉଁ) ମାର୍ଗେ ଥାଇ (ଯାଇ) । [ଢଗ]

୬ । ଭଜାଭଜି ଖଡ଼ିକା. ଅର ଘାଇରୁ ଗଡ଼ ପଡ଼ିଲେ(ବଳେ କଲେ) ମହାଭଦ୍ରକାଳିକା [ଦୁଷ୍ଟା ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୭ । ଭଦଭଦଳିଆ କୋଳି, କାହୁଁ ଗୁଡ଼ିବେ ସେ ବଇଁଶ ଓଳି ? [ବ୍ୟଙ୍ଗ]

୮ । ଭବଷ ପୁରୁଣକୁ ଖବସ ରଜା । [ବ୍ୟଙ୍ଗ]

୯ । ଭଲ କହିଲେ ଦଲ ବୁଝେ ! ଗଲ କହିଲେ ମଲ ବୁଝେ । [ବ୍ୟଙ୍ଗ]

୧୦ । ଭଲ (ଘର) ପୁଅ ତେଲ ଶାଣ୍ଢିରେ ଲଣ୍ଡା ! ଯୋଗିଆ ବୋଲେ ମୁଁ ବେଣ୍ଢି ରଖିବି । [ବ୍ୟଙ୍ଗ]

୧୧ । ଭଲରେ ଥାଉ ମୋ କଲୁରି ଗଛ, କଲୁରି ଥେ (ଥି) ଲେ ମୋ ତଅଣ (ତୃଣ) ଅଛୁ । [ଢଗ]

୧୨ । ଭଲ ଏ ଚନ୍ଦ୍ରକଗୃହୀ ! ଅଣ୍ଟାଟି ସରୁଆ, ଗୋଡ଼ଟି ମୋଟୁଆ ଗୃଲୁଥାଏ ପାଟ ପିନ୍ଧ (କୁନ୍ଦ କୁନ୍ଦ) [ବ୍ୟଙ୍ଗ]

୧୩ । ଭଲ ଅଭଲ ! ଅଭଲ ବେଇଛ ମାଙ୍କଡ ପିଲ । [ବ୍ୟଙ୍ଗ]

୧୪ । ଭଲ ଗୃହାଣି, କଅଁଳ ବଚନ (କଥା ନ କହୁଣ) ଦଉଛ ହାଣି । [ବ୍ୟଙ୍ଗ]

୧୫ । ଭଲ ରସିକ, କଖାରୁ ଫୁଲକୁ ପାଖୁଡ଼ା ପୋକ । [ବ୍ୟଙ୍ଗ]

୧୬ । ଭାଇ ବୋହୂ ଯିବେ ହାଟ, ପାଖେଇ ଯାଅ ବାଟ । [ବ୍ୟଙ୍ଗ]

୧୭ । ଭାଇ ଭାଇ ଡାକରେ ସୀମା (କୁଡେଇ) ନାହିଁ, ମାଆ ପେଟର ଗୋଟିଏ ନାହିଁ । [ଢଗ]

୧୮ । ଭାଜୁ ମାଠିଆ ନୋହୁ କାଣ; ମରୁ ଝି (ଝିଅ) ନୋହୁ ଋଣ । [ବ୍ୟଙ୍ଗ]

୧୯ । ଭାଜୁ ଲେ ବୋହୂ ବରଗୁଣ୍ଡ; ବସି ଥେ (ଥିଲେ) ଲେ ବୋହୂ ସୁନ୍ଦର ଦଶେ, ଗୃଲ ଗଲେ ଦଶେ ନଳଗୋଡ଼ୀ [ବ୍ୟଙ୍ଗ]

୧୯ (କ) । ଭାଜୁ ଲେ ବୋହୂ (ଭାଜୁନ) ବରଗୁଣ୍ଡ, ତୋ ମନରେ ମୁଁ ଥାଏଁ କ ନ ଥାଏଁ, (ତୋହୋ ମନରେ ଥାଏ କ ନ ଥାଏ) ମୋ ମନେ ଥାଉ (ଥାଏ) ହରଗଣ୍ଡ [ଢଗ]

୨୦ । ଭାଙ୍ଗ (ଙ୍ଗି) ଯାଇଥି (ଥେ) ଲେ ଗଢ଼େଇ ଦେବ ହଜ ଯାଇ ଥି(ଥେ)ଲେ ଖୋଜେଇ ଦେବ (ଭୃମ୍ଭ ଯାଇଥିଲେ କଢ଼େଇ ଦେବ) [ଢଗ]

୨୧ । ଭାଡର ଉପରେ ହାଣ୍ଡି; ବୋଉ ଦେଇଥିଲେ ହଣଆ ନାଡ଼ୀ ଲେ, ଲୋକେ ପକାଇଲେ ଖାଣ୍ଡି; ମୋ ପ୍ରଭୁ ସେ । [ଶାଶୁ ଘରେ କନ୍ୟାର ଖେଦ]

୨୨ । ଭାତ ଖାଇ ଗୃଉଳ ହଗୁଛ । [ଦୁଷ୍ଟ ଭୃତ୍ୟ ପ୍ରତ ବ୍ୟଙ୍ଗ]

୨୩ । ଭାତ ଖୁଆଇଲ କୁକୁରକୁ. କୁକୁର ଚଢିଲ ଓ (ଉ)ପରକୁ । [ଢଗ]

୨୪ । ଭାତ ବରତନ ଦଉଛୁ କେତେ, ଏଥିପେଇଁ ଆଣ୍ଠୁ କାଢୁଛୁ କେ (ଏ) ତେ । [ବ୍ୟଙ୍ଗ]

୨୫ । ଭାତ ଲୁଗା ଦେଲ ଘଉରୁଣୀକି, ଟାନ ବସିଲ ମୁଁ ପେଜପାଣିକି । [ଢଗ]

୨୬ । ଭାତ ଫୁଟୁଥିଲ ଟକର ମକର, ପେଜ ପଡୁଥିଲ ଡେଇଁ, ଏହୁ ବାଟେ ଗଲେ ମୋହର ଭାଇ (ମୋ ମାଆଧୋଇ), ମୁହଁରେ ଗାମୁଛା ଦେଇ; ମୁଁ ଥାଅନ୍ତି, ସୁବର୍ଣ୍ଣ ଥାଳରେ ଭାତ ଦଅନ୍ତ ! ମାଣିକର ପୀଠ ବସି ଜାଳନ୍ତ, ସୋରଣ ଫୁଲର ଗାଈ; ଲୋକେ ପଗୃରଲେ କ ବୋ ଲ କହିବ ? ପିଇପାଙ୍କ ପୁଅଭାଇ । [ବ୍ୟଙ୍ଗ]

୨୭ । ଭାତ ତଳେ (ଖଟ ତଳେ) ଘିଅ ଝୋଳ, ଜଗନ୍ନାଥେ ହେବେ ରଘୁନାଥ ବେଶ, ଗୃଲ ଦେଖିବାକୁ ଯିବା । [ଢଗ]

୨୮ । ଭାଇ ଫୁଟୁଥି (ଥେ)ଲା ଟକର ମକର; ପେଜ ପଡୁଥି(ଥେ)ଲା ତେଉଁ; ଭାଇନା ମନ ତ ଭାଉଜ ଠେଇଁ ଲୋ; ମିଛେ ଆସିଥେ (ଥି) ଲେ ନେଇ । [ଶାଶୂଘରେ ଥିବା ଭଉଣୀକୁ ନବବିବାହିତ ଭାଇ ନେବାକୁ ଆସି ଶାଶୂ ଆଉ ନାହିଁ କରିଦେବାରୁ ବିନାକେତେ ଅପେକ୍ଷା ଓ ଅନୁରୋଧଦ୍ୱାରା ଶାଶୁଙ୍କ ହୁକୁମ ବଦଳାଇବାକୁ ଜିଗର ନ କରି ଶୀଘ୍ର ଘରକୁ ଭାଇ ଫେରିଯିବା ପରେ ଭଉଣୀର ଅନୁଚିନ୍ତା ।]

୨୯ । ଭାତ ଲୁଗା ଦେଇ ରଖିଲ ଦାସୀ, ଯେ ସାଆନ୍ତାଣୀ ମୁଁ ହେଲ ଦାସୀ (ବାସି) । [ବ୍ୟଙ୍ଗ]

୩୦ । ଭାର ଆକଟ ! କଳା ହୋଇଅଛୁ ଦାଣ୍ଡ କବାଟ (ଭିତରେ ଲାଗିଛୁ ବାଡ଼ ଗୈର କବାଟ) ଭିତରେ ପଶିଛୁ ଗୈର; ମୂଷା ପୂରେଇ ଚୋଲ ସିଁଝିଲେ ଶାମ୍ପୁଡ଼ି କାମ୍ପୁଡ଼ି (ବାଳ ଛୁଣ୍ଡେଇ) ମର । [ବ୍ୟଙ୍ଗ]

୩୧ । ଭାରୁଯା ! ଘରେ ଭାତ ନାହିଁ ଭାଆର (ବାହାର) ଯା । [ଅନୁପ୍ରାସ]

୩୨ । ଭାସିଲା ପଥର ବୁଡ଼ିଲା ଶୋଲ, ହରିବୋଲ ଭାଇ ଗୋବିନ୍ଦ ବୋଲ । [ବ୍ୟଙ୍ଗ]

୩୩ । ଭିକାରି ! ଯେଉ (ହି) ସଜରେ, ପାଣି ପଶିଗଲା ଡାଳସଜରେ ।
[ଭିକାରି ନାମକ ବାଳକ ପ୍ରତି ବ୍ୟଙ୍ଗ]

୩୪ । ଭି(ଭେ)ଣେଇ ନାକରେ କଳା, ତାକୁ ଗୋଡ଼େଇ ଗୋଡ଼େଇ ଚଲା । [ଢଗ]

୩୫ । ଭିତରେ ଭିତରେ କାଟୁଛି ଗୋଛୁ (ଖୋଘା); ଦାଣ୍ଡେ ଦେଖା (ଖା)ଉଛୁ ନାଲି ବଇଁଶୀ (ଚଡ଼ା ପଇଡ଼ା) । [ବ୍ୟଙ୍ଗ]

୩୬ । ଭିତରେ ଭିତରେ ଯାହା ସୁନ୍ଦର, ଦାଣ୍ଡେକୁ ଲାଗିଛୁ କଳି (ଦାଣ୍ଡେ ଜାଣିବାକୁ କଳି) । [ବ୍ୟଙ୍ଗ]

୩୭ । ଭିତରେ ଭିତରେ ମିଷ୍ଟା, କାଟି ଦେଇଗଲା ଚୋପା; କହ (ଅ,ବ)ର ଯାକ ଟୋଖାଳା ପଡ଼ୁଛୁ (ଲାଗିଛୁ) ରଙ୍କଙ୍କୁ ପଡ଼ୁଛୁ ଦଣା (ଘଣା) । [ବ୍ୟଙ୍ଗ]

୩୮ । ଭୁଆ ! ମୋତେ ଟାଏ ନାକ ଲୁଆ । [ଢଗ]

୩୯ । ଭୁଇଁଯନ୍ତା ଥାଏ ଭୁଇଁଲେ, ଲୁଟୁକୁନା କାଏ ପୁକାଏ [ବ୍ୟଙ୍ଗ]

୪୦ । ଭିତରେ ଭିତରେ ଲାଗିଛୁ ଖଣ୍ଡ, ପୋଖରୀ ଘାଟ (ଭୂ୍ଠ, ତୋଠ)ରେ ହେଲ (ବୁଡ଼ିଲା) ହସ୍ତ । [ବ୍ୟଙ୍ଗ]

୪୧ । ଭୁଆ ବଗଡ଼ି ! ଆପଣ ଭୁଆଙ୍କୁ ଶଙ୍ଖୀ ମୋଡ଼ି । [ଢଗ]

୪୨ । ଭୁଆ ବଗଡ଼ର ଅଡ଼ି (କାଳିଆ କୁକୁର ଅଡ଼ି), ଅନ୍ଧାର ଘରକୁ (ସବୁଟି ପାଟକୁ) ନଉଛୁ ଡାକି, ଓପରେ ଧରମ ସାକ୍ଷୀ । [ଢଗ]

୪୩ । ଭୁରୁଡ଼ୁ, ଏ ତିନି ଅକ୍ଷରରେ ସଂହାର ଜମ୍ବୁ । [ବ୍ୟଙ୍ଗ]

୪୪ । ଭୁରୁଡ଼ୁ କାଡ଼ିଲି (ଝାଣ କଲି ବୋଲି) କାରଣ ନ ବୁଝି, କାନ୍ତ (ଧନ) ଦେଲେ କେତେ ଦଶା; ଠିଆ ଗୋଇଠାରେ ପିଠି (ବୁକୁ) ଫଟେଇଲେ, କରେଇଲେ ଲେକହସା । (ଅନୁଭ ପ)

୪୫ । ଭେଦନ୍ତି ବ୍ରହ୍ମଲୋକଯାଏ; କରନ୍ତି ଶ୍ଯେରଙ୍କ (ଚଣ୍ଡାଳ) ଉପାସ୍ତେ । [ବ୍ୟଙ୍ଗ]

୪୬ । ଭେଲା ବୁଡ଼ିଲା ମୋର ହଗଲ ସବୁ । [ଅନୁଭୂତି]

୪୭ । ଭୋଗ ରାଗ ଦେଖା ନାହିଁ, କୀର୍ତ୍ତନରେ ଧୂମ୍ ଉଡୁଛି ! [ନାମକୀର୍ତ୍ତନ ପ୍ରତି ବ୍ୟଙ୍ଗ]

୪୮ । ଭୋଗ କରୁଛି ଜଣେ, ଝଟିବାକୁ ପଣେ । [ନାଁ ଦଆ କାଉ ଓ ଦାନ୍ତ]

୪୯ । ଭୋ ଧରମ ! ବାପ ବାହା (ବାଘ, ଭାଆ, ବେହା) ଦାନ ପୁଅ ଜନମ, ନାଉ କାଆଁ ବାଲି ପଡୁଛି; ଗୋଟାଏ ମାଛକୁ ତିନଟା ପନକ, ଗୋଟାଏ ଅଣ୍ଡକ ପକେ (କା)ଇ ଘୋରୁଛି । [ବ୍ୟଙ୍ଗ]

୫୦ । ଭୋ ଦଇବ ! ଏହା ଦେଖି କର ଦେହ(ଦାହ) ସହିବ ! ଟୋକାଟାକୁ ବୁଢ଼ା ବାଘ (ଭାଆ) ହୋଇବ । [ବୃଦ୍ଧ ବିବାହ ପ୍ରତି ବ୍ୟଙ୍ଗ]

୫୧ । ଭୋବନଗର ଦେଉଳ, ଧାନକୁଟିଲେ ତୋ ଦାନ୍ତ (ଗଣ୍ଡି) ହଲିବ, କାଣି ଖାଇବା ଗୁଣ୍ଡଳ । [ବ୍ୟଙ୍ଗ]



# ମ

୧ । ମଇଁଷି ଗୋଠରେ କାଆଁ, ଭାତ ଖାଇନାହିଁ ପିହାଣମୁହାଁ, ବାହା ହୋଇ (ହଜ) ଥି(ଥୋ)ଲି କାହିଁ ? [ଢ଼ଗ]

୨ । ମଇଁଷି ଶିଂଘ ଲଡ଼କା (ନଡ଼କା), କଥା ପଦକ ତୋ ଦ ସୁଡ଼କା, ଗୁହାଣିଟି ଲକ୍ଷେ ଟଙ୍କା । [ବ୍ୟଙ୍ଗ]

୩ । ମଇଁଷି ପିଠିରେ ଅବୁ, ମତେ ନ ବୋଲିବୁ ବଲଙ୍ଗା (ଓଲମା) ବୋଲି; ମୁହଁ ଶୁଣୁଥାଏ ସବୁ । [ଢଗ]

୪ । ମଉନମୁହାଁ ର ଅପାର ଗୁଣ । [ବ୍ୟଙ୍ଗ]

୫ । ମଉନ(ନୁ)ମୁହାଁଟି କଛୁ ନ ଜାଣେ; ବେଲ କାଲ ଉଣ୍ଡି ବସନ ଟାଣେ । [ବ୍ୟଙ୍ଗ]

୬ । ମଉନ(ନୁ)ମୁହାଁଟି କଛୁ ନ ଜାଣେ, ବେଲ କାଲ ଉଣ୍ଡି ପଦଏ ହାଣେ । [ବ୍ୟଙ୍ଗ]

୭ । ମଉନମୁହାଁ, ଅଣ୍ଟି ମରୁ (ଠାରୁ) ଥାଏ ଭୂଇଁକୁ (ତଳକୁ) ଗୁହିଁ । [ବ୍ୟଙ୍ଗ]

୮ । ମଉନେ ଥାଏ, ସବୁ ଖାଏ । [ବ୍ୟଙ୍ଗ]

୯ । ମଉନ (ନୁ) ମ ଲା, ରୁନ ତୁନ କରି କାନ୍ଦୁଛି ଗଲା । [ଢଗ]

୧୦ । ମଉନ ହୋଇ ବସିଥା, ଯାହା ମିଳିବ ତାହା ଖା । [ବ୍ୟଙ୍ଗ]

୧୧ । ମଉନେଇଲେ ? ମନ କଥା ମତେ କହୁନେଇଲେ । [ବ୍ୟଙ୍ଗ]

୧୨ । ମଉଲା ପୁଅ ଖାଇ, ଦୁଆର ଦେଇ ଯାଇ । [ବ୍ୟଙ୍ଗ]

୧୩ । ମକୁନ୍ଦ ଦେବଙ୍କ ଗୁଣୀ ଜଣେ, ନାଁ ମକୁନ୍ଦା ମା ଭଣ୍ଡାଗୁଣୀ ଜଣେ । [ବ୍ୟଙ୍ଗ]

୧୪ । ମଙ୍ଗଳା, ପିଲାଟି ଦିନେ ଲୁଗା ପିନ୍ଧଥାଏ, ବୁଢ଼ାଦିନକୁ ଲଙ୍ଗଳା ।
[ନାଆଁ ଦିଆ, ବାଉଁଶ ଗଛ]

୧୫ । ମନ୍ତ୍ର କରି ଖଣ୍ଡେ ପତର କାଟ, ଯେରନ୍ତା ରାଜାର 'ଗଉଡ଼) ଖାଇବେ ଭାତ [ବ୍ୟଙ୍ଗ]

୧୬ । ମଣିଷ ଗେଡ଼ୀ ଲୁଗା ପିନ୍ଧଅଛୁ ଚଉଦ ପେଡ଼ି । [ନାଆଁ ଦିଆ; ପିଆଜ]

୧୭ । ମତ ହେବେ, ଗଜ ହେବେ, ତେବେ ଯାଇଁ ରଜା ବଳେ ହେବେ । [ବ୍ୟଙ୍ଗ]

୧୮ । ମଣ୍ଡାପିଠା ଗୋଟି(ଗଇଁଠା ଖଣ୍ଡିକ)ଅଇଁଠାକଲି, କଷା କିଏ ମିଶାଇଲି; ଗଲା(ଗତ) କଥା ଆଉ ଲେଉଟି ଆସେ କି ଯେତେ ଆଧ କଲେ (ଝୁରୁଥିଲେ) ଭଲି ? [ଢଗ]

୧୯ । ମତେ ନ ଆସେ ଦିଅଁଙ୍କ ନାଁ ନନା ଯାଇଛନ୍ତି ବାହାର ଗାଆଁ । [ଢଗ]

୨୦ । ମତେ ନ ଅଣ୍ଟେ ଯାତ ଯାଇ ଗୋବର, ପଡ଼ିଶା ଘରକୁ ଦିଏଁ ବଢ଼ି ମହୁର
(ମୋହର) । [ବ୍ୟଙ୍ଗ]

୨୧ । ମତେ କୋଉ ଦିଅଁ ବୋଲି ବୁଝିଛୁ ? ମତେ ମୁଡ଼ି ମୁଆଁ ଦେଇ ପୂଜୁଛୁ ?

୨୨ । ମତେ ଯେତେ ମାଠୁଥିବୁ ମାଠ, ମୁଁ ଯେହ୍ନ ଦରପୋଡ଼ା କାଠ ! [ବ୍ୟଙ୍ଗ]

୨୩ । ମତେ ଯେତେ ବୋଲୁଥିବୁ ବୋଲ୍ ମୋ ଦିହଟା ଯାକଇ ପୋଲ୍ । [ବ୍ୟଙ୍ଗ]

୨୪ । ମତେ ନ ଅଣ୍ଟେ ଯାତ କୁଲ୍—ଯାଇ ପଡ଼ିଶୁଣୀ କିଏ କଲି ? (ପଡ଼ିଶୁଣୀ ପାଇଁ କାହୁଁ ଅଇଲା) ? [ବ୍ୟଙ୍ଗ]

୨୫ । ମତେ ନ ବୋଲିବ ବୁଢ଼ୀ ! ମୁଁ ବଅ (ବୟ)ସରେ ପାଞ୍ଚ କୋଡ଼ି । [ବ୍ୟଙ୍ଗ]

୨୬ । ମତେ ତ ମରିବାକୁ ଡୁରୁଡୁ (ଡର) ନାହିଁ ।

୨୭ । ମତେ ମୁଣ୍ଡ ଗୁଞ୍ଜିବାକୁ ଥାନ (ଜାଗା) ନାହିଁ, ମୁଁ ଝୁରି ମରୁଅଛି ପର (ପଡ଼ିଶା) ପାଇଁ । [ବ୍ୟଙ୍ଗ]

୨୮ । ମଉ ଗଙ୍ଗରେ ଟହ ଟହ ହସେ, କୁଡ଼ା ( ଗଣ୍ଡି ) ପୋଡ଼ିଗଲେ କାଶ ଅଉଁସେ ।
[ବ୍ୟଙ୍ଗ]

୨୯ । ମଞ୍ଜି ପୋତିଦେଲି ଲଟା ଲଟେଇଲା ଫଳିଲା ଝୁଡ଼ିଙ୍ଗ ଛୁଇଁ, କେଉଁ କଥା ପାଇଁ ରସିକ ପୁରୁଷ ପହରେ ରହିଲେ ଶୁହିଁ । [ଢଗ]

୩୦ । ମଥାନେ ବାନ୍ଧିଲା ମେଣ୍ଟା (ଧାନ ମେଣ୍ଟା ଗୋଟା ଗୋଟା), ଜବାବ ଦେଇ ଯା ନଆଣ କଲୁ, କାଲି ବସେଇବି ହାଟ । [ଢଗ]

୩୧ । ମନଉ ମନ, ପିଠା କରିଥିଲି ଚଉଦବନ; କେ ଗଲା ହସି, କେ ଗଲା ବସି ପିଠାକଲା ଲୋକ ମଝିରେ ପଶି; କୁଳଚୁନା ଗଲେ ଧାହୁକ; ଏତେ ଶରଧାରେ ହଳଦୀ ବାଟିଲି (ପିଠା କରିଥିଲି, କାନ୍ତ (ଧନ) ଗଲେ ଦାନ୍ତ (ହାଣ୍ଡି) ଶୀହୁକ) । [ଡଗ]

୩୨ । ମଥା ଘୋଡ଼େଇଙ୍କର କଥାଏ କଥାଏ, ନାକ ଘୋଡ଼େଇଙ୍କର ସୀମା ନ ଥାଏ । [ବ୍ୟଙ୍ଗ]

୩୩ । ମନକଣ୍ଠ (କାଣ୍ଠ) ମନରେ ମଲା, ମନ ଓରମାନ ମେଣ୍ଟି ଗଲା । [ବ୍ୟଙ୍ଗ]

୩୪ । ମନର ମନା; ଚହଟଚମ୍ପା ହଏ ବାହନା । [ଡଗ]

୩୫ । ମନ ହରଷ, ତୁମେ ତ ଆମର ଘର ମଣିଷ, ଧୋବଲୁଗା ପିନ୍ଧ ଅସ । [ବ୍ୟଙ୍ଗ]

୩୬ । ମୟୂ (ଯୂ)ର ବେକରେ ଫାଶ, କାନ୍ତଙ୍କ ମନରେ କପଟ ରହିଣ ପରହିଅ କଲେ ନାଶ । [ଡଗ]

୩୭ । ମରଣ ନାହିଁ ! ଦାଣ୍ଡରେ ବସିଛୁ (ଛୁ) ଗୋଡ଼ ଲମ୍ବାଇ । [ଗାଳି]

୩୮ । ମରିବା ବେଳ (ଦିନ)କୁ ପରିବା କାଟୁଛୁ । [ବ୍ୟଙ୍ଗ]

୩୯ । ମରିଗଲେ କେହୁ କାନ୍ଦିବାକୁ ନାହିଁ, ହଜିଗଲେ ଖୋଜିବାକୁ ନାହିଁ । [ବ୍ୟଙ୍ଗ]

୪୦ । ମରିଗଲେ ବଞ୍ଚେଇ (ଉଠେଇ) ଦେବ, ହଜି ଗଲେ ଖୋଜେଇ ଦେବ, ଭାଙ୍ଗିଗଲେ ଗଢ଼େଇ ଦେବ ଛିଡ଼ିଗଲେ ଗୁନ୍ଥେଇ ଦେବ। [ବ୍ୟଙ୍ଗ]

୪୧ । ମରିଯାଇ ଥେ (ଥି)ଲେ ବଞ୍ଚେଇ (ଉଠେଇ) ଦେବ, ହଜି ଯାଇଥିଲେ ଖୋଜେଇ ଦେବ । [ଡଗ]

୪୨ । ମରି ନ ଗଲୁ ବୃଦ୍ଧା ପାଳ, କଥା ରହିଗଲୁ ଅପାର କାଳ । [ବ୍ୟଙ୍ଗ]

୪୩ । ମରୁ ହଡ଼ା ଉପୁଜୁ ଧାନ, ଏ ହଡ଼ା ମଲେ ଆଉ ହଡ଼ା ଆଣ । [ନିର୍ଦ୍ଦୟ କୃଷକ ପ୍ରତି ବ୍ୟଙ୍ଗ]

୪୪ । ମର୍କଟ (ମାଙ୍କଡ଼) କି ଜାଣେ ଅଦାର ସ୍ୱାଦ ? [ବ୍ୟଙ୍ଗ]

୪୫ । ମଲା ଗୋରୁ ବାହ୍ମଣକୁ ଦାନ, ଚୂଡ଼ିକା ଭିତରେ ଅଧେ ଧାନ (ଅଧେ ଚୂଡ଼ିଲକୁ ଅଧେ ଧାନ) । [ବ୍ୟଙ୍ଗ]

୪୬ । ମରି ହଜିଗଲେ ଯେ, ଘରେ ଶୋଇଥିଲେ ସେ । [ବ୍ୟଙ୍ଗ]

୪୭ । ମଲା ଗାଈର ଦାନ୍ତ ଦେଖୁଛୁ । [ବ୍ୟଙ୍ଗ]

୪୮ । ମଲା; ନାଁ, ଚନ୍ଦ୍ରଯାନ୍ତ୍ରିରୁ ଗଲା । [ବ୍ୟଙ୍ଗ]

୪୯ । ମଲା, ନାଁ, ମଲା ଓଁ (ଉ)ପରେ ଶଗଡ଼ ଗଲା । [ବ୍ୟଙ୍ଗ]

୫୦ । ମଲା, ନାଁ, ଲଟ (ନଟ) ଗଲା । [ବ୍ୟଙ୍ଗ]

୫୧ । ମଲା ଯା, (ବାରନ୍ତି ସୁଦ୍ରାଜ) । [ଅବାନ୍ଧୁ]

୫୨ । ମହୁଲ ଅଛଇ ମିଠା, ଉସୁନା ଗୁଡ଼ଲ ଅଟା, ଚୋକାଠି ଧାଙ୍ଗରେ ଲଗେଇ କଲ (ଭବ, ନାଚ) ଦାଣ୍ଡେ ବସେଇଲ ହଟା । [ଛଗ]

୫୩ । ମଲାଠେଇଁ (ଉପରେ) ଚନ୍ଦନ ପାଟି ପାଟି ! ( ପାଟି ପାଟି ଲଗୁଛୁ) । [ବ୍ୟଙ୍ଗ]

୫୪ । (ଅମୁକ) ମଲ ! ମୋଠଉଁ କଣ୍ଟା (କଲଙ୍କ) ଗଲ । ଶତ୍ରୁର ମୃତ୍ୟୁରେ ଆନନ୍ଦ ପ୍ରକାଶ ।

୫୫ । ମଲ ଘୋଡ଼ାର ଟାଙ୍କୁ ମଜା ( ଯାଉଛୁ, ହେଉଛୁ) । [ବ୍ୟଙ୍ଗ]

୫୫ (କ) । ମସଲାଦଆ ପାନ କେ ଖାଇଁଛୁ ? ଗୋଷ୍ଠି ହାତ ପାନ ନୁହଁରେ ଗୋଷ୍ଠି ହାତ ପାନ ଖଣ୍ଡିଏ ଖାଇଲେ ମହକ ଉଠଇ ଦହରେ । [ଛଗ]

୫୬ । ମଲ ବେଲକୁ ବଇଷମ ଗୋହେଇଁ ମଲେ (ମରବେ) । [ବ୍ୟଙ୍ଗ]

୫୬ (କ) । ମଲଫୁଲ ମହକାଲ, କେଉଁ ରସିକକୁ ଅନେଇଥିଲୁ, ଓଦା (ଝଙ୍ଗେ) ଲୁଗା ଶୁଖିଗଲ । [ବ୍ୟଙ୍ଗ]

୫୭ । ମସ ମଯକା, ଡାଲ ଖାଇଗଲେ ତଲକୁ ପକା । [ଛଗ]

୫୮ । ମହତା ପାନ, ଚଉ କରୁଥିଲୁ ଛନ ଛନ; ଆଶା କରଥିଲୁ ତତେ, ପିଲଙ୍କୁ (କୁଆକୁ) ଯେମିତ ଦଅନ୍ତ ଭଣ୍ଡେଇ, ସେହେମିତ କଲୁ ମତେ । (ଅଭିମାନ)

୫୯ । ମାଆ କଲହୁଡ଼ୀ, ପୁଅ ଦଗୁଲଆ (ଟେଲ୍କା) । [ବ୍ୟଙ୍ଗ]

୬୦ । ମାଆ ବଆଣରୁ ଝିଅ ବଆଣ ବଲ ପଡ଼ଲ । [ବହୁ ପ୍ରସୂତ ପ୍ରତ ବ୍ୟଙ୍ଗ]

୬୧ । ମାଆ ଗୋ ! ତୁମ ପୁଅ ବଡ଼ ଛଇଲା ! ଶୋଇଲା ଶେଜରେ କଥା ନ କହି, କରକୁ ଆଡ଼େଇ ଶୋଇଲ, (ହଲଦୀ ଲଗେଇ ମୋଡ଼ମାଡ଼ ଦେଲ ବଲଦ ପଟ୍ଟିଏ ଶୋଇଲ) । [ବ୍ୟଙ୍ଗ]

୬୨ । ମାଆ ମଲ ପୁଅଇ ଷଠିଘର (ଛଠି ପଞ୍ଚୁଆତ) ଖୋଜା ଯାଉଛୁ ।

୬୩ । ମାଆ ଲେ ! ମତେ ଟିକଏ (ନଦରୁ) ଉଠେଇ ଦବୁ ! ନାଁ, ମୁଁ ତତେ କଅଣ ଉଠେଇବ ? ତୁ ତ ଯାତଘର ଉଠେଇବୁ ! [ବ୍ୟଙ୍ଗ ପୋଡ଼ୁହାଁ ଅହନ୍-ଡ୍ରହବା ଟେଲ୍କା ଝିଅ ଶୋଇବା ପୂର୍ବରୁ ମାଆକୁ କହଲ, ମାଆ ମୁଁ ଶୋଇଛୁ ଡ୍ରହବ ବେଲ ହେଲେ ମତେ ଉଠେଇ ଦବୁ, ତା ମାଆ ଏହି ଉତ୍ତର କରୁଛୁ]

୬୪ । ମାଆ ଝିଅ ଦହେଁ ଦେଉଳେ ପଶିଲେ, ଯେଝା ସୁଙ୍ଗ ଯେ ମନାସିଲେ ।

୬୫ । ମାଆ ଡାହାଣୀ, ପଖାଳ ଭାତକୁ ଚୁଙ୍ଗୁଡ଼ି ପାଣି ।

୬୬ । ମାଆ ଡାହାଣୀ ପୁଅ ମଦୁଆ । [ବ୍ୟଙ୍ଗ]

୬୭ । ମାଆ ଜାଗୁଟଲେଇ ! ଗୁଡ଼ଲ ହେରକ ( ତତଲ କଂହାକ ) ଦେପାଗୁଲେଇ । [ବ୍ୟଙ୍ଗ]

୬୮ । ମାଆ ଦୁଆର ଦୁଆର ବୁଲେ, ପୁଅ ଠବଣୀ ଏକା (ଦ୍ୟୁତୀ କରେ) । [ବ୍ୟଙ୍ଗ]

୬୯ । ମାଈଙ୍କୁ କହିବ, ବଳଦ ବିକିବ ନାହିଁ, ମୋ ବଇଷମ ହବା କଥା ନୋହିଲା; ଧାନ ଗୋଟି ଗୋଟି, ଗୁଡ଼ଲ ଗୋଟି ଗୋଟି, ବାଛୁ ବାଛୁ ଦିନ ହଗଲା । [ବ୍ୟଙ୍ଗ; ଜଣେ ଅଳସୁଆ ଯୁବକ ଚଷା ଗୃହସ୍ଥାଶ୍ରମରେ ରହିଲେ ବଳ ଚଷି କାମ କରିବାକୁ ପଡ଼ିବ ବୋଲି ବିଗୁରିଲା ଯେ ମୁଁ ବଇଷମ ହେଲେ ପରିଶ୍ରମ ନକରି ଭୋଜନ ମାରିବି । ଏହା ବିଗୁରି ଘରେ ଥିବା ଗୃଷେପଯୋଗୀ ବଳଦକୁ ବିକି ଦେବାକୁ ମାଆଙ୍କୁ କହି ଜମାଉତଙ୍କ ଦଳରେ ମିଶିଲା । ଜମାଉତମାନେ ଆଗନ୍ତୁକ ବ୍ୟକ୍ତିଦ୍ୱାରା ପ୍ରଥମେ ଦିନାକେତେ ପରୀକ୍ଷା ସ୍ୱରୂପ ନାନାଦି ପରିଶ୍ରମଜନକ କାର୍ଯ୍ୟ ( ଯଥା ଗୁଡ଼ଲରୁ ଧାନ ବାଛିବା, ଗୋରୁ ଚରାଇବା, ଘୋଡ଼ାଙ୍କପାଇଁ ଘାସ କାଟିବା, ବାସନ ମାଜିବା, କାଠ ହାଣିବା କରାନ୍ତି । ଚଷା ପୁଅ ଏ ଅନୁଭବ ଭୋଗ କରି ସ୍ଥିର କଲା ଯେ ମୁଁ ବଇଷମ ହେବନାହିଁ, ପୁଣି ଗୃହସ୍ଥାଶ୍ରମକୁ ଫେରିଯିବି । ଏହା ବିଗୁରି ମାଆ ନିକଟକୁ ଏହି ଖବର ଦେଲା । ]

୭୦ । ମାଆ ଲୋ ମାଆ ! ମତେ କେହି ଦେବତା ( କୋଉ ଦିଅଁ ) ବର ଦଉ ନାହାନ୍ତି ! ନାଁ, ତୁ କାହା ମୁଣ୍ଡରେ ଚରକ (ହଗି) ନାହୁଁ ଯେ, ତତେ କିଏ ବର ଦେବେ ?

[ବ୍ୟଙ୍ଗ; କୁଆ ଓ କୁଆ ମାଆର ଉକ୍ତି ପ୍ରତ୍ୟୁକ୍ତି]

୭୧ । ମାଆ ଲୋ ମଲି ! ପାନ ଖାଇ ଓଠ କରିଛୁ ନାଲି । [ବ୍ୟଙ୍ଗ]

୭୨ । ମାଆ ଲୋ ମଲି, ବାପ ଲୋ ମଲି, ଜାମୁକୋଳି ଖାଇ ପେଟରେ ହେଲି, ଗାଁ ଗୁରିପାଖ (ସାତଘାଇଯାକ) ବୁଲି ଅଇଲି, କେହି ନ ବୋଇଲେ ବସ ବୋଲି ।

[ପାପଗର୍ଭ ହୋଇଥିବା କନ୍ୟାର ଖେଦ]

୭୩ । ମାଈଁ ବେଙ୍କ ଧରି ଯୋଗିଆ କାନ୍ଦେ, ପର ଶାଢ଼ି ଆଣି ଝୁଣ୍ଟରେ (ଗୁହାଳେ) ବାନ୍ଧେ । [ବ୍ୟଙ୍ଗ]

୭୪ । ମାଈଁ ବେଙ୍କ ଧରି କାନ୍ଦେ (କାନ୍ଦୁଛି) ପ ମୁଁ ବେଙ୍କ ଧରି କାନ୍ଦେ (କାନ୍ଦୁଛି) ।

[ବ୍ୟଙ୍ଗ]

୭୫ । ମାଈଁଙ୍କ ଦେହିଁ, ଭଣଜା ଆସିଛୁ ଯାଉରି ଦେହିଁ । [ବ୍ୟଙ୍ଗ]

୭୬ । ମାଇପେଗୁଡ଼ିକ ଏତେ ଅବୁଝା; ଖରା ବେଳେ ଧାନ ଘୋଡ଼େଇ ରଖନ୍ତି, ବରଷାରେ କରୁଅଛନ୍ତି ଉଗୁଳା (ଉଗୁଳା) । [ବ୍ୟଙ୍ଗ]

୭୭ । ମାଈ ଗୁଲିଆ ହୁଟେଙ୍କଇ (ଝଟେଙ୍କଇ) ସାହୁ; ମାଇପ ହାତରେ କହୁଣୀ ଖାଉ ।

[ବ୍ୟଙ୍ଗ — (ଗୋଟିଏ ସ୍ତ୍ରୀ ଲୋକର ଗଳ୍ପ]

୭୮ । ମାଇଲି କୁଆ ! ମାଙ୍କଡ଼ ବେଇଛୁ ମଣିଷ ଛୁଆ (ମଣିଷ ବେଇଛୁ ମାଙ୍କଡ଼ ଛୁଆ) !

[ଅସମ୍ଭବ କଥା]

୭୯ । ମାଇଲ ପାଣିକୁଆକୁ, ମ ସକ ଦରମା (ଖରଚ) ପଠେଇ ଦେଲ, ନ ଅଣ୍ଟେ ପାନ ଗୁଆକୁ । [ବନ୍ଧୁ ବ୍ୟସ୍ତ କରିବା ସ୍ତ୍ରୀ ପ୍ରତି ବିଦେଶୀ ସ୍ୱାମୀର ଅନୁଚିନ୍ତା ।]

୮୦ । ମାଇଲେ ମର, କାଟି କୁଟି ଦେଲେ ଉଅଣ (ଉଉଣ) କର । [ନାଁ ଦଆ, ରଡ଼ା ବା ମାଗୁରମାଛ, ଝଣ୍ଟ୍ରାମରେମାଛ]

୮୧ । ମାଇଲ (ଅଇଲ) ଘିବଣ, ଅଣିଲ (ହେଲେ) ଦୀଡା, ଏଥି ପା(ପୋ)ଇଁ କିଆଁ ପୋଥି ଦାଡ (ରୁ) ଝା । [ଢଗ]

୮୨ । ମାଇଲ ଭାଲେ, ପଣି ଯାଇ (ଗଲା) ଭାର ଗଜ କପାଲେ, ସୁଟୁଙ୍ଗେଇରୁ କେଉଁ-କାଲେ । [ଢ଼ଗ]

୮୩ । ମାଉସୀ ବଡ଼ ଉପକାର କଲେ, ପଲେ ଉଣା କରି ମେଞ୍ଚାଏ ଦେଲେ । [ଢଗ]

୮୪ । ମାଉସୀ ଲୋ ! ଟିକଏ ତିର୍କି ଦଅନ୍ତୁ ! ନାଁ, ପୁତରେ ! ଟିକଏ ଶୁଖେଇ ଦେଲୁ । [ପ୍ରତ୍ୟୁପକାର ମାଗିବା ସମ୍ବନ୍ଧେ ବ୍ୟଙ୍ଗ]

୮୫ । ମାଉସୀ ଲୋ ମାଉସୀ ! ଜାଗା ( କେଉଁ ଥାନ ) ଟିକଏ ଦେଇନାଅରେ (ରୁ) ! [ଗୋଟିଏ ଧୂର୍ତ୍ତ ଅଜ୍ଞାତ କୁଳଶୀଳ ଆଗନ୍ତୁକ ପ୍ରଥମେ ଗୋଟିଏ ବୁଢ଼ୀକୁ ଘରେ ଶୋଇବାକୁ ପିଣ୍ଡାରେ ଟିକଏ ଆଶ୍ରୟ ମାଗି, ପରେ ସର୍ବସ୍ୱ ଅପହରଣ କରି ପଳାଇ-ଯିବାର ଗଳ୍ପ ।]

୮୬ । ମାଉଁସ ହଳଦିଆ ଯାଦୁଆ ଦହ, ଏକା ବିଅଣେକେ ହଜାରେ ପୁଅ (ଥରକେ ଜନ୍ମ କରେ କାହାଣେ ଝିଅ) । [ନାଁ ଦଆ, ପାଚଲ ପଣସ]

୮୭ । ମାକ (ଙ୍କ) ଡ଼ ହାତରେ ଶାଳଗ୍ରାମ (ମାଙ୍କଡ଼ ପାଇଁ ଶାଳଗ୍ରାମ), ହଲେଇ ହଲେଇ ନେଲ ପ୍ରାଣ । [ବ୍ୟଙ୍ଗ]

୮୮ । ମାଙ୍କଡ଼ ବେକରେ ପୋହଲା ମାଳ (ଳା) ବିଲେଇ ବେକରେ କଣ୍ଠି ; କୁକୁର କରୁଛି ଜାଉଁଳ ପାଳି (ଠାକୁର ପୂଜା), ବଜେଇ ବଜେଇ ଘଣ୍ଟି । [ଅସମ୍ଭବ କଥା, ଢ଼ଗ]

୮୯ । ମାକ(ଙ୍କ)ଡ଼ ମାଇଲେ ହୁଏ ଧୋକଡ଼ । [ବ୍ୟଙ୍ଗ; ବଙ୍ଗଳା ପ୍ରବଚନର ଅନୁବାଦ । ମାଙ୍କଡ଼ ମାଇଲେ ମହାପାପ ବୋଲି ବ୍ୟବସ୍ଥା ଦେଇଥିବା ପଣ୍ଡିତ ବ୍ୟବସ୍ଥା ଦେଇ ସାରିବା ପରେ ଆପଣା ପୁଅ ମାଙ୍କଡ଼ ବଧ କରିଥିବାର ଶୁଣି ପୂର୍ବ ପ୍ରଦତ୍ତ ବ୍ୟବସ୍ଥାକୁ ବଦଳାଇ ଏ କଥା କହିଲେ] ।

୯୦ । ମାଗଣାକୁ ମହରଗ, ରୁଚ୍ଛାକୁ ରଗରଗ । [ଢଗ]

୯୧ । ମାଗିଖିଆଙ୍କର ଗୃହର ଦେଖ, ପେଜ ପିଆ ଠେଇଁ ବ ଜୁଚ୍ଛି (ବାଜଇ) ଶଙ୍ଖ ! [ବ୍ୟଙ୍ଗ]

୯୨ । ମାଗି ଓଲଟ, ଯାଚ କଲ୍ୟାଣ । [ବ୍ୟଙ୍ଗ]

୯୩ । ମାଣ୍ଡିଆ କାଉକୁ ଖୁଦୁପିତା, ରାନ୍ଧୁଣୀ ହୋଇଛୁ ଜଗଜିତା, ହେଲେହେଁ ହଉଛୁ କାନ ମଲକଢ଼ୀ ଦେଖେଇ ହଉଛୁ ବାହ୍ବାଚତା । [ବ୍ୟଙ୍ଗ]

୯୪ । ମାଗିଖାଏ, ଯାଙ୍ଗରେ କୁକୁର ପୁଞ୍ଜାଏ ଥାଏ । [ବ୍ୟଙ୍ଗ]

୯୫ । ମାଗୁର (କଇ, କଉ) ମାଛର (ମାଛେର ଝୋଲ୍, ଦଏ ! ହର ହରି ବୋଲ ବଲ୍ । [ବଙ୍ଗଳା ଅନୁକରଣ ବ୍ୟଙ୍ଗ]

୯୬ । ମାଇଲ କଉ ( ମାଇ ) ମାଛକୁ ସବୁ କଉ ( ମାଇ ) ମାଛ ଆଶର (ବର୍ଗ୍ଗର) କଲେ ଅଣ୍ଡିରି ତାଲଗଛକୁ । [ଢ଼ଗ]

୯୭ । ମାଗିଖାଇର ଗୃତର (ଗରବ) ଦେଖ । [ଗାଳି]

୯୮ । ମାଙ୍ଗ ଉ (ଓ)ପରେ ମହଣ ପାଢଆ (ସୁନ୍ଦା) । [ବ୍ୟଙ୍ଗ]

୯୯ । ମାଛ ମଲ ଧଉଶରେ, ସତେ କ କାଳିଆ ମୋ ଧନ ନବ, ମୁଣ୍ଡବନ୍ଧା ଚଉଁରୀରେ । [ଅନୁଚଳ୍ପା]

୧୦୦ । ମାନ୍ (ଭୁଟ୍, ଅରେ) ହାପଟିଆ ମେଣ୍ଢା ! କଦଳୀ ଗଛର ପୁରୁଷ (ଅଣ୍ଡିରା) ନାହିଁ, କେମନ୍ତେ ପକାଏ (କାଢ଼ିଲ) ଭଣ୍ଡା । [ଢ଼ଗ]

୧୦୧ । ମାଛ ଆମ୍ବିଳ, କୁଣିଆ ଅଇଲେ କବାଟ କଲ । [ବ୍ୟଙ୍ଗ]

୧୦୨ । ମାଛ ଭିତରେ ଇଲିଶି ରାଣୀ, ମଜା ମାରନଏ ବେଦର ପାଣି । [ମାଛଗୀତ]

୧୦୩ । ମାଛ ତଅଣ—ମାଗି ଅଇଲେ (ପଡ଼ଶା ମାଗିଲେ) ଦେବ କଅଣ ? [ବ୍ୟଙ୍ଗ]

୧୦୪ । ମାଛଙ୍କ ଯାକରେ ଭାକୁଡ଼ ରଜା, ଆଉ ସବୁ ମାଛ ତା ପରଜା । [ମାଛ ଗୀତ]

୧୦୫ । ମାଛ ବେହର, କୁଣିଆ ପଡ଼ିଲେ କବାଟ କଲ । [ବ୍ୟଙ୍ଗ]

୧୦୬ । ମାଛ ମାରଗଲା ମୀନ, ଝିଅଟି ସୁନ୍ଦର ଜୋଇଁଟି ହୀନ, କଆଡ (କେମନ୍ତେ) ହାରବ ଧନ ? [ଢ଼ଗ]

୧୦୭ । ମାଛ ଆଢ଼େଇବ (ବ) [ହୁରୁଡ଼େଇବ(ବ)] କ ଯାଉ ଖାଇବ(ବ) ? [ଅନୁଚଳ୍ପା]

୧୦୮ । ମାଛକୁ ଶିକୁଳ ବାଆକୁ ଫାନ୍ଦ । [ଢ଼ଗ]

୧୦୯ । ମାଠିଆ ମୁହଁରେ ଚମ; ଘରେ ଉପାସ, ବାହାରେ (ଉପରେ) ଢମ ବାଜୁଥାଏ ଢମ ଢମ ! [ଢ଼ଗ]

୧୧୦ । ମଟି ବସି କଏ ଝାଟିରେ ଗୁଡିଲା, ଝଡ଼ ପଡ଼ୁଅଛୁ ଝଣ୍ଟେ; କାନ୍ତଙ୍କ କଥାରେ କରଛୁ ମାନ, ରହ ପାରୁବୁ କ ଦଣ୍ଡେ ? [ଢଗ]

୧୧୧ । ମାଠିଆ ଗଡ଼େଇ ଦେଲ; ଗଜା ମୁଗ ହାଗେ ପିରତି କଲ, ପନ୍ତେଇ ବନ୍ଧା ଦେଲ (ଜୀବନ ହରେଇ ଦେଲ) । [ଢ଼ଗ]

୧୧୨ । ମାଠିଆ ମୁହଁ ଡଲକୁ; ପିଲ କର ମାଆ (ବୋଉ) ପଠାଇ ଦେଲ ହେ, ଘର ଭାତ ମୁଠାକ ବେଲକୁ । ମୋ ପ୍ରଭୁ ସେ । [ଶାଶୁଘରକୁ ଯାଇଥିବା ପିଲା କନ୍ୟାର ଅନୁଚଳ୍ପା]

୧୧୩ । ମାଣ୍ଡିଆ ଯାଉର ସର; ବୁଢ଼ା ବୁଢ଼ୀଙ୍କର ଦୁଢଅ ଘର, ପୁଅ ଯାଉ ଅକା (ମାମୁଁ) ଘର । [ବ୍ୟଙ୍ଗ]

୧୧୪ । ମାଧ ମାହାନ୍ତିଙ୍କ ଝିଅ ସଙ୍ଗେ ଚନ୍ଦ୍ରଗ୍ର ନାମି ବାଇ; ସେ ସୁନା ଘଡ଼ ନେଇ ଯାଉଥେଲେ, ଏ ମାଟି ଘଡ଼ ଘେନ ଯାଇ । [ବ୍ୟଙ୍ଗ]

୧୧୫ । ମାଠିଆ (ଅଣକ) ମୁହଁରେ (ତଦବତ ଭିତରେ) ଘିଅ ପରଷଇ, ତଳେ ଯାଉଥାଏ ଗଡ଼ି ( ଥାଳ ଫନ୍ଦ ଯାଏ ବୁଡ଼ି ); ପର ଘର ପାନ ସୁଆଦ ଏଣିକ ( ଲଗିଲ ), ହୋଇ ମୁଁ ଯିବାକୁ ଛୁଟୀ । [ବ୍ୟଙ୍ଗ]

୧୧୬ । ମାଧିଆ ମାଆ ଲୋ ମାଧିଆ ମାଆ ! ଆଜ୍ଞ ମଙ୍ଗନ କାଲି ବାହା, କୁଲ ତାଭି ଭାଉ ବଜଉଥା । [ବ୍ୟଙ୍ଗ]

୧୧୭ । ମା ପୁଣି କରଣିକ (ରେ) ଗଲ ହବୁ, ଆଇନ୍ଦା (ଆଗତ ) କୁ ମୂଳ ପଏଠ ଦବୁ । [ ଧାନ ମହାଜନ ସମ୍ବନ୍ଧେ ବ୍ୟଙ୍ଗ]

୧୧୮ । ମାଧିଆ ଭାଇ, ସବୁ କଥାକୁ ହୋଇ ହୋଇ । [ଢ଼ଙ୍ଗ]

୧୧୯ । ମାଆ ପେଟର ଜଣେ ନାହିଁ, ଗାଆଁ ଯାକ ବୋଲେ ଭାଇ ଭାଇ । [ବ୍ୟଙ୍ଗ]

୧୨୦ । ମାଆ ବସୁଧା ! ତୁ ଫାଟି ଯା, ମୁଁ ତୋ ଭିତରେ ପଶିଯାଏଁ । [ସୀତାଙ୍କ ଉକ୍ତିକୁ ଲକ୍ଷ୍ୟ କର ଅତି ବ୍ୟସ୍ତ ଓ ଲଜ୍ଜିତ ବ୍ୟକ୍ତିର ଚନ୍ତା]

୧୨୧ । ମାମଲ—ମାଆ ମଲ । [ବ୍ୟଙ୍ଗ; ମାମଲ ମକଦ୍ଦମାର ବ୍ୟସ୍ତ ଓ ବପର୍ଦ୍ଦକୁ ଲକ୍ଷ୍ୟ କର ଏ ଅନୁପ୍ରାସଯୁକ୍ତ ବାକ୍ୟ ବୋଲଯାଏ]

୧୨୨ । ମାମୁଁ ତ ମାମୁଁ, ବାଘ ମାମୁଁ ! ମାମୁଁ ତ ମାମୁଁ ଜହ୍ନ ମାମୁଁ ! [ବ୍ୟଙ୍ଗ]

୧୨୩ । ମାମୁଁ ପତରରେ ମାଇଁ ବସିଛୁ (ବଇଚ),
ଭଣଜା ଦାଆ ଘିନ ଧାଇଁଚ । [ବ୍ୟଙ୍ଗ]

୧୨୪ । ମାମୁଁ ପତର ମାଇଁ ନଉଚ (ନେଉଛି)
ଭଣଜା ବାଡ଼ି ବାଡ଼ି ଡେଇଁଛୁ । [ବ୍ୟଙ୍ଗ]

୧୨୫ । ମାମୁଁ ମାଇ ଘରେ ଦ ପଣ । , ମାଇଁ ମାରଇ ନଢ (ଦରୁ) କହୁଣୀ ମାମୁଁ ଖାଉଥାଏ ଅଢ କହୁଣୀ) । [ବ୍ୟଙ୍ଗ]

୧୨୬ । ମାର ତାଳ ଉଠା ଥାଳ । [ବ୍ୟଙ୍ଗ]

୧୨୭ । ମାମୁଁ ଘରେ ଆଇ ପଥର ଝଣ୍ଟିକ (ଢଖଣ୍ଡ) ଶଣ୍ଟାଏ, କରୁଛୁ [ବ୍ୟଙ୍ଗ; କଛୁ କାମ ନ କର ବନ୍ଧୁ ଘରେ ଅନ୍ନ ଧ୍ୱଂସ କରୁଛୁ ।]

୧୨୮ । ମାର ନାଁ ମୁଁ ମଲଣି; ଆପଣା ହାତରେ ଜଭକୁ କାଟି, ବାଁ ହାତେ ମୁଁ ଧଇଲଣି । [ବ୍ୟଙ୍ଗ]

୧୨୮ । ମାଲି ଝିଲି (ଝିଲ୍ଲି ମୁଣ୍ଡି) ଧରି କାହାକୁ କପୁଛୁ, କାଟିଛୁ ଅଙ୍ଗରେ ଚିତା; ବୟସ ଦିନରେ ନ କଲୁ ଚିନ୍ତା, ବୁଢ଼ାଦିନେ ହେଲୁ (ଏବକୁ ପଶିଲୁ) ଚେତା । [ବ୍ୟଙ୍ଗ]

୧୨୯ । ମାଛ ବୋଲି ଦଣ୍ଡକରି (ଚାଲି ଖାଇଗଲୁ ଚୋଷ୍ଟି); ମତେ ନ ବାସୁରି (ପଗୃନ୍ତା) କାଲୁ ଭାରିଯା; ମୋ ଠଉଁ କେଡ଼େ ସୁନ୍ଦରୀ ? [ବ୍ୟଙ୍ଗ]

୧୩୦ । ମାଛ ମୁଁ କାଟିଲି ଖଣ୍ଡି ଖଣ୍ଡି କା, ମଟି ଖଣ୍ଡି କଲି ଭଜା: ଦ୍ର ମନେ କଣ୍ଠ ବାଟପା ନାସ୍ତି ( ହରୁଆ ହଜ), ପରବାସ କରି ନ ଯା । [ପ୍ରବାସୀ ସ୍ୱାମୀ ସମ୍ବନ୍ଧେ ଢ଼ଗ]

୧୩୧ । ମାଇଲି; ଘୀ ( ଘିଅ ) ହରି ହରି କାକର ପିଠା, ଭିଡ଼ା ତଳେ ବସି ଖାଇଲି । [ବ୍ୟଙ୍ଗ]

୧୩୨ । ମାଇଲି ମାଙ୍କଡ଼ଚାଢ, କେତେବେଳେ ମନ୍ଥୁଣେସିଆ ଲୋ, ବେଦରେ ପାଞ୍ଚଲି ଘିଢ । [ବାଳ୍ୟବିବାହ ସମ୍ବନ୍ଧେ ବ୍ୟଙ୍ଗ]

୧୩୩ । ମାର୍ ମାର୍ ନଗୋଡେଇଁଆ (ନପାରିଲାରେ) କୁ ମାର୍ । [ବ୍ୟଙ୍ଗ]

୧୩୪ । ମାର୍ ମାର୍, ଭଣ୍ଡାରିଆକୁ ମ ର୍ । [ବ୍ୟଙ୍ଗ]

୧୩୫ । ମାଣ୍ଡିଆ ଦେହକୁ ଥାଳି ପଟେ, ଘ ଆ ଭେ କାଳିଆ ( ଆଖିବୁ ରେ ଧନ ) ବାର ବାଟେ । [ଢ଼ଗ]

୧୩୬ । ମା ମାରେ ! ପାଠପଢ଼ା ବଡ଼ ଦୁଃଖ; ହାତ ଗୋଡ଼ ଦୁଇ ଲାଗଇ ରେ. ପଙ୍କାନ୍ତ ବଡ଼ ସୁଖ । [ଢଗ ବା ଶିଶୁ ବଚନ]

୧୩୭ । ମାଉଗଲେ ମହାପାପେ, ସ୍ତ୍ରୀ ଥିଲେ (ଥେଲେ) ଜଳକା । [ଢ଼ଗ]

୧୩୮ । ମାରି ମାରି ଗଲା କାଳିକ, ଆଉ ବାକି ଅଛି ( ବାକି ରହିଗଲା ) ବେଳାକ ( ଫାଳକ ) । [ଢଗ]

୧୩୯ । ମାର୍ ମାର୍ ଠେଙ୍ଗା, ବାନ୍ଧ୍ ବାନ୍ଧ୍ ଦଉଡ଼ି, ହଗି ପକେଇବ କଉଡ଼ି । [ବ୍ୟଙ୍ଗ]

୧୪୦ । ମାରୁ ମାରୁ ଯେତେ ଦିନ ଯିବ । [ଦୁର୍ବଳ ଲୋକର ଭାବନା]

୧୪୧ । ମାରୁ ମାରୁ ଗୋବରା, ନାହିଁ ତ ନାହିଁ ଜୋବରା । [ବ୍ୟଙ୍ଗ]

୧୪୨ । ମାଲି ମାଇପକୁ ପୁରୁଣା ପଣ୍ଡା ଗଇତା । [ବ୍ୟଙ୍ଗ]

୧୪୩ । ମାଲି ଠକ ଠକ କରୁଛି; ଦାଅଙ୍କ ଉପରେ ନାଠ ପାଣିଚାଳା (ଲାଗି), ଦାହାରେ, ହଳଦୀ ସିନ୍ଦୁର କରୁଛି । [ବ୍ୟଙ୍ଗ]

୧୪୪ । ମାଳି ଠକ୍ ଠକ୍ ଭଜନ, ଝାଣ୍ଡ, ଭୋଜ କଲେ (କାଲି) ଭାତ (ଥାଳି) ପାଣ୍ଡକୁ ଆଣ । [ମାଳା ଜପିବା ଲୋକକୁ ପରିହାସ ବଚନ]

୧୪୫ । ମାଲି ମାମଲା (ମକଦ୍ଦମା) ଲାଗିଛି. ମାଲି ବୁଢ଼ା ଲାଗିଛି । [ବ୍ୟଙ୍ଗ; ମକଦ୍ଦମାରେ ଅଜସ୍ର ଅର୍ଥବ୍ୟୟ ସମ୍ବନ୍ଧେ]

୧୪୬ । ମାଘ ଗଡ଼ୁଛି, ଖଡ଼ି ମାଟି ଖାଇ ମନ କରୁଛି । [ବ୍ୟଙ୍ଗ ଦୋହଦ]

୧୪୭ ମାସକରେ ଥରେ ଓଳାଏ ଘର, ବରଷକେ ଥରେ ଲିପେ ଦୁଆର । [ବ୍ୟଙ୍ଗ; ହାସ୍ୟତରଙ୍ଗ]

୧୪୮ । ମାଲୁଣୀ ହାତରେ ପଡ଼ିଛି କେଶ, ଯେମନ୍ତେ ଇଚ୍ଛା ସେ କରୁଛି (କରୁଚି) ବେଶ । [ବ୍ୟଙ୍ଗ]

୧୪୯ । ମହାନ୍ତ ଘରର ଡମ, ହାଣ୍ଡି ଯାକ କୋଟି କମ । [ଢଗ]

୧୫୦ । ମହାନ୍ତଙ୍କ ଘର ଡମ ଦେଖା, ହାଣ୍ଡି ଯାକ ଚଦ ହେଉଛି ଲେଖା । [ଢଗ]

୧୫୧ । ମାହାନ୍ତ ବେଭର ଚୁଲେ ଦାଣ୍ଡରେ, ଅଙ୍ଗାଏ ହାଣ୍ଡି କି ଉଖୁଡ଼ା ସେରେ । [ଢଗ]

୧୫୨ । ମାହାନ୍ତ ଘରର ଡମ; ହାଣ୍ଡିରେ ପଶିଛି କୁଚା ବ.ସୁଙ୍ଗା, ଉପରେ ଦିଶଇ କମ । [କରଣମାନଙ୍କର ବନ୍ଧୁ ଘରକୁ ଭାର ଯିବା ଚଳିତ ଓ ଶୂନ୍ୟଗର୍ଭ ଉଖୁଡ଼ା ମୁହାଁ ହାଣ୍ଡି ସମ୍ବନ୍ଧେ ବ୍ୟଙ୍ଗ]

୧୫୩ । ମାହାନ୍ତିଆଣୀଙ୍କ ମୁଣ୍ଡରେ ଖୋସା, ତିନି ପରଶୀଙ୍କି ପେଣ୍ଡିଏ କଂସା (ଚୁଲାରେ କଳଣି ବାନ୍ଧା ବସା । [ବ୍ୟଙ୍ଗ]

୧୫୪ । ମାଆଟେଲେ ମଲି, ବାପଲେ ମଲି, କାମୁଟକୋଳି ଖାଇ ଗଛୁଁ ପଡ଼ିଲି (ପେଟରେ- ହେଲି), ଝିଟିକୋଳି ଖାଇ ଭଲ ହୋଇଲି (ପୋଖତ ହେଲି); ସପନେଶ୍ୱର ! ଉଧାର କର, ଆଉ ନ ଯିବି ମୁଁ ଶଶୁର ଘର (ଭୁବନେଶ୍ୱର) । [ଢଗ]

୧୫୫ । ମହାଦେବଙ୍କ ମୁଣ୍ଡରେ ଲକ୍ଷେ ଚମ୍ପା (ଗଙ୍ଗାଧର) ଚଢ଼ା (ଚଢ଼ି) ଇବ (ପଣେ ପାଣି ଢଳେଇବ) । [କାର୍ଯ୍ୟ ସିଦ୍ଧି ନିମନ୍ତେ ମହାଦେବଙ୍କୁ ଯାଚିବା ମାନସିକ]

୧୫୬ । ମହାଳିଆକୁ (ମାଗଣାକୁ) ମହରଗ ? [ବ୍ୟଙ୍ଗ; ଦତ୍ତ ବସ୍ତୁ ମୂଲ୍ୟର ହେଲେ ମଧ୍ୟ ତାହା ମହାର୍ଘ ନୁହେ]

୧୫୭ । ମନ୍ଳିଆଠା ! ମାହାଳିଆ ଭାର କୁଦ୍ୱାଳିଆଠା । [ଢଗ]

୧୫୮ । ମାହାଳିଆକୁ ମଳୁଦଦେବ । [ବ୍ୟଙ୍ଗ; ରାଜ୍ୟରହିତ ଅଥଚ ରାଜସିଦ୍ଧିଯୁକ୍ତ ରାଜା]

୧୫୯ । ମିଆଁଙ୍କ ଦାଢ଼ୀ, ପେର କାନଯାଏ ଗଲଣି ବଢ଼ି, (ପିକା ଖାଉ ଖାଉ ଗଲଣି ପୋଡ଼ି) । [ଢଗ; ମୁସଲମାନଙ୍କ ଲମ୍ବଦାଢ଼ି ପ୍ରତି ବ୍ୟଙ୍ଗ]

୧୬୦ । ମାହାଳିଆକୁ ଡାକରା ପଡ଼ିଛି କାହାଳିଆକୁ । [ବ୍ୟଙ୍ଗ; ବାହ୍ୟାଡ଼ମ୍ବର]

୧୬୧ । ମିଆଁ ସାହେବ (ହୁ, ହା) ବ, ଖୋଲ୍‌ଟା କଥାରେ ଉଠିଲ ଭାବ । [ହିନ୍ଦୁମାନଙ୍କର ଦୁର୍ବୋଧ୍ୟ ମୁସଲମାନଙ୍କ କଥିତ ଭାଷା ପ୍ରତି ବ୍ୟଙ୍ଗ]

୧୬୨ । ମାହାଳିଆ ମଠ, ସେଜ ନାହିଁ ପିଣ୍ଡ । [ବ୍ୟଙ୍ଗ]

୧୬୩ । ମିଆଁ ପଢ଼ିଲେ ପାଠ, ତିନି ଦ୍ୱିଗୁଣେ ଆଠ ! (ଅର୍ଜ୍ଜୁନଙ୍କ ମୁଣ୍ଡକାଟ, ଅର୍ଜ୍ଜୁନଙ୍କଠେଇଁ ଗୁଡ଼ ଆର୍ଜ୍ଜୁନ ଖାଇଲେ ଗୁଡ଼) । [ବ୍ୟଙ୍ଗ]

୧୬୪ । ମିଛ କଥାରେ କେତେ ରୁଷ୍ଟ, ବାଡ଼ି ଦୁଆରେ ପଦାଡ଼ରେ ଯାଇ ବସୁ, ଡାକଲେ କୁରୁ କୁରୁ ହୋଇ ହସୁ । [ବ୍ୟଙ୍ଗ]

୧୬୫ । ମିଛକୁ ମିଛ, ବରଡ଼ି ଗିଳୁଛୁ (ଗିଳୁଛୁ) କଦଳୀ ଗଛ । [ଅସମ୍ଭବ ମିଛ କଥା; [ବ୍ୟଙ୍ଗ]

୧୬୬ । ମିଠୁ ମିଆଁ, ନିଦରପଦର (କଷ୍ଟ ନ ମାରି) ଧାଇଁଛୁ କଆଁ ? [ମିଠୁ ମିଆଁ ନାମକ ମୁସଲମାନକୁ ପରିହାସ]

୧୬୭ । ମିଠେଇ ! ଧାଇଁ ଅଇଲ (ଆଣିଛୁ ହାତରେ) ମୁଠେଇ । [ବ୍ୟଙ୍ଗ]

୧୬୮ । ମିଠେଇ ! ଜଣେ ଖାଉଛୁ (ଖାଏ) ଜଣେ ଚାହିଁଛୁ (ଥାଏ), କେତେ ପଗୁରୁଛୁ ନଠେଇ । [ବ୍ୟଙ୍ଗ]

୧୬୯ । ମିଶାଇ କ୍ଷୀରରେ ନିରକୁ ବସାନ୍ତେ, ଉପୁରି ପଡ଼ିଲା ଚୂନା; ଖାଇ ଶଳା ବୋଲି ଜାଣି ନ ଥିଲା, ପଣତ ପଟେଇ ଦେଲା (ଗୋଡ଼ ମୁଦ ବନ୍ଧା ଦେଲା) । [ଢଗ]

୧୭୦ । ମିଠା ! ଏତେବେଳକୁ ସୁଆଦ ଲାଗୁଛୁ, (ଖରା ସୁଆଦିଆ) ପଛେ ଲାଗିବ ଝଠା (ବଟା) । [ବ୍ୟଙ୍ଗ]

୧୭୧ । ମୀନ ମାଛକୁ ଚୁଣ୍ଡି ପୋଡ଼ା, ପଖାଳ ଭାତକୁ ଖାର ଖଡ଼ା । [ବ୍ୟଙ୍ଗ]

୧୭୨ । ମୁଁ ଆସ ଖାଇ ! ବସିଛୁ ମୁହିଁକୁ ପୋଛୁ (ଶୁଙ୍ଘେଇ) ଦେଇ । [ଗାଳି]

୧୭୩ । ମୁକୁନ୍ଦଆର, ସାକ୍ଷୀକି କଲେଣି ଅକନ୍ଦଆର । [ବ୍ୟଙ୍ଗ; ମୁକ୍ତାର ସ୍ୱପକ୍ଷ ସାକ୍ଷୀଙ୍କୁ ଅର୍ଥ ପ୍ରଲୋଭନ ଦ୍ୱାରା ଆପଣା ପକ୍ଷର ବଶକୁ ଆଣିବା]

୧୭୪ । ମୁଁ ଖାଉଥାଏଁ ମୋହର ଭାତ, ତୋହର କିଆଁ ଗାଲରେ ହାତ ? [ଈର୍ଷାମୁକ୍ତ ବ୍ୟକ୍ତିପ୍ରତି ବ୍ୟଙ୍ଗ]

୧୭୫ । ମୁଠିଶାଗଶାଗ ଶାଗ ହାଟରେ ଘେଣୀ, ମତେ ତୋଳି ନଏ ବୁଢ଼ୀ ତା (ରୁ) ଝିଅଣୀ । [ଶାଗ ଗୀତ]

୧୭୬ । ମୁଁ କଅଣ ରଣ୍ଡୀ ଝିଅଣ୍ଟି ହୋଇଛୁ ? [ଧମକାଣି]

୧୭୭ । ମୁଁ କାନ୍ଦୁଥାଏଁ ନାନୀ (ଗୋସେଇଁ, ମାଈ, ମାମୁଁ) ପାଇଁ, ନାନୀ (ଗୋସେଇଁ; ମାଈ, ମାମୁଁ) ଆଖିରେ ଟୋପାଏ (ଲୁହ) ନାହିଁ । [ବ୍ୟଙ୍ଗ]

୧୭୮ । ମୁଁ ମରୁଥାଏଁ ତୋହୋର (ଗୋସେଇଁ, ନାନୀ) ପାଇଁ, ତୋହୋର (ଗୋସେଇଁର ନାନୀର) ଟିକିଏ ଦୟା ନାହିଁ । [ବ୍ୟଙ୍ଗ]

୧୭୯ । ମୁଁ ବୁଲୁଥାଏ ବାହାର ଘରେ, ମୋ ଦାନାପାଣି କାହାର ଘରେ । [ଢଗ]

୧୮୦ । ମୁକୁନ୍ଦଆର, ଯାହାର ଖାଇଲା (ପାଇଲା) ମୁହିଁ ତାହାର । [ଢଗ]

୧୮୧ । ମୁକୁନ୍ଦଆର, ଗାଳି (ମିଠା) ବୁଲୁଥାଏ ଘରକୁ ଘର । [ଓକିଲ ମୁକ୍ତାରଙ୍କ ପ୍ରତି ବ୍ୟଙ୍ଗ]

୧୮୨ । ମୁଗୁ (ଗ) ପଇଡ଼, ଟିକଏ ମାଗିଲେ (କହିଏ) ଦେ (ଦ) ବୁ ନାହିଁଟି । [ଡଗ]

୧୮୩ । ମୁଁ ଗୁହାର କରବ ଯାହାକୁ, ସେ କୋଉଁ (ଘଇତା) କରଛୁ (ବରଛୁ) ତାହାକୁ ।
[ବ୍ୟଙ୍ଗ]

୧୮୪ । ମୁଁ ପଳେଇ ପଶିବ ଯାହାର ଘରେ, ସେ ଯାଇ ଉଖ ତା'ଦୁଆରେ । [ବ୍ୟଙ୍ଗ]

୧୮୫ । ମୁଗୁନି ପଥର ଟନ ଟନ କେନା, ଡହିରେ ମାଇଲୁ ଘିଅ; ସଦାବନେ (ଯୁବାକାଳେ) କାନ୍ତ ପରବାସିଆ, କେତେ ଧରଥେବି ଦହ (କେମନ୍ତେ ବଞ୍ଚିବ କହ) । [ବିରହିଣୀର ଅନୁଚିନ୍ତା]

୧୮୬ । ମୁଁ ତ (ମୁଁ) ସ୍ବୈର (ସ୍ବୈରଣୀ, ଡାହାଣୀ), ମୋ ଘରେ ପଶିଲା (ପଶିଛ) କେଉଁ (କୋଉ) ସ୍ବୈର (ସ୍ବୈରଣୀ, ଡାହାଣୀ) ! [ବ୍ୟଙ୍ଗ]

୧୮୭ । ମୁଁ ତ ନୁହେଁ, ମୁଁ କାହିଁ ପା (ପେ) ଇଁ ବନକୁ ନଏଁ (ମୁହଁ ହଲଏଁ, ନାକ ଫୁଲଏଁ) ? [ବ୍ୟଙ୍ଗ]

୧୮୮ । ମୁଁ କହୁଥାଏଁ ତୋହର ଭଲ, ରୁ ବୁଝୁଥାଉ ସେ କଥା ସଲ । [ବ୍ୟଙ୍ଗ]

୧୮୯ । ମୁଣ୍ଡୁ ହୁଁ ( ମୁଣ୍ଡୁ ) ନ ଥାଏ, ମୁଣି ଝାଡ଼ୁଥାଏ । [ବ୍ୟଙ୍ଗ]

୧୯୦ । ମୁଣ୍ଡରେ ହଗିବେ ପୁଅ, ତାଙ୍କ ମୁଣ୍ଡ (ପଣତ) ଦେଖେଇ ଦଅ ।
[ଗେହ୍ଲା ପୁଅଙ୍କ ପ୍ରତି ବ୍ୟଙ୍ଗ]

୧୯୧ । ମୁଣ୍ଡ ରଖି (ହି) ଲେ ତୁଣ୍ଡ କହିବ (ଫିଟିବ) । [ଭୃତ୍ୟର ପ୍ରଭୁ ନିକଟରେ ଗୁରୁତର ଅଭିଯୋଗ ପୂର୍ବରୁ ନିବେଦନ]

୧୯୨ । ମୁଁ କହୁଥାଏଁ କାହାର କଥା, କାଣୀ କହୁଥାଏ ବଅର କଥା । [ବ୍ୟଙ୍ଗ]

୧୯୩ । ମୁଣ୍ଡି ପୁଞ୍ଜି (ପୁଜା) ରକତରେ ବୁଡ଼େ (ବୁଡ଼ିଛୁ), ଟଣ୍ଡି କପୁର ଚନ୍ଦନ (ବାହ ଚନ୍ଦନ) ଲେଡ଼େ (ଲେଡ଼ିଛୁ) । [ବ୍ୟଙ୍ଗ]

୧୯୪ । ମୁଣ୍ଡରେ କଆଫୁଲ (ଲ) ଟାଏ, ଗାଣ୍ଡିରେ କାଦୁଅ ମେଞ୍ଚାଏ । [ବ୍ୟଙ୍ଗ]

୧୯୫ । ମୁଣ୍ଡ ମୁକୁଳା ବେକରେ ଫୁଲ୍, ଗୃଲ ଯାଉ ଥାଏ ଦୁଲ୍ ଦୁଲ୍ । [ବ୍ୟଙ୍ଗ]

୧୯୬ । ମୁଣ୍ଡର ବାଳକୁ ପାଟର ଝୁମ୍ପା, କେଶ କେଶ କର ଗୁନ୍ଥ ଲେ ବୋପା । [ବ୍ୟଙ୍ଗ]

୧୯୭ । ମୁଣ୍ଡରେ ଜଟ, କହୁଣି ଖାଏ (ମାରଇ) ରଟ ରଟ (ବୃହି ଦଉଥାଏ ରଟ ମଟ), କୁଆ ହଗିଦଏ ଲଟ ପଟ । [ବ୍ୟଙ୍ଗ

୧୯୮ । ମୁଁ କଅଣ ତୋ ବାଡ଼ି ତଳେ ଘର କରିଛୁ କି ? (ତୋ)ବାପଙ୍କର ଟହେ ଛାଡିଏ ଧାରେ କି ? ତୋ ବୋପାର ଗୃକର ? ତୋ ବୋପାର ଖାଏ ? [ଧମକାଣ, ଅର୍ଥାତ୍ ମୁଁ ତୁମର ଅଧୀନ ବ୍ୟକ୍ତି ନୁହେଁ]

୧୯୯ । ମୁଗ ଚୁନା ( ଛେନା ଖୁର୍ଚ୍ଚି ) କଲି ଲଡୁ; ଖାଗ ବେଳେରେ ମୋ ପଡ଼ନ୍ତୁ ହାଗୁଡ଼େ, ଗୁଡ଼ରେ (ମୁଣ୍ଡରେ) ଖଙ୍ଗନ୍ତୁ ଖଡୁ । [ଢଗ]

୨୦୦ । ମୁଁ ତୋ ବୋପା, ଆରେ କୁରୁପା, ମୋପେଇଁ ଖଣ୍ଡେ ଖଡର ପକା; ଡର ଗଲାଣି ଚର, କମିତ (କାହିଁରେ) ଖାଇବୁ ଖୀର ? [ଢଗ]

୨୦୧ । ମୁଁ ତ ଲୋ ମା ! ସାନଘର ଝିଅ, ତୁମ ପୁଅ ବଡ଼ଘର; କାହିଁପାଇଁ ହନ୍ତସନ୍ତ କରଉଛ ? ଦେଇଦିଅ କାନ୍ଥବାଡ଼ । [ବ୍ୟଙ୍ଗ]

୨୦୨ । ମୁଁ ତୁମର ( ତୁମ ବାପାଙ୍କର ) କଛ ଗହେ ଷାଠିଏ ( ପଣେ କାହାଣେ, ମାଣେ ଗଉଣିଏ, ଟୋପିଏ ମୁଦ୍ଧଏ ) ଧାରେ ନାହିଁ (ଖାଏ ନାହିଁ) । [ଧମକାଣ]

୨୦୩ । ମୁଁ ନାଙ୍ଗ ରକ୍ସୁଣୀ ଲୁହେଁ, ଟିକଏ ମାଗିଲେ ମେଞ୍ଚାଏ (ମେଞ୍ଚିଏ) ଦିଏଁ । [ବ୍ୟଙ୍ଗ]

୨୦୪ । ମୁଁ ନାଙ୍ଗ କରିବଇଁ କସ ? ମୋ ଘରୁ (ମୋହୋରି ଘରୁ) ଉପୁଜିଲ ବସ । [ଅନୁଚକ୍ରା]

୨୦୫ । ମୁଁ କେଣିକି ଯାଉଚ ପଳା(ଲେ)ଇ, ମତେ ଦଇବ ନଉଛୁ କଢ଼ା(ଢ଼େ)ଇ (ଅଡ଼ାଇ, ଅଡ଼େଇ) । [ଅନୁଚକ୍ରା]

୨୦୬ । ମୁଁ ମେଘେ (ମେଘ ଉଷ୍ମ) ଟଙ୍କା ଫେରଚ କରିବ । [ଗରିବ ଲୋକର ପ୍ରତିବେଶୀକୁ ଧମକାଣ]

୨୦୭ । ମୁଗ (ବିରି, କୋଳଥ) ବୋଟ, କାଲି ଦିହରେ ହଳଦୀ ବୋଳିଲେ କଉଡ଼ି ଷଡ଼ ! [ବ୍ୟଙ୍ଗ]

୨୦୮ ମୁଁ ଯେବେ ହୋଇବ ଦାଣ୍ଡରେ ଠିଆ, ଦବୁଠାରେ ପଢ଼ିବ ପଡ଼(ର) ଚୁଆ । [ଅନୁଚକ୍ରା]

୨୦୯ । ମୁଁ ନ ହେବ ଦାଣ୍ଡେଠିଆ, ମୋ କାଖରେ ପାଣି ମାଠି ମାଠିଆ [ବ୍ୟଙ୍ଗ]

୨୧୦ । ମୁମାବର, ଖର୍ଚ୍ଚି ଦଉଥାଏ (ଖର୍ଚ୍ଚି ବୁଲୁଥାଏ) ଘରଘର । [ବ୍ୟଙ୍ଗ]

୨୧୧ । ମୁରୁ(ଡ଼ୁ)କି ହସେ, ରଙ୍ଗ ଟହ ଟହ (ଚହ ଚହ) ପାଙ୍ଗରେ ବସେ (ଦେଖିଲେ ରଘେ) । [ବ୍ୟଙ୍ଗ]

୨୧୨ । ମୁରୁ(ଡ଼ୁ)କି ହସା, ବାଙ୍କ ଗୃହାଣିକ ଦକ୍ଷିଣୀ ଖୋସା । [ବ୍ୟଙ୍ଗ]

୨୧୩ । ମୁଷା ଚୁର୍କିଲା, ବଡ଼ଡି ଦୋଇଲା, ତୁ ଚରନ୍ଦକ ହୋ ! ନାଁ, ଗୋଟେଇ ତୁ (ତୁମେ) ରଖିଲେ ଯିନା । [ଢଗ]

୨୧୪ । ମୁହଁରେ ହସ, ପେଟରେ ରଖିଛୁ (ଭରିଛୁ) ଗରଳ ବିଷ, ଅଣ୍ଟାରେ ରଖିଛୁ କାତି; ତାଠେଇଁ କରିବ କୋଉଁ ବିଶ୍ୱାସ, ପୁରୁଷ ଭ୍ରମର ଜାତି । [ବ୍ୟଙ୍ଗ]

୨୧୫ । ମୁହଁରେ ବୁକ (ବୋକ) ଯୋଡ଼ା ଯୋଡ଼ା, ତାଟି କଳ (ଲା) ମାଡ଼ ଥୋଡ଼ା ଥୋଡ଼ା । [ସ୍ତ୍ରୀର ସ୍ୱାମୀ ପ୍ରତି ବ୍ୟଙ୍ଗ; ଆଦରରେ ସୀମା ନାହିଁ, ଘରଭିତରେ ମାଡ଼ ଦେବାର ବନ୍ଧ ନାହିଁ]

୨୧୬ । ମୁଁ ହଉଥାଏଁ ମାଇଁ ପାଇଁ, ମାଇଁର ଟିକିଏ (ମୋଠେଇଁ) ଦୟା (ଲୋଭ) ନାହିଁ । [ବ୍ୟଙ୍ଗ]

୧୧୭ । ମୁହଁ କରଥାଏ ବମି, ଆଇଁଷ ପାଣିରୁ ଟୋପା (ଟି) ଏ ପାଇଲେ ଖାଉ ଦଉଥାଏ ଗେମି । [ମାଛରଙ୍କୁଣୀ ବ୍ୟକ୍ତିପ୍ରତି ବ୍ୟଙ୍ଗ]

୨୧୮ । ମୁହିଁ ମରୁଥାଏଁ ତୋହୋର (ଗୋସେଇଁ) ପାଇଁ, ତୋହୋର ଟିକିଏ ଦୟା ନାହିଁ । [ବ୍ୟଙ୍ଗ]

୨୧୯ । (ସେ) ମୃଦଙ୍ଗ ଦାଁପିଠିରେ ହାତ ମାରୁଛୁ । [ବ୍ୟଙ୍ଗ; ଯେଉଁ ଲୋକ ଉଭୟ ସ୍ୱପକ୍ଷ ଦଳଙ୍କ ସାଙ୍ଗେ ଭିତରେ ଭିତରେ ମିଶିଥାଏ]

୨୨୦ । ମୁହଁକୁ ନ ମାଡ଼େ ଲଜ; ଝାଡ଼ ଗଦା ପରେ ତୁଳୀର ଶେଯ (ହଂସୁଲ୍ ଶେଯ), ପୁରୁବ ଓଳକ ହେଜ । [ଢଗ]

୨୨୧ । ମେଘ ଆସୁଥାଇ (ଘୋଟିଲିଣି) କଳା ଭ୍ରମ (ମ୍ବ) ର (ଭ୍ରମର, ଘୁମ୍ବର) ଲେ, ବାଆ କଲେ ବରଷିବ; ଅଦନେ ମୋ ବାପା (ନନା) ଘରେବାହିଆ ଲେ, କଏ ଖନ୍ଧ ପରଶିବ ? [ଅଦନେ ବଦେଶ ଯାଇଥିବା ପିତାଙ୍କ ସମ୍ବନ୍ଧେ କନ୍ୟାର ଅନୁଚନ୍ତା]

୨୨୨ । ମେଘ କଲ ମଳା ମଳା; ଛୁଡ଼ ଯାଇଛୁ ମୋ ତାଳପୋହଳା (ପୋହଳା ମାଳ), ଗୁନ୍ଥି ଦେବ ଭଇ ଶଳା । [ଢଗ]

୨୨୩ । ମେଘ ଝଟକିଲ, ବଜୁଲି ମାଇଲ ଦାଣ୍ଡ, ଧୂଳି ନେଲ ଉଡ଼ା (ଡ଼େ) ଇ; ଏହି ବାଟେ ଗଲୁ କଥା ନ କହିଲୁ, ସାଙ୍ଗେ ସାଙ୍ଗେ ଗଲ ଗୋଡ଼ା (ଡ଼େ) ଇ । [ଢଗ]

୨୨୪ । ମେଘ ଘୋଡ଼େଇଲ ଜହ୍ନ; ଚନ୍ଦ୍ରଗ୍ରେର ଏବେ ରହିଲେ କାହିଁ; କେମନ୍ତେ ସରବ (ସାରବ) ଦନ । [ଅନୁଚନ୍ତା]

୨୨୫ । ମେଘ ବରଷିଲ (ବରଷଇ) ଟପର ଟପର (ଟୁପୁରୁ ଟୁପୁରୁ) କାଙ୍କଡ଼ ଧଇଲ କଷି; ମାଙ୍କଡ଼ ଯାଉଚ (ଯାଉଛି) ଯାତରୁ ଦେଖି ରଙ୍ଗ ପାଲିଙ୍କିରେ ବସି । [ଢଗ]

୨୨୬ । ମେଦୁଆ ପାଗକୁ ଷଣ୍ଢ ଖେଡ଼୍ଡ଼, ମଣ୍ଡ ପତରରେ ଦେ ଅଜାଡ଼ । [ବ୍ୟଙ୍ଗ]

୨୨୭ । ମେଣ୍ଢା ପୁଅ (ପୁଅ ହୋଇ) ନବାଳ (ନର୍ବାଳୁଅ) ! [ବ୍ୟଙ୍ଗ; ବିଦ୍ୱାନ ଲୋକର ମୂର୍ଖ ପୁତ୍ର ପ୍ରତି]

୨୨୮ । ମେଣ୍ଢାଏ ନଇଲେ କେଣ୍ଢାଏ ।
[ବ୍ୟଙ୍ଗ; ପୂର୍ଣ୍ଣ ଭୋଜନ ମିଳୁ ନଚେତ୍ ଉପବାସରେ ବନ୍ଧୁ]

୨୨୯ । ମେଣ୍ଢା ଧୋଉ ଧୋଉ ନିର୍ବାଳ । [ବ୍ୟଙ୍ଗ]

୨୩୦ । ମେଣ୍ଢି ବନ୍ଦାଲ, ମୋ ଘରେ ଲଗିଛି ନାଡ଼ କଙ୍କାଳ (ଗହଳ, କନ୍ଦଳ) । [ଢଗ]

୨୩୧ । ମେଘ ଗରଜଇ ଜଲ ବରଷଇ (ବିଜୁଳି ମାରଇ), ଝୋପି ପାଣି ପଡ଼େ ତଳେ; ଘରର ଘରଣୀ (ଘରଗେରସ୍ତାଣି) ରୁଷି ବସିଅଛୁ, ପଡ଼ ଯାଉଁ ଗୋଡ଼ତଳେ ।
[ଢଗ]

୨୩୨ । ମେଲେଇ ଦେଲି, ମହଣ ଛଡ଼, ଗୁଳି ହେବ ବୋଲି; ମଧୁର କଥାରେ ଭୁଲି (ଭଲି) ତ ଗଲି, ଦରମଗ୍ ହୋଇଗଲି । [ଢଗ]

୨୩୩ । ମେଲା ମଉଛ ! ଯେତେ ଆଣିଥବ, ପଛକୁ ରୁଚ୍ଛା । [ଢଗ]

୨୩୪ । ମେଲଆଣ୍ଟାଏ ! ମେଲଆ ପଛକୁ (ସାଙ୍ଗରେ) ପାଲଆଣ୍ଟାଏ । [ଢଗ]

୨୩୫ । ମୋ କଥା ମତେ ଷୋଲ ବିଶ୍ୱା ହେଲଣି । ମୋ ଦଶା ଶତ୍ରୁକୁ ନ ହେଉ (ଘଟୁ); ମୋ ଦଶା (ଅବସ୍ଥା) ଶ୍ୱେର ଚଣ୍ଡାଲ ଠଉଁ ବଳେ; ମୋ କଥା ଧସ୍ତାଧର
[ଦୁର୍ଦ୍ଦଶାଗ୍ରସ୍ତ ବା ବିପନ୍ନ ବା ନିଗ୍ରହୀତ ବ୍ୟକ୍ତିର ଉକ୍ତି]

୨୩୬ । ମୋ ପେଜ ପାଣି କାହାଘରେ; ମୁଁ ଧାଉଁ (ଧାଇଁ, ଯାଉଁ) ଥାଏଁ ବାହା (ବେହା) ଘରେ । [ବ୍ୟଙ୍ଗ]

୨୩୭ । ମୋ ବଡ଼ଲୋକ ମୋଠେଇଁ, ତୁ କାହାଁ ହଉଛୁ ଧଇଁସଇଁ । [ବ୍ୟଙ୍ଗ]

୨୩୮ । ମୋ ଗରବ ପଣିଆ ମୋଠେଇଁ (ମୋ ଘରେ), ତୋ ବଡ଼ଲୋକ ତୋଠେଇଁ (ତୋ ଘରେ) । [ଧମକାଣି]

୨୩୯ । ମୋ କଥା ମତେ ବଡ଼, ତୁ କାହାଁ ଲଡ଼୍‌ବଡ଼୍ (ନଡ଼ବଡ଼, ଧଡ଼୍‌ପଡ଼୍, ଧଡ଼ଫଡ଼, ବଡ୍‌ ବଡ୍‌, ଭଡ଼୍‌ ଭଡ଼୍‌) । [ବ୍ୟଙ୍ଗ]

୨୪୦ । ମୋ ଘରେ ପର ନ ପଶେ, ମୋ ବସୁଦେବ (ବସୁଦଅ) ପଡ଼ରେ (ଖ୍ରାଇପଡରେ, ଶିଉଧ ପଡରେ) ମୋ ମାଇପ ବଢ଼େ । [ବ୍ୟଙ୍ଗ]

୨୪୧ । ମୋ ଜୀବନ ଯାଉନାହିଁ, କପାଳରେ (କରମରେ) ଏହା ଲେଖିଛୁ ବିଧି ।
[ଦୁର୍ଦ୍ଦଶାଗ୍ରସ୍ତ ବ୍ୟକ୍ତିର ଉକ୍ତି]

୨୪୨ । ମୋ ପୁଅଟି ବଡ଼ ଦୁଷ୍ଟ, କହୁଣୀ ମାରଇ ରୁଟ୍‌ରୁଟ୍‌, ଦୁର୍ ପେଲା ଦୁର୍ ପଳା ।
[ଢଗ]

୨୪୩ । ମୋ ମୁଣ୍ଡରେ ଏଡ଼େ (ଫୁଲ) ଗଭା ! ମୋ ପେଇଁ (ଧାଇଁ) ଏକା ଗାଁ ଶୋଭା ।
[ଗର୍ବୀ ପ୍ରତି ବ୍ୟଙ୍ଗ]

୨୪୪ । ମୋହୋର ନାହିଁ, ତୋହୋର ଶୁଣି ଅଇଲି ଧାଇଁ । [ବ୍ୟଙ୍ଗ]

୨୪୫ । ମୋ ଗୁଣଟି; ମୋ ମୁଣ୍ଡ ଖାଉ, ମୋ ଧନଟି । [ଗୁଣ ପକାଇବା ବଚନ]

୨୪୬ । ମୋ ଗୁଣଟି; ମୋଠେଇ ସିନାହ ରଖିଥିବୁଟି । [ବ୍ୟଙ୍ଗ]

୨୪୭ । ମୋ ଗୁଣଟି; ମୋ ଆଖି ଗୁଣଟି; ଭିଙ୍କିଟି ଗିଲ ! [ବ୍ୟଙ୍ଗ]

୨୪୮ । ମୋ ଗୁଣ, ନାଁ, ମୋ ବାପ ଅଜା ସାତ ପୁରୁଷଙ୍କ ଗୁଣ (ମୋ ଗୋସେଇଁଙ୍କ ଗୁଣ) [ବ୍ୟଙ୍ଗ]

୨୪୯ । ମୋ ଗୁଣ ନାଁ, ଭିଙ୍କିଟା (ଟି) ଗିଲ । [ବ୍ୟଙ୍ଗ]

୨୫୦ । ମୋ ଅଗିଲ ଲାଗିଥାଉ, ତୋ ଲଗଲା ଛୁଡ଼ (ଣ୍ଡି) ଯଉ । [ବ୍ୟଙ୍ଗ]

୨୫୧ । ମୋହୋ ଲାଗି ଏତେ ଯଣ, ତୁ ହେଲୁ ହତଶିରୀ । [ବ୍ୟଙ୍ଗ]

୨୫୨ । ମୋ ଲାଗି ବର ଘଟିଲେ ନାହିଁ, ଦରବୁଢ଼ୀ ହେଲି ବାଡ଼ୁଅ ହୋ (ହେ) ଉଁ, (ବାଳ ପାଚଲାଣି) ବାଡ଼ୁଅ (ଅଭିଅଡ଼ୁ) ହୋ (ହେ) ଇ । [ବ୍ୟଙ୍ଗ]

୨୫୩ । ମୈନା (ମଇନା) ବାବା ବସିଥା, ଯାହା ମିଳାଲା (ମିଳୁଛି) ତାହା ଖା । [ବ୍ୟଙ୍ଗ]

୨୫୪ । ମୈନା (ମଇନା) ବଣ କାନ୍ଦୁ (ସକଉ) ଥା, ଯାହା ପାଉଛୁ ବାନ୍ଧୁ (ପକଉ) ଥା । [ବ୍ୟଙ୍ଗ]

୨୫୫ । ମୈନ (ମଇନ) ମୁହାଁ (ମୁହାଁ)ର ଅପାର ଗୁଣ, ସୁଝି ନ ପାରିବେ ତୋହୋର ଋଣ । [ବ୍ୟଙ୍ଗ]

୨୫୬ । ମୋହିଲ ମୁଁ (ମୁହିଁ ଇଲ) ସଜ (ବାସୀ) ଦହି; ହାତ ବାଜୁବନ୍ଧ (ମଇନ ମାଳକୁ, ମଉଡ଼ମାଳକୁ) ଗୁଡୁଡ଼ଇବ ବୋଲି. ପାଟରାଣୀ ହଙ୍ଗେ ଯହି । [ଢଗ]

୨୫୭ । ମୋହର ପରକା ଜର୍ଣେ; ଭାଙ୍ଗିବ କଟୁରୀ, ଗଢ଼ିବ ଦାଅ, ପୋଇଲା ରଟିବ (ଆଣିବ) ପଟେ । [ବ୍ୟଙ୍ଗ]



## ଯ

୧ । ଯଉତୁକ ଦେଲା ଖଟ, ଖଟ ହେଲା କଟ କଟ; ରସିଆ (ରସୁଆ) ଖଟକୁ ପାଲଦଉଡ଼ା (ଡ଼ି) ଗୁଡ଼ିଗଲା ପଟ ପଟ । [ବ୍ୟଙ୍ଗ, ହାସ୍ୟତରଙ୍ଗ]

୨ । ଜଗି ବସିଥେଲା (ଥିଲା) ଜଗିଆ, ଯେ (ଯି) ନ ପଳା (ଲେ) ଇଲା ଭଗିଆ । [ବ୍ୟଙ୍ଗ]

୩ । ଯଉତୁକ ଦେଲ ଗାଈ, ଗାଈ ବେଇଥିଲ ମାଈ; ବଳରାମ ଦାସ ଗୀତରେ ଭଣିଲେ ନସି ତାର ଫିଟୁ ନାହିଁ । [ବ୍ୟଙ୍ଗ, ହାସ୍ୟ ତରଙ୍ଗ]

୪ । ଯତନ କରି ବାନ୍ଧିଛୁ ଜୁଡ଼ା, ଜୁଡ଼ା ଗୁରପାଖେ ପାନ୍ଧୁଡ଼ା ବେଢ଼ା, ଖୋସିଛୁ ତହିଁରେ ଚମ୍ପା ପାଖୁଡ଼ା । [ବ୍ୟଙ୍ଗ]

୫ । ଯଥାକୁ ତଥା, ବାସୀ ପଖାଳକୁ ମୂଳା ସାଇତା । [ଢ଼ଗ]

୬ । ଯବଧାନ; ଆଗ ଭାରଯାକୁ ଗ୍ଭଡ଼ପଡର (ଚଡ଼ଗୁପଡ଼) ପଛ ଭାର୍ଯ୍ୟାକୁ ଅବଧାନ । [ବ୍ୟଙ୍ଗ]

୭ । ଯମ (ଜହ୍ନି) ପଶବା, ଯମ ରହିଥିଲେ ଘର କଶବା । [ଢଗ]

୮ । ଯମ ପଛକେ ଦବୁ ନବ, ଭାଇ ଭଗାରଙ୍କ ଗୋଟିଏ ନ ଦବ । [ଢ଼ଗ]

୯ । ଯମକୁ ପଛକେ ଦାନ୍ତ ପୁଅ ଦବ, ଭଗାରଙ୍କ ଗୋଟିଏ ନ ଦବ । [ଢଗ]

୧୦ । ଯଜାଙ୍କ ଭାର୍ଜିଲ, ଦାନ୍ତ କାଠି କଲ. କଏ କେତେ ମନ ମୋହିଲ; ନତ୍ତଗ୍ର ସାଙ୍ଗରେ ପୀରତି କଲ, ଛୁଣ୍ଡେଇ ବଚନ କହିଲ । [ଢ଼ଗ]

୧୧ । ଯମର ଭଉଣୀ ଯମୁନା, ଜମାରୁ (ତାଟେଇଁ) ନ ଥାଏ କରୁଣା । [ଢ଼ଗ]

୧୨ । ଜହ୍ନି କି କର ସାଇତା, ତା ସଙ୍ଗେ ମାରିବ କଙ୍ଗରୁ ପିତା, ଜନମ ହେବ ବୃଥା । [ଢ଼ଗ]

୧୩ । ଯହିଁକି ଗଲ, ନାଆଁ ପକେଇଲ । [ଗାଳି]

୧୪ । ଯହିଁଜ ଯେ ! ବରକି ଗ୍ଭଉଳ ଡକେଇ ଦେ (ଗୋଦର ଗୋଡ଼କୁ ଝଲତା ଦେ) [ବ୍ୟଙ୍ଗ]

୧୫ । ଜହ୍ନି ଓଉ (ଚତ ମୂଳ) କଲ ସାଇ; ନରଖି ନରଖି ଅନଉ କେତେ, ଅଣିନାହିଁ; ତୋହେ ପାଇଁ (ଝିଉର ମରିବାକୁ ଡୁହ) । [ବ୍ୟଙ୍ଗ]

୧୬ । ଯହିଁ ଜାଲୁଆ ପାଉଥାଏ, ଛିଏ ଛିଏ ବାହୁଥାଏ । [ଢ଼ଗ]

୧୭ । ଯାଆଁ ବାଳ ପଡ଼ୁନାହିଁ, କଅଁଳା ପିଲା ମୋ ଗେଲବସର, ମା ଦୁଧ (କୋଡ଼) ଗ୍ଭଡ଼ୁନାହିଁ । [ବ୍ୟଙ୍ଗ]

୧୮ । ଯହିଁରେ ଏତେ ଗୁଣ, ତହିଁରେ ଦହି ଗଣ୍ଡାକର କଏ । [ବ୍ୟଙ୍ଗ]

୧୯ । ଯାଆଁଳା ପୁଅ (ହିଁଅ) ଗୋଟିକ ଥୋଇ (ରଖି) ଗୋଟିକ (ଆରଟି) ନଅ । [ଢଗ]

୨୦ । ଯାଇଥେଲ ମଞ୍ଚ, ଦେଖି ଅଇଲ ପରପଞ୍ଚ ! ହାତ ଦଇଟା ଲଡ଼ ଲଡ଼, ଗୋଡ଼ ଦଇଟା ଲଡ଼ ଲଡ଼ । [କଥା ସ୍ୱର୍ଗକୁ ଯାଇ ସେଠାରେ ଯମ ଆଗରେ ମନୁଷ୍ୟ ମାନଙ୍କର ରୂପ ବର୍ଣ୍ଣନା କରିବା]

୨୧ । ଯାଇଥି (ଥେ) ଲି ଝାଡ଼ିକଣା, ଏକାଗଛ (ଡାଳ) କେ ଦେଖି ଅଇଲି କପା କଦଳୀ ବଡ଼ଚଣା । [ନାଁ ଦଥା, ଶିମିଳି ଗଛର ଭଣ୍ଡା]

୨୨ । ଯାଇଥି (ଥେ) ଲି ଉତ୍ତର, ଦେଖି ଅଇଲି ଫଳ ଓ (ଉ) ପରେ ଧରିଛୁ ପତର । [ନାଁ ଦଥା ହପୁଚି]

୨୩ । ଯାଇବାଇ ରଗଡ଼ା ଦନ, ସାଇ ପଡ଼ୁଶୀ ଦଣ୍ଡକି ଆଣ । [ଢ଼ଗ]

୨୪ । ଯାଉଥି (ଥୋ) ଲି ପଡ଼ିଆରେ; ଲକ୍ଷେ ଟଙ୍କା (ସୁନା) ଦେଲେ ଯାହାକୁ ନ ପାଆନ୍ତି, ତାକୁ ମୁଁ ପାଇଲି ଗ (ଗା) ଡ଼ିଆରେ । [ଢ଼ଗ]

୨୫ । ଯାଉ ଯାଙ୍ଗରେ ଲୁଣ, ଟାଣ କରି ଘରେ ଶୋଇ ରହିଥିଲି, କିଏ ଉଠେଇଲା ପୁଣି ? [ଗୃହିଣୀର ଅଭିମାନ]

୨୬ । ଯାଉ ଖାଇବ, ନାଁ, ମାଛ ଅଡ଼େଇବ ? [ଢଗ]

୨୭ । ଯାଉ ନ ଥି (ଥୋ) ଲିକୁ ପେଜ; କେହୁ ନ ଥିଲାକୁ ତୋ ହାତ ଧରିଲି (ଧରିଛି) ମତେ ମାଡ଼ୁ ନାହିଁ (ମୋ ମୁହଁକୁ ନାହିଁ) ଲାଜ । [ବ୍ୟଙ୍ଗ]

୨୮ । ଯାଉ ଶାୟୁକ, ରହୁ ନାୟକ । [ଢ଼ଗ]

୨୯ । ଜାଲ ନାହିଁ ଜାଳିବାକୁ; ଚୁଲିମୁଣ୍ଡ ଠେଇଁ ଯକେଇ କାନ୍ଦେ ଉନେ ଘର କରିବାକୁ । [ଢ଼ଗ]

୩୦ । ଯାକୁ ମିଳିବ ମନାର ସୁବାସ (ହରିଷ ବେଲନ), ପାଣି ଅଇଁଠାରେ କାଁପା ତା ଆଣ, (ହାତ୍ତ ଅଇଁଠାକୁ କାଁପା ତା ମନ) । [ଢ଼ଗ]

୩୧ । ଯାଗୁଟଲେଇ ମା (ମାଆ ଯାଗୁଟଲେଇ, ମାଆ ମଙ୍ଗଳା) ଅଇଲେ ଦାଣ୍ଡେ, ଫୁଲ ଦୂବ କରି ଧଇଲେ ଗଣ୍ଡେ । [କାକଟପୁରର ମଙ୍ଗଳା ଠାକୁରାଣୀଙ୍କ ସେବକମାନେ ଗ୍ରାମରେ ବୁଲଇ ଭିକ୍ଷା କରିବା ସମ୍ବନ୍ଧେ ଢଗ]

୩୨ । ଯାଗର ଧାପ ମୁଁ ଜାଳି ଗଟିଲି, ରନ୍ଧିଲି ପିତଳ ରୁଖା; ଜାଗର ଯାତକୁ ସତେକି ସିଝି, ଫୁଙ୍କ ଯାଙ୍ଗ ହେବ ଦେଖା । [ଢଗ]

୩୩ । ଯାଗୁଟଲେଇ ମା ! ଟଙ୍କାକ ଇଣ୍ଟୁରି (ପିଠାପଣାଭିକ, ତୋଳିକ ଗୁଡ଼ୁଲା, ହାଣ୍ଡିକ ଟେବୁନ) ଦେ ପାଗୁଟଲେଇ ।

୩୪ । ଯାଗୁଟଲେଇ ମା, ପାଗୁଟଲେଇ ! ହବୁ ଦଅଙ୍କର ମାଆ; ବରି ଚକୁଳି ଖାଇବୁ ହେବେ ମୋ ଦୁଆରକୁ ଆ । [ଯାଗୁଟଲେଇ ପଞ୍ଚମୀ ଗୀତ]

୩୫ । ଯା ଫୁଟିକି (ଆ ଫୁଟିକି), ଅ ଫୁଟିକି (ଯା ଫୁଟିକି), ବାଦୁଡ଼ି ଖାଇଲା ଚପ; ଢିଙ୍କି (ଧିଙ୍କି) ଗୁରୁ ହୋଇ ପଣ୍ଡିତ (ନ୍ତ) ପାରିଲୁ, ପୁରୁଷର କେଉଁ ଦୋଷ ? [ଢଗ]

୩୬ । ଯାଚିଲେ ନ ଖାଆନ୍ତି ସର ଲବଣୀ, ମାଗି ଖାଉଥାଆନ୍ତି ଅଇଁଠା ପାଣି (ବାସି-ତୋରାଣୀ) ! [ବ୍ୟଙ୍ଗ]

୩୭ । ଯାଚିଲେ ନ ଖାଆନ୍ତି ଦୁଧ (ଧି) ଗଇଁଶା, ମାଗି ବୁଲୁଥାନ୍ତି ପର ଅଇଁଠା ! (ପରଘରେ ଯାଇ ପତର ଚଟା ) । [ବ୍ୟଙ୍ଗ]

୩୮ । ଯାଚିଲେ ନ ରୁଚେ ଖଣ୍ଡ ଶାକର, ଖୁଣ୍ଟି ବୁଲୁଥାନ୍ତି ପର ପତର । [ବ୍ୟଙ୍ଗ]

୩୯ । ଯାଚ ମାନ, କାନ୍ଦ ସୁଆଗ । [ବ୍ୟଙ୍ଗ]

୪୦ । ଜାଲ କାଠ ବଡ଼ ବଡ଼; ଘାଟରେ କଉଡ଼ି ନ ଦେଲେ ରୁନ୍ଧ (ସୁନ୍ଦରୀ) ବନ୍ଧା ଦାଅ ଫୁଲ ଯୋଡ଼ (ମଲ୍ଲିକଳି) । [ଢଗ]

୪୧ । ଯାନ ଗଲା, ମାନ ଗଲା, ପଛକୁ ଡାହାଣ (ମୋର) କାନ ଗଲା । [ବ୍ୟଙ୍ଗ]

୪୨ । ଯାହାପାଇଁ କଲି ଚୋରି, ସେ କହୁଛି ଚୋର ।

୪୩ । ଯାହାର ଲାଗି ଚୋରି କଲି, ସେ ଡାକୁଛି ଚୋର ବୋଲି ।
[ବଙ୍ଗଳା—ଯା'ର ଜନ୍ୟ କରି ଚୁରି ସେ ବଲେ ଚୋର; ବ୍ୟଙ୍ଗ]

୪୪ । ଯାହାକୁ କଥା (କଳା)ରେ ନ ପାରିବ, ତାକୁ ମହାପ୍ରସାଦ ( ମହାପ୍ରସାଦ ) ଦେଇ ଚଡ଼ା କାଟିବ । [ଢଗ]

୪୫ । ଯାହାକୁ ବଳରେ ହାରି, ତାକୁ କଳରେ ମାରି । [ଢ଼ଗ]

୪୬ । ଯାହା ନ ଖାଇଲେ ( ବେ ) ଝିଅ, ତାହା(ତାକୁ ) ଜୋଇଁଙ୍କ ପତରେ ଦିଅ । [ବ୍ୟଙ୍ଗ]

୪୭ । ଯାହା ପରସାଦେ କପୂର ଭୁଞ୍ଜୁ, ତାକୁ କାହିଁ ପାଇଁ ଗଞ୍ଜୁ ? [ଢ଼ଗ]

୪୮ । ଯାହା ପାଞ୍ଚିଥିଲି ମନରେ; ଓଷା, ପଡ଼ିଲା ପଦର ଦିନରେ । [ଢଗ]

୪୯ । ଯାହା କଲି (ଲୁ) ! ଗାଲ ଚିପି ଚିପି (ତୋଡ଼ି ଦେଇ) ଘାଆ କଲି (ଲୁ) । [ବ୍ୟଙ୍ଗ]

୫୦ । ଯାହାକୁ କହିଲି ମୋର ମୋର, ସେ ହେଲା ପୁଣି ସାତପର । [ଅନୁଚନ୍ତା] .

୫୧ । ଯାହାକୁ କଲି ଆପଣାର, ସେ ପୁଣି ହେଲା ସାତପର । [ଢ଼ଗ]

୫୨ । ଯାହା ମନ ଯାଇ ଯାହିଁ (କାହା ମନ ଯାଇ କାହିଁ); ଗୋଷ୍ଠୀ ମନ ଯାଇ ଗୁଡ଼ିଆଠେଇଁ, ମିଠେଇ ଖାଇବା ପାଇଁ । [ବ୍ୟଙ୍ଗ]

୫୩ । ଯାହାର ପାପ, ତାହାର ପୁଣି ଶାପ ।
[ଯେ ପାପ କରୁଛି ସେ ଓଲଟି ଶାପ ଦଉଛି, ବ୍ୟଙ୍ଗ]

୫୪ । ଯାହା ଜୀଅନ୍ତେ ନାହିଁ ସୁଖ, ସେ ମଲେ କିଆଁ ଦାରୁଣ ଦୁଃଖ (କରୁଛ ଦୁଃଖ, ହଉ ବିମୁଖ) ? [ବ୍ୟଙ୍ଗ]

୫୫ । ଯାହା ଘରେ ବସେ ନାହାକ, ତା ଘରେ ମାଛଆ ପାତକ । [ବ୍ୟଙ୍ଗ]

୫୬ । ଯାହା ଘରେ ପଡ଼େ ଖଡ଼ି, ତା ଘରେ ପଶେ ଚନ୍ଦ୍ରବାଡ଼ି । [ବ୍ୟଙ୍ଗ]

୫୭ । ଯାହାର ବନ୍ଧୁ (ବେହା, ଭାଆ, ବାହା) ତାର ମନେ ନାହିଁ, ଯାଇ ପଡ଼ଶାଙ୍କୁ ନିଦ ନାହିଁ । [ବ୍ୟଙ୍ଗ]

୫୮ । ଯାହା ଲାଗି ଅର୍ଜିଲି ମୁହିଁ (ମହୀ), ସେ ପଡ଼ିଲା (ଗଲା) ରଣଭୂଇଁ [ବାହୁନା]

୫୯ । ଯାହା ଲାଗି ଏତେ ସଜ (ହାତଗିରସ୍ତ), ତାହାଲାଗି ବନବାହାସ୍ତ । [ବ୍ୟଙ୍ଗ]

୬୦ । ଯାହା ଲାଗି ପୋଡ଼ିଲି ମଥା, ତାହା ଲାଗି ଏଡ଼େ (ଏତେ) କଥା [ବ୍ୟଙ୍ଗ]

୬୧ । ଯାହା ହେବ ପଛେ ହେଉ; ଭୁଲିଗଲା ମନ, ଢଳିଗଲା ବନ, ଲେଉଟି ଆସେକି ଆଉ ? [ଢଗ]

୬୨ । ସ୍ବାଦେହ୍ବତ, ବୋଡ଼କର ଶାଗ ସିଝୁ (ସେ) ନାହିଁଟି (ତ) । [ଅକାମିକା ଲୋକପ୍ରତି ତାଚ୍ଛଲ୍ୟ ବଚନ]

୬୩ । ସ୍ବା କ ଦାନ୍ତ ସହେ ? [ବିରକ୍ତ ବଚନ]

୬୪ । ସ୍ବା କ ଆଖିରେ ଯାଏ ? [ବିରକ୍ତ ବଚନ]

୬୫ । ଯିମିତି (ଯେମନ୍ତ) ଦିଅଁଙ୍କୁ କମିତି (ତେମନ୍ତ) ପୂଜା, ବାଲି ଗରଡ଼ାକୁ ଘୁଉଳି ଭଜା । [ଢଗ]

୬୬ । ଯୁଆ ଆମ୍ବୁଲି ଖଣ୍ଡେ, ବାସୀ ପଖାଳ କୁଣ୍ଡେ । [ବ୍ୟଙ୍ଗ; ବାସୀପଖାଳ ସାଙ୍ଗକୁ କିଛି ଭଜା ଭଜି ବା ତିଅଣ ନ ପାଇ ଖଣ୍ଡେ ଯୁଆ ଆମ୍ବୁଲି ଖାଇବା ସମ୍ବନ୍ଧେ]

୬୭ । ଯୁଗର ଗତି ଏ, ରେ ବାବା (ପା) ଯୁଗର ଗତି ଏ !

୬୮ । ଯୁଗ (କାଳ) ଆସି ଲଟ (ନଟ, ନଟା)ରେ ପଶିଲାଣି । [ମରହଟିଆ ବୁଢ଼ା-ମାନଙ୍କର ଆଧୁନିକ ଶିକ୍ଷିତ ଟୋକାମାନଙ୍କ ପ୍ରତି ବିରକ୍ତ ବଚନ]

୬୯ । ଯେଉଁଠି (ଯୋଉଠି) ଗ୍ବେର, ସେଇଠି ସିଦ୍ଧ ।

୭୦ । ଯେଉଁ (ଯୋଉ) ଫୁଲ ଲାଗି (ପେଇଁ, ପାଇଁ) ମୋ ଘରେ (ଲାଗିଛି) କଳି, ସେହି ଫୁଲ ବିକ (ପୁଣି) ଆଣିଛି ମାଳି । [ଢଗ]

୭୧ । ଯେଉଁ (ଯୋଉ) ଦେଶ (ସ୍ଥଳ)ରେ ବୃକ୍ଷମଣା (ନଶାପ) ନାହିଁ, ଅନ୍ଧ ନାଏ ବାଇଠା ଲଗାଇ । [ଢଗ]

୭୨ । ଯେଝା ଜଥା ଯେ ବୁଝିବ (ସମ୍ଭାଳିବ), ଆମର କ ଯାଏ ?

୭୩ । ଯା ପଛକୁ, ଆ ପଛକୁ, ବିଛଣା ପାଟଲି (ପାଉଲ) ଫୁଲ ଗଛକୁ; ଫୁଲ ଗଛଟି ମଲା; କାଳିଆ ସାଙ୍ଗରେ ପୀରତି କରି, ଝୁରି, ଝୁରି ଦିନ ଗଲା । [ଢଗ]

୭୪ । ଯେଝା ଘର ଯେ କରୁ, ଆମର କଅଁ ମୁଣ୍ଡରେ ଟଳୁ ? [ଢଗ]

୭୫ । ଯେଝା ଘରକୁ ଯେ ଯାଉ; ଦନ୍ତୁଆ ଉଦା ବୁଲି ଖାଉ; (ବୁଲୁ ଥାଉ, ଖାଉ ଥାଉ) (ବଇଷମ ଗୋସେଇଁ ବସି ଥାଉ) । [ବ୍ୟଙ୍ଗ]

୭୬ । ଯେଝା ଘର ସେ କରୁ, ଅଭଡ଼ା (ଅଘର, ଅନ୍ଧଅଡ଼ା ବୁଲି ବୁଲି ମରୁ ) । [ଢଗ]

୭୭ । ଯେଣିକି ଗଲେ ତୋହୋର ଅପବାଦ, ସ୍ବର୍ଗ ଦିବସ ମତେ ନ ମାଡ଼େ ନିଦ । [ଅନୁଚନ୍ତା]

୭୮ । ଯେଣେ ଇଚ୍ଛା ତେଣେ ଯା, ମୋର ହୋଇ ପଡ଼ିଥା । [ବ୍ୟଙ୍ଗ]

୭୯ । ଯେଣେ ଇଚ୍ଛା ତେଣେ ଯା, କର୍ମ ଯେନ ବୁଲୁଥା । [ବ୍ୟଙ୍ଗ]

୮୦ । ଯେ (ଯିଏ, ସେହି) ତ ସେ (ସିଏ), ଆଉ ବାଡ଼ିପଡା ନଣୁଆ କେ (କିଏ)? [ବ୍ୟଙ୍ଗ]

୮୧ । ଯେ ଭବଭ (ଭଭଲ) ଖାଇଛୁ, ସେ ପଖାଳ (ଦୋଓଡ଼ା) ଖାଉ; ଯେ କିଛୁ ନ ଖାଇଛୁ ସେ ଓପାସ (ଉପାସ, ମୁହଁ ମାଡ଼ି) ଶୋଉ (କଣ୍ଟକ ଯାଉ, ବେଠିକ ଯାଉ)। [ବ୍ୟଙ୍ଗ]

୮୨ । ଯେତେକ କାଳ (ଦିନ) ଥି (ଥୋ) ଲ ଯନ୍ତରେ ଢିଅ (ତେଲ), ଶକ୍କଣ ଦିଶୁଥିଲ ସଳମା ଦିହ (ମୁହଁ, ଗାଲ)। [ବ୍ୟଙ୍ଗ]

୮୩ । ଯେ ତାର (ପାଳ) ଥି (ଥୋ)ଲ ସେ ମାଇଲ, ସ୍ବା ପୁଣି ମୋର ଦିହ ସହିଲ [ଅନୁଚିନ୍ତା

୮୪ । ଯେତେ ଖାଇଲେ (ଖାଇ ଖାଇ) ନ ପୂରିଲ ପେଟ, ବିର ଓଳିଆରେ (ମାରୁଛି) ଲାଗୁଛି ହାତ।

୮୫ । ଯେତେ ବୋଲୁଥିବୁ ବୋଲ୍, ମୋ ଦିହଟାଯାକଇ ପୋଲ୍। [ବ୍ୟଙ୍ଗ]

୮୬ । ଯେତେ ମାଠୁଥିବୁ ମାଠ୍, ମୁଁ ସେହି ଦରପୋଡ଼ା କାଠ୍। [ବ୍ୟଙ୍ଗ]

୮୭ । ଯେତେ ବାହୁଥିବୁ ବାହ୍, ମୁଁ ତ ସେହି ଚମଡା କାଠ୍। [ବ୍ୟଙ୍ଗ]

୮୮ । ଯେ ଧରିବ ଅଣ୍ଡା, ସେ ଖାଇବ (ସହିବ) ଡେଣ୍ଡା (କଣ୍ଡା)। [ବ୍ୟଙ୍ଗ]

୮୯ । ଯେ ଭଭଲ ( ଭବଭ ) ଖାଇଛୁ ସେ ଦୋଓଡ଼ା କରୁ; ଯେ ଓପାସ କରିଛୁ ସେ ଭୂଇଁରେ ଗଡୁ। [ବ୍ୟଙ୍ଗ]

୯୦ । ଯେ ପଖାଳ ଖାଇଛୁ ସେ ଭବତ ( ଭଭଲ ) ଖାଉ, ଯେ ଓପାସ ଶୋଇଛୁ ସେ ଶୋଇଥାଉ (ହାଲକୁ ଯାଉ)। [ବ୍ୟଙ୍ଗ]

୯୧ । ଯେବେ ମୋର ଅଛୁ କଳୁରି ଗଛ, କଳୁରି ଥେଲେ ମୋ ଚିଅଣ (ତୁଉଣ) ଅଛୁ। [ଢଗ]

୯୨ । ଯେବେ ପୂରି ଆଏ ତୋଳ (ତୋଳେ) ତେବେ ସୁଆର ବଚନ ବୋଲି (ବୋଲେ); ଯେବେ ନ ପୂରଇ ତୋଳ (ତୋଳେ), ତେବେ ପୋ ଫା କରି (କବର କାବର) ବୋଲ (ବୋଲେ)। [ବ୍ୟଙ୍ଗ]

୯୩ । ଯେବେ ପାରିବୁ ଗରଜ, ତେବେ ପାଇବୁ ମରଜ। [ବ୍ୟଙ୍ଗ]

୯୪ । ଯେବେ ହେବୁ ବୁଢ଼ି ଦାଣ୍ଡରେ ଠିଆ, ସବୁଠାରେ ଦେବେ ପରଚୂଆ (ପଡଚୂଆ, ଉଲୁଛୁଆ)। [ଢଗ]

୯୫ । ଯେ ଯାହାପାଇଁ ଯାହା କରୁଥାଏ, ସେ କ ନାଗସ୍ବ ( ଡେଙ୍ଗୁରି ) ଦେଇ ବୁଲୁଥାଏ ? [ଢଗ]

୯୬ । ଯେ ଯାହା କରିବ କରୁ, ମୁଁ ତ ବାହାରିଲଣି ଘରୁ। [ଧମକାଣ]

୯୭ । ଯେ ଯାହା କହିବ କରୁ, ମୁଁ ତ ବାହାରିଗଲଣି ଘରୁ। [ଅନୁଚିନ୍ତା]

୯୮ । ଯେ ଯାହାକୁ ରସିଲ, ସେ ତାକୁ କଅଁ ଫୁଲ ପରି ବାସିଲ। [ବ୍ୟଙ୍ଗ]

୯୯ । ଯେ ଲୁହାର ବଡ଼ଚଣା ଖାଇଥବ, ସେ ଏ ଘରର ଦାଉ ସହିକରି ରହିବ ।
[ବିରକ୍ତ ବଚନ]

୧୦୦ । ଯେ ସମୁଦ୍ରଠଉଁ ଯାନ, ସେ ଲଙ୍କାରେ ବାଆନ ହାତ । [ଢଗ]

୧୦୧ । ଯେ ରଜା ପଳାଇଯାଏ ନ ପାରି ଯୁଦ୍ଧରେ, ସବୁ ଧର୍ମ ନାଶକରି ପଡ଼ଇ ନର୍କରେ । [ପୁରାଣ ବଚନ]

୧୦୨ । ଯେତକ (ଏତକ) ରେ ଧନ ହେତକ (ଏତକ); ପିଣ୍ଡରେ ପରାଣ ଅବାଯାଏ କେଭେଁ, ନ ଆସିବ ଚୋର କଟକ । [ଢ଼ଗ]

୧୦୩ । ଯେ 'ହ' ଅକ୍ଷର ନ ଜାଣେ, ସେ କହେ ମୁଁ ସଭରେ ଜଣେ (ବ୍ୟବସ୍ଥାପକ) ।
[ବ୍ୟଙ୍ଗ]

୧୦୪ । ଯୋଗି ଘରେ ଚ୍ଛିଙ୍କି ! ନାଁ, ଗୁଡ଼ଲ ଖାଏ ଫୁଙ୍କି (ନଡ଼ ଖାଏ ଫୁଙ୍କି) [ଢଗ]

୧୦୫ । ଯୋଗି ଥାଳ ( ଗୁଡ଼ଲ )ରୁ ଝୁଟୁଆ ଉସୁନା ବାଛୁଚ । [ବ୍ୟଙ୍ଗ]

୧୦୬ । ଯୋଗି ଯୁଗଳ ଚନ୍ଦ୍ରଧର, ମୂଳକ ଖଣ୍ଡିକ ବନ୍ଦୀ କର ।
[ ଏକ ଜମିଦାରଙ୍କ ନିକଟ ଥିବା ଯୋଗି ଯୁଗଳ ଓ ଚନ୍ଦ୍ରଧର ନାମଧାରୀ ୩ଜଣ କର୍ମଚାରୀ ଇଲାକାକୁ ସୁଶାସନ ନ କରିବାରୁ ଅଳ୍ପଦିନେ ଇଲାକା ବନ୍ଦୀ ହୋଇଯିବ ବୋଲି ଆଶଙ୍କାକୁ ଲକ୍ଷ୍ୟ କରି ସେ ସମ୍ବନ୍ଧେ ବ୍ୟଙ୍ଗ ]

୧୦୭ । ଯୋଗି ଯିବା ମଲ୍ଲ ଯୋଗିଆଣୀ ପା(ପେ)ଇଁ, ରଜା ମଲେ କାନ୍ଦିପା(ପେ)ଇଁ; ଅନେଶ୍ୱତ ରାଣୀ ରାଣ୍ଡ କରିଗଲେ ଏକା ଯୋଗିଅଣୀ ପା(ପେ)ଇଁ । [ବ୍ୟଙ୍ଗ]

୧୦୮ । ଜୋଉଁ (ଜୋଉଁ)ଙ୍କ ନାକରେ କଳା, ତାଙ୍କୁ ଗୋଡ଼େଇ ଗୋଡ଼େଇ ଚଳ. ( ମୁଣ୍ଡରେ ପାଳ ମଳା, ରାଇଜ ଗୁଡ଼ ପଳା ) । [ଛିଦ୍ରୋଇଙ୍କୁ ଶଳାର ସଙ୍ଗୀ ପିଲାଙ୍କ ପରିହାସ]

୧୦୯ । ଜୋଉଁ ଭୋଜନ—ଦହିଭ ଭଜା ଯାଙ୍ଗେ ଛଅ ( ନଅ) ଟଅଣ (ତୁଉଣ, ତଉଣ) ।
[ଢଗ]

୧୧୦ । ଯେ୍ତ (ଏ) ପଗ ବଡ଼ ରସିଆଟାଏ, କାନରେ ନାଇଛି ଫାସିଆଟାଏ (କୋଳ ସାଙ୍ଗରେ ଫାସିଆଟାଏ) । [ବ୍ୟଙ୍ଗ]

୧୧୧ । ଯେ୍ତ ପଗ ବଡ଼ ରସିଆଟାଏ, ଅଣ୍ଟାରେ ନାଲି ଝୁଦର; ମା ବିକୁଥାଏ କାଳ ପଡର । (ସାଉଁଟଇ ଆମ୍ବପତର), ଝିଅଜା ବଡ଼ ଚତୁର (ପୁଅର ଦେଖା ଗୁଡର) । [ବ୍ୟଙ୍ଗ]

୧୧୨ । ଯ୍ୟା (ଏକ) ତାଳ ଗଛ ଡ଼େଇଁଲି, ଦେ ( ଦୁଇ ) ତାଳ ଗଛ ଡ଼େଇଁଲି ବେଳକୁ ଗୋବର ଖାତରେ ପଡ଼ିଲି; ଗୋବର ଖାତରେ ଉଇଁଚ କଣ୍ଟା କପରେ ଖପର ( ଖୁପୁରୁ ଖୁପୁରୁ, ଫୁରୁକୁଟି ପରି ) ଡେଇଁଲି । [ଢ଼ଗ]

୧୧୩ । ଏକୁଟିଆ ବାହାର ( ବାର୍‌ହା ) ମୁଣ୍ଡି ସାହାଡ଼ା, ଝରି ହନେ ହଉ (ହଏ) ପତର ଝଡ଼ା, ଆଷାଢ଼ରେ ଧରୁ (ଧରେ) କଷି; ଅକାଳେ ସକାଳେ ଚିକଏ କହୁଲେ, ଯାଉଥାଉ (ଥାଏ) ରୁଷି ରୁଷି । [ଢ଼ଗ]



# ର

୧ । ରଟିଲ ଚୁ (ଚି)ପୁଡ଼ି କଳାମେଘୀ ଶାଢ଼ୀ ( ପାଟ ପୀତାମ୍ବରୀ ) ଝରି ବାଜ ଗଲ ଗୁଡ଼ି; ବନ ହାଳଧାରେ ନଡିଆ ମାଳଫା, ଅଡର ରହୁଲ ବାକ । [ବ୍ୟଙ୍ଗ]

୨ । ରକତରେ ଟଲମଲ, ଖଇରରେ ଯେ, ପାଞ୍ଚପଲ; କହ ଲୋ ସାଧବାଣୀ ଏ କୋଉ ଗଛର ଫଳ ? [ନାଁ ହଥା, କାଇଞ୍ଚ] [ଢ଼ଗ]

୩ । ରଇ ଶୁଆ— [ ଶାଳ, ଅର୍ଥାତ୍ ତୁ ରଇ ବା ଶତାର୍ଗ୍ନିରେ ଶୋ ଅର୍ଥାତ୍ ମର ]

୪ । ରଙ୍କ ଖାଇଲେ କ ପଙ୍କ ରହେ (ପଙ୍କ ନ ରହେ) । [ଢ଼ଗ]

୫ । ରଙ୍କ ଘର ଘର ଗିଳୁଛୁ ଭଲ, ଫାଲୁଆ ଗୁଣ୍ଡାକୁ ଜଗନ୍ନାଥ । [ବ୍ୟଙ୍ଗ]

୬ । ରଙ୍କ (ରକ୍ମିଣୀ) ପାଇଛୁ ଝର, ପାଣି ପିଇ ପିଇ ମର । [ବ୍ୟଙ୍ଗ]

୭ । ରଙ୍କ ଝିଙ୍ଗିକା, ଗୁଲ ଝର ଝର ଗୋଡ଼ ବଙ୍କା । [ବ୍ୟଙ୍ଗ]

୮ । ରଙ୍କ ଗୁଣ୍ଡକୁ ପାନ ଗଲ, ଧାନ କହୁନ ମୋ ଜବନ (ଇଜତ, ମହତ) ଗଲ । [ବ୍ୟଙ୍ଗ]

୯ । ରକ୍ମିଣୀ କ ଲଆ ଫୁଟିବାଟା ବଡ଼ । [ଢ଼ଗ]

୧୦ । ରକ୍ମିଣୀ ପାଇଛୁ ଇଲଶୀ, କଣ୍ଟା ମଣ୍ଟା କଣ ( କଣ୍ଟା ଘର ଘର) ଗିଳୁଛୁ । [ବ୍ୟଙ୍ଗ]

୧୧ । ରଖେଇ ଲୋ ! ହଉଛୁ (ହଉଥାଉ) କେତେ ଦେଖେଇ ଲୋ । [ବ୍ୟଙ୍ଗ]

୧୨ । ରଙ୍ଗ ଖଡ଼ା ଗଛ ଗଛ; ମୋ ବୋଉର କୋଉଁ ( କେଉଁ, କୁ ) ଯୋଗ୍ୟତା ଅଛୁ ଲୋ, ରଙ୍ଗ ଲୁଗା ଦବ ବାଛୁ । ମୋ ଦୁଃଖ ହେ ! [ ଶାଶୁ ଘରକୁ ଯାଉଥିବା କନ୍ୟାର ମାନସିକ ଅଭିମାନ ]

୧୩ । ରଙ୍ଗ ଟହ ଟକ ଶିମିକ ଗଛ ! କେତେ ପର୍ଣ୍ଣୀଙ୍କି ନାଠ ଭଣ୍ଡ୍ରା ଚ ? [ବ୍ୟଙ୍ଗ]

୧୪ । ରଙ୍ଗ ରଙ୍ଗତା, ପାଣି ଦେଲେ ଗଛ ମର ଯାଆନ୍ତା । [ନାଁ ହଥା, ନଆଁ]

୧୫ । ରଙ୍ଗ ରଙ୍ଗିଆ, କଥା କହୁଥାଇ ଢନ ଭଙ୍ଗିଆ । [ବ୍ୟଙ୍ଗ]

୧୬ । ରଙ୍ଗିଆଟାଏ ! କେତେ କହୁଅଛୁ ଭଙ୍ଗିଆଟାଏ । [ବ୍ୟଙ୍ଗ]

୧୭ । ରଙ୍ଗିଆ ରସିଲ ରାଇକି; ଯାଆନ୍ତ ରସିଲ ବରଗୁଡ଼ିମୁହଁ, ବଭ (ବାହ୍ୱା) ହେଲେ ଦହେଁ ଦହଁକ । [ଢ଼ଗ]

୧୮ । ରଜପୁତ୍ର ! ଆପଣା କାମକୁ ( ନେଜକୁ ) ମଜବୁତ୍ [ବ୍ୟଙ୍ଗ]

୧୯ । ରଜାଙ୍କ ଘର ଘଅ (ଝିଅ) ! ତାକୁ (ତାଙ୍କୁ) ପଣତ ପ୍ରହାର (ପଡେଇ) ନାଥ । [ବ୍ୟଙ୍ଗ]

୨୦ । ରଜା କଅଁଣ ଖାଉ ଥେବେ ? ନାଁ, ଅରୁଆ ଚଉଳ ଗୁଡ଼ । [ବାଉଳ୍ବୁଣୀର ପ୍ରଶ୍ନରେ ବାଉଳେର ଉତ୍ତର]

୨୧ । ରଜା ଖାଆନ୍ତି କଅଣ ? ଅରୁଆ ଚଉଳ ଗୁଡ଼ ହାଣ୍ଡିରେ, ଝଙ୍କୁଡ଼ ମାଛର ତେଜଣ (ତିଉଣ, ତଅଣ) । [ବ୍ୟଙ୍ଗ]

୨୨ । ରଜା କୁଣିଆ (କୁଟୁମ୍ବ) ! କୁଣିଆ ଅଇଲେ ଘରେ, ଘସା ବଟା (ରନ୍ଧା ବଢ଼ା, କଟା ବଟା) ଲଗିଛି ଖରେ । [ବ୍ୟଙ୍ଗ]

୨୩ । ରଜା କହିଲେ ହରଷେ, ମନ୍ତ୍ରୀ (ପାଜି) ବୁଝ୍ ବୁଝ୍ ଗଲା ବରଷେ [ବ୍ୟଙ୍ଗ]

୨୪ । ରଜା ଆଜ୍ଞା କରୁ କରୁ ବରଷେ, ପଜେ ବୁଝ୍ ବୁଝ୍ ଗଲା (ଯିବ) ପୁରୁଷେ । [ବ୍ୟଙ୍ଗ]

୨୫ । ରଜା ପରଜା, ତୁମେ ଖାଇଲେ କି ସରେନ୍ତା ଝଜା ? [ଢଗ]

୨୬ । ରଜାର ନଅଣ୍ଡ ପ୍ରଜାର ହାନି । [ଢଗ]

୨୭ । ରତନ ମୁଣ୍ଡ, ଜାଣୁ ଜାଣୁ ମୋର ହଜିଲା ବୁଦ୍ଧି । [ଢଗ]

୨୮ । ରନ୍ଧା ବଢ଼ା କରି ଥୋଇଲି ଘରେ; ଭେକିଆ (ଝିଅ)ଲୋ ଶୋଇଲି ବାଡ଼ି ଦୁଆରେ (ଗାଈ ଗୁହାଳେ) । [ଢଗ]

୨୯ । ରସ୍ ରସ୍ ହାଏ ଚାଲି, ତାକୁ ସିନା (ଆମେ) ମରଦ (ରସିକ) ବୋଲି ।

୩୦ । ରସ୍ଧାତର ! ମାଆ ଚକୁଥିଲା (ଥିଲା) ପିଠାଶୁଖୁଆ (ଧୋବଲା ଶୁଖୁଆ, କୋକଲା ଶୁଖୁଆ), ପୁଅ ହୋ (ହୋଇଛନ୍ତି ନାଗର ପୁଅ ଦେଖ ଛନ୍ଦି ଗୁଡ଼ରା) । [ବ୍ୟଙ୍ଗ]

୩୧ । ରସିଲେ ରସ୍, ଘାଟରେ ବସ୍; ନ ରସିଲେ ନାହିଁ ବେଳହୁଁ (ବେଳସୁଁ, ଦୂରରୁ) ଖସ୍ ।

୩୨ । ରସ୍ତା ରକ୍ଷେଇଲି କାକୁଡ଼ି ପାଣିକି, ବଳେ ମାଡ଼ିଗଲା ପୋଡ଼; ହାଆନ୍ତଙ୍କ ପାଇଁ (ସ୍ୱାମୀଙ୍କ ପାଇଁ)କି ଶେଜ ହେଜାଇଲି, ଶୋଇଲେଣି ନଣଦେଇ । [ଢଗ]

୩୩ । ରସିଆଟାଏ ! ରସିଆ କାନରେ ଖାସିଆଟାଏ, ମଲ୍ଲୀ ଫୁଲକୁ ବାଇ; ଚମ୍ପାଫୁଲଟାଏ କାନରେ ନାଇ, ବୁଲୁଥାଏ ହାଇ ହାଇ । [ବ୍ୟଙ୍ଗ]

୩୪ । ରସିକ ମଉଚ୍ଛ ବନ୍ଧରେ; ବଣ ମଲ୍ଲୀଫୁଲ, ଘାଟଲି ଗାମୁଛା, ପେଟିରେ ଉ ନାହିଁ (ମହକି ଉଠୁଛି) ଗନ୍ଧରେ । [ବ୍ୟଙ୍ଗ]

୩୫ । ରସିକ ପଣକୁ ଦାଣ୍ଡରଥି ! ବୁକ (ବୋକ) ଦଉଥାନ୍ତି (ବୁଲି ଯାଉଥାନ୍ତି, ଦଉଡ଼ି ବୁଲନ୍ତି) ଘର କଡ଼ । [ବ୍ୟଙ୍ଗ]

୩୬ । ରସିକନାଗର; ସ୍ୱରେ ଜର ଜର । [ବ୍ୟଙ୍ଗ]

୩୭ । ରସିକା ହାତରେ କଅଁଫୁଲ ଡାଳେ, ଧଇଲା ରସିକ ଥୋଇଲା ଭଲେ । [ବ୍ୟଙ୍ଗ]

୩୮ । ରସିକା ନାଗ୍ନି ବାପ ଘର ଯାଏ, ମନଫୁଲିଣିଆ (ପୋଲ ଫାଉଡିଆ, କଖାରୁ ଫୁଲିଆ) ହଙ୍କାରେ (ପଛରେ) ଧାଏଁ (ଯୋଗିଆ ପଛରେ ଗୋଡ଼େଇଥାଏ) । [ବ୍ୟଙ୍ଗ]

୩୯ । ରସୁଣ ଗେପା, ବାଘ ଚହ୍ଲଛି (ଚହ୍ଲଇ, ଚହ୍ଲିଲା) ଦୂରରୁ ବାପା । [ବ୍ୟଙ୍ଗ]

୪୦ । ରାଇ ଗଇ ତୁ ହାଉତୁ କିଆଁ ? ଓଦା କାଠରେ ଲଗୁଛୁ (ଲଗାଉଛୁ) ନିଆଁ [ବ୍ୟଙ୍ଗ]

୪୧ । ରାଜବଣି ପୋଷୁଆ, କଅଁଳ (ମଧୁର) କଥାରେ ହସୁଆ (ତା କଥା ଶୁଣି ହସୁଆ) । [ବ୍ୟଙ୍ଗ]

୪୨ । ରାଜ ମିସ୍ତିରି, ଜଣେ ମଣିଷଙ୍କୁ ପଣେ ଦଣ୍ଡ । [ବ୍ୟଙ୍ଗ]

୪୩ । ରାଣ ନଯ୍ୟମ ପକା(କ)ଉ କେତେ, ଚୁଲାରେ (ଶୁଟିଲା) ସୁଅଗ (ସୁହାଗ) ଦେଖା (ଲଗା)ଉ କେତେ ! [ବ୍ୟଙ୍ଗ]

୪୪ । ରାଣୀ ଗଲେ ଦାଣ୍ଡେ, କି, କାଣୀ ଗଲା ଦାଣ୍ଡେ ! [ବ୍ୟଙ୍ଗ]

୪୫ । ରାଣ୍ଡ, ଖଣ୍ଡ । [ବ୍ୟଙ୍ଗ]

୪୬ । ରାଣ୍ଡ, ତାକୁ ଡରେ ଷଣ୍ଢ ! [ବ୍ୟଙ୍ଗ]

୪୭ । ରାଣ୍ଡ ନାଁ ଗୋସାଇଁ ଖାଇ; ରାଣ୍ଡୀ ନାଁ ଫୁଲବାଇ । [ବ୍ୟଙ୍ଗ]

୪୮ । ରାଣ୍ଡ ଗଲେ ପୁରୁଷୋତ୍ତମ, ଗୋଡ଼େଇ ଗଲେ ତିନିଜଣ । [ବ୍ୟଙ୍ଗ]

୪୯ । ରାଣ୍ଡ ଦଉ, ଭଣ୍ଡ ଦଉ; ହାଣ୍ଡିଆ କାତିର (ଛତିଶି ପାଟକ) ଦାଣ୍ଡ ଦଉ ! [ବ୍ୟଙ୍ଗ]

୫୦ । ରାଣ୍ଡର କିଆଁ ଆଇଁଦର (ଦେ) କେନ୍ଦ୍ରା ? [ବ୍ୟଙ୍ଗ]

୫୧ । ରାଣ୍ଡର କି ଦାଣ୍ଡକୁ (କାଣ୍ଡ) ଭର ? [ବ୍ୟଙ୍ଗ]

୫୨ । ରାଣ୍ଡୀପୁଅ ଅନନ୍ତା, ଅଚିନ୍ତା ହୋ (ହେ)ଇ ବୁଲୁଥା । [ବ୍ୟଙ୍ଗ]

୫୩ । ରାଣ୍ଡୀ ପୁଅର ଗୁମର (ବଢ଼େଇ) ଦେଖ; ପେଜପିଆ ପେଟେ ବାଜୁଛି ଶଙ୍ଖ ! [ବ୍ୟଙ୍ଗ]

୫୪ । ରାଣ୍ଡେ ଯେହ୍ନ ଘଇନ୍ତା କରନ୍ତି, ଭଲ ଭଲ ଲୋକଙ୍କ କଥା ନ ମାନି, ବଅଁଶ (କଉଁଶ) ଗଡ଼େଇ ମାରନ୍ତି । [ବ୍ୟଙ୍ଗ]

୫୫ । ରାଣ୍ଡୀ, ଗୋଟେଇଁ ଖାଇ । [ ସ୍ବାମୀମାନଙ୍କୁ ଗାଳି ବା ଅଭିଶାପ ]

୫୬ । ରାତି ହଗାଟିକି କବେ ମୂଳ, ବାହରୁ ଗୁଡ଼ାବ ତିନି ଆଙ୍ଗୁଳି । [ବ୍ୟଙ୍ଗ]

୫୭ । ରାତି ହେଲାରୁ, ରଖ ଚକଧର; ରାତି ପାହିଲେ କି କରେ ଚକଧର ? [ କୁକୁଡ଼ାମାନେ ସନ୍ଧ୍ୟାବେଳେ ଓ ଭୋରରୁ ବୋବାଇବାର କାଳିକ ଅର୍ଥ ]

୫୮ । ରାତିଏ ଗଲେ ହାତାଏ ଆଣେ; ଘରେ ତ ନ ଥାଏ ଗୁଡ଼ଳ ମାଣେ । [ବ୍ୟଙ୍ଗ]

୫୯ । ରାତକା ରାତ, ଠିଆ ଠିଆ ( ବସ ଉଠ )ରେ ହେଲା ପାହାନ୍ତ ( ପାହିଲା ରାତ ) । [ଢଗ]

୬୦ । ରାତ ପାହାନ୍ତ, ଚମ୍ପତ ନାହାନ୍ତ ! [ବ୍ୟଙ୍ଗ]

୬୧ । ରାତଯାକ ଚଉଁ ଚେଇଁ ମଣିଷ ଗୋଟେ (କାହ୍ନେ), କୁଆ କାଆ କଲା ବେଳକୁ ଦେଖ ନାହିଁ ଗୋଟେ (ଜଣେ) । [ ନଁ । ଦିଆ, ଆକାଶରେ ତାରାଗଣ ]

୬୨ । ରାଧା ରାଧା ବୋଲି ରଟେ (ଡାକେ) ବଂଶୀ, ରାଧା କାନ୍ଦୁଛନ୍ତି (ଶକଉଛି) କଣ (ଚୂଲି ମୁଣ୍ଡ)ରେ ପଶି (ବସି) । [ବ୍ୟଙ୍ଗ]

୬୩ । ରାଧିକା ମାଇଁ, ଖାଇ ଚୁରୁ ନାହିଁ ଭଣଜା ପାଇଁ; ଭଣଜା ପାଇଁ (ପେଇ) କ ହୋଇଲେ (ହେଲେଣି) ବାଇ । [ବ୍ୟଙ୍ଗ]

୬୪ । ରାନ୍ଧି ବାଢ଼ି କରି ଥୋଇଲା କିଏ (କିଏ ଥୋଇଲା) ? ପତର ପକେଇ ଖାଇଲା କିଏ (କିଏ ଖାଇଲା) ? [ବ୍ୟଙ୍ଗ]

୬୫ । ରାବଣା (ରାବଣ) ଅଇଲା, ନେଲା ସୀତା; ଏଥିପାଇଁ (ଟେପାଇଁ) କାଅ ପୋଥି ସାରୁଟା (ସାଟୋଟା) ! [ଢଗ]

୬୬ । ରାମ୍ ରାମ୍ ! ଏ କଥାରେ ନାହିଁ କାମ୍ ! [ବିରକ୍ତି]

୬୭ । ରାମ ରାମ ! ପିମ୍ପୁଡ଼ି ଖାଇଟଲେ (ଜନ୍ଦା ଖାଇଗଲେ) ଶାଳଗ୍ରାମ !

୬୮ । ରାମଚନ୍ଦ୍ର ମହାପ୍ରଭୁ ଜଣେ, ନାଁ । ରାମା ଭୁକାଭୁଣା (ଭ୍ରମ ବୋଲେ) ଜଣେ ! [ବ୍ୟଙ୍ଗ]

୬୯ । ରାନ୍ଧା ଜାନୀ, କାଠରେ ମୋହର କାଟିଲେ କାନ । [ଢଗ]

୭୦ । ରାହୁ ତ କଲା ଚନ୍ଦ୍ରକୁ ଗ୍ରାସ, ଟଇନ ଯାହର କାହିଁ ଉପାସ ? [ବ୍ୟଙ୍ଗ]

୭୧ । ରାହୁ ଦରଗରେ ଚନ୍ଦ୍ର ଗିଳିଲେ, ଟଇଜ କେଦେ ଉପାସେ ମଲେ (ଗାଧୋଇ ଗଲେ) ! [ଢଗ]

୭୨ । ରାହୁଅତୁଣ୍ଡୀ, ଯାଇ କମା (ମ)ଲୁଛୁ ପାଟିରେ ଖଣ୍ଡି (ପାଟିରେ ଲାଗିଛି ଏ ଟିକି ଖଣ୍ଡି) । [ଗାଳି]

୭୩ । ରୁଆଳି ମୁଆଳି (ଉଆଳି, ରୁଆଳି, ବାଆଳି) କୁଟା; ଶାଶୁ (ବୋହୂ) ଟେକୁ ଥେଲେ ବୋହୂ (ଶାଶୁ) ଖାଉଥାଏ, ପୁଅ ଥେଲେ କୁଆକୁଟା । [ଢଗ]

୭୪ । ରୁଷିଛୁ, ନାଁ । ଫଣ୍ଡିଆ କାନ୍ଥକୁ ଭୁସିଛୁ ? [ବ୍ୟଙ୍ଗ]

୭୫ । ରୁଷି ଯାଇ ବାଡ଼ି ଦୁଅରେ (ପଲାଡ଼େ)ବସେ, କେହି ନ ଡାକିଲେ ଘରକୁ (ମନକୁ) ଆସେ । [ବ୍ୟଙ୍ଗ]

୭୬ । ରୂପଟା ଚୁଚ୍ଛା ମାରି ଖାଉଛୁ । [ବ୍ୟଙ୍ଗ]

୭୭ । ରୂପକୁ ତୋର ପଟାନ୍ତର ନାହିଁ, ବନ୍ଧ ଗଡ଼ିଥିଲା ପାପ ଦହୁଡ଼ି (ଦୁହୁଡ଼ି) ଲାଗାଇ ! [ବ୍ୟଙ୍ଗ]

୭୮ । ରୂପ ଦେଖି ନ ବଗ୍ଭରୁ, କେତେ ନଟେଇ କଣ (କଣ, ଦଗ୍ଭରୁ) । [ବ୍ୟଙ୍ଗ]

୭୯ । ରେଣ୍ଟା ମୋଟା ଯେଉଁଟା, ଗାଁ ଦଲବେହେରା ସେଉଟା । [ବ୍ୟଙ୍ଗ]

୮୦ । ରେକ ଠେ କ ଠେଙ୍ଗା ! ତା ବ୍ଭୁ ନ ଡରେ କେଉଁ ଡେଙ୍ଗା । [ବ୍ୟଙ୍ଗ]

୮୧ । ରେଲ ବାଡ଼ି ! ତା ଆଗରେ ସଭିଏଁ ହାଡ଼ି । [ବ୍ୟଙ୍ଗ]

୮୨ । ରୁଣୁଝୁଣୁ ହୋଇ ଗାଧୋଇ ପାଧୋଇ (ବାଜେଣି ନ ଦରେ ଦାନ୍ତକୁ କମେଇ), ନଈରୁ ଆସୁଛ ଗୋରୀ; ଜ ନୁ ସଉବନ ହବୁ ଦଶୁଅଛୁ, ହରୁ ଲୁଗା ଫୁଟିକରି; ଓଢ଼ଣା ପଡ଼ୁଛୁ ଗୁଣ୍ଡ ହରକ, ଶବଦ ଶୁଭୁଛୁ ଚଉପାଢ଼ିକ । [ବ୍ୟଙ୍ଗ]



## ଲ

୧ । ଲକ୍ଷେ ଅରଜିଲେ ପକ୍ଷକୁ ନ ଅଣ୍ଟେ । [ବ୍ୟଙ୍ଗ]

୨ । ଲକ୍ଷେ ଅରଜିଲେ ପକ୍ଷେ ଖାଏ, ଆଉ ପକ୍ଷକୁ ଓପାସ ଶୁଏ । [ବ୍ୟଙ୍ଗ]

୩ । ଲକ୍ଷେ କଢ଼ ଧରିଛୁ; ଗୋଟିଏ ଫୁଲ (ପଦ୍ମ) ଫୁଟିଛି । [ନିଁ । ଦଅ; ତାରକା ମଧ୍ୟରେ ଚନ୍ଦ୍ର]

୪ । ଲକ୍ଷି ଧାଗର—ମାଆ ଧାନକୁଟୀ ପୁଅ ନାଗର ! [ଲକ୍ଷି ଧାଗର ନାମକ ଗ୍ରାମବାସୀଙ୍କୁ ପରିହାସ ବଚନ]

୫ । ଲଗେଇ ଲଗେଇ କହୁଛୁ କେତେ, ହରୁ ଲୁଗାଟାଏ (ଫୁଲୁଫୁଲ ଶାଢ଼ୀ) ପିନ୍ଧି; ହଲେଇ ହଉଛୁ (ହଲି ଯାଉଅଛୁ) ନାକର ବସଣି, କଣ୍ଢେଇ ଦଉକୁ ମୁନ୍ଦ । [ଢଗ]

୬ । ଲଗେଇ ଦେଲି ଅଦା ହେଲା ଟେଉଟୋ ଖାଇଗଲା (କାଳୀ ଗାଈ ତାର ମୂଳ ପୋଛି ଦେଲା), ଫେର୍ (ପୁଣି) ବାହାରିଲେ ଗଜା । [ନିଁ । ଦଅ; ମୁନ୍ଦରେ ବୁଢ଼ବାଳ]

୭ । ଲଛୁପୁଛ (ଅଣ୍ଟାଭଙ୍ଗା) ଗୁଆବାଡ଼; କାହାପାଇଁ ଆଜି ପନଟିଲ ଭଙ୍ଗା, ଲବଙ୍ଗରେ ଗୁଜୁରାତ ? [ଢଗ]

୮ । ଲଙ୍କାପୋଡ଼ା ବାନର (ବାନ୍ଦର) । [ଟାକ; ହନୁମନ୍ତ ଲଙ୍କା ଗଡ଼କୁ ପୋଡ଼ିବା ପ୍ରତି ଲକ୍ଷ୍ୟକରି]

୯ । ଲଙ୍କାମରଚିରେ କଟି, କିଆଁ କାନ୍ଦୁଅଛୁ କଣରେ ବସି, ନେବ ମଗୁଣୀରେ ଆସି । [ଢଗ]

୧୦ । ଲଙ୍କାମରଚି (ଲଙ୍କମାରିଚି), ମତେ ଦେଖି କିଆଁ ମୁହଁ ମୋଡ଼ୁଛୁ ? [ବ୍ୟଙ୍ଗ]

୧୧ । ଲବଙ୍ଗ ଲଟା, ଫୁଲ ଚହଟା, ଫୁଲ କୋଉଁଦନ ଫୁଟିବ; ଅନାଇଁ ଅନାଇଁ ବୟସ ଗଲ, କାନ୍ତ କୋଉଁଦନ ଅସିବ । [ଢଗ]

୧୨ । ଲଣ୍ଡ୍ରାଟାଏ, ଲଣ୍ଡ୍ରା ହାତରେ ଫଣ୍ଡ୍ରାଟାଏ ! [ନିଁ । ଦାଆ ଯୁକ୍ତ୍ରିହ୍ନ୍ ମୁଲେମାନ କାତ]

୧୩ । ଲଙ୍କାମରଚରେ କଷି; ଆଖି ଠାରୁଅଛୁ ପଠାଣ (ରସିକ)ଟୋକା, ମୁଚୁକି ମୁଚୁକି ହସି । [ବ୍ୟଙ୍ଗ]

୧୪ । ଲଣ୍ଡ୍ରା ! ମ'ରୁଛୁ ଫାଲୁଆ ଗୁଣ୍ଡ୍ରା; ଗିଳି ଦଉଥାଏ ମଣ୍ଡ୍ରା । [ବ୍ୟଙ୍ଗ]

୧୫ । ଲଗା ନାହିଁ କି ପଘା ନାହିଁ; ବସିଅଛୁ ଦାଣ୍ଡ ଅଧ (ପିଣ୍ଡ୍ରା)ରେ ଯାଇ, ବାଳ ମୁକୁଳେଇ ଦେଇ । [ବ୍ୟଙ୍ଗ]

୧୬ । ଲଙ୍କା, ସବୁ କଥା ବଙ୍କା । [ବ୍ୟଙ୍ଗ]

୧୭ । ଲଣ୍ଡ୍ରାମୁଣ୍ଡ୍ରା, ପୋଇ କେରେଣ୍ଡ୍ରା, ସିଂହ ଦୁଅରେ ଥାଏ; ଅଇଁଠା ଘରୁ ଗୁଣ୍ଡ୍ରେ ପାଇଲେ, ପାଣି ଛଡ଼େଇ ଖାଏ । [ବ୍ୟଙ୍ଗ]

୧୮ । ଲମ୍ବ ଲହରଆ ଦାଣ୍ଡ୍ରକୁ ଯାଏ, ଲହଙ୍ଗା କୋଳକି ଲୁଣ ନ ପାଏ । (ବାହାରେ ଡମ ଘରେ ଲୁଣ ନାହିଁ; ) [ବ୍ୟଙ୍ଗ]

୧୯ । ଲହ ଲହକା, ପତର ବଙ୍କା; ତା ଫଳ ଟକେ ଲକ୍ଷେ ଟଙ୍କା । [ନିଁ । ଦାଆ, ଧାନ]

୨୦ । ଲହ (ଲଅ) ବଶ; କେତେ କାଳ ହୁଅନ୍ତୁ ସୁଅଗୀ ମାଇପ, କେତେ କାଳ ହୁଅନ୍ତୁ ଡଡ଼ା ଡଡ଼ (ଭଡ଼ା ଭଡ, ଗଡ଼ା ଗଡ଼) । [ମହିରେ ମହିରେ ପ୍ରକାଶ୍ୟରେ କଳହ କରୁଥିବା ଦମ୍ପତିଙ୍କ ପ୍ରତି ବ୍ୟଙ୍ଗ]

୨୧ । ଇଅ ( ଲହ ) ବରି, ନୁହେଁରେ କାଳଆ ଡୋହ୍ରୋ ଭଳି । [ବ୍ୟଙ୍ଗ]

୨୨ । ଲଉ ( କଖାରୁ ) ଡଙ୍କ. ବଡ଼ ଘର ପୁଅ ଏଡ଼କି ରଙ୍କ । [ବ୍ୟଙ୍ଗ]

୨୩ । ଲଉ ଦଅଣା; ବଡ଼ ବୋହୂଙ୍କର ଭଲ ଢ଼କଣା ( କାକର ଛଣା ), ସାଆନ୍ତାଣୀଙ୍କର ସୁନା ଗହଣା । [ବ୍ୟଙ୍ଗ]

୨୪ । ଲଉକୁ ମାଛ, ଆଉ କାହିଁପାଇଁ ପଗ୍ଭରୁ ଅଛ ( ଆଉ କାହାପାଇଁ ଅନା (ନେ)ଇ ଅଛୁ ) [ଢ଼ଗ]

୨୫ । ଲଉ ଶାଗ; ଫେଣ୍ଟେଇ କି ଦବ ବଡ଼ଭାଗ; ନଇଲେ ଫେଣ୍ଟେଇ କହି ଦବ । [ଢଗ]

୨୬ । ଲଙ୍ଗୁଡ଼ା ପୋକ ହାଲୁ ହାଲୁ , ନଳାରେ କାଦୁଅ (ପଙ୍କ) ବାଲୁ ବାଲୁ । [ ଘୃଣାଜନକ ଅପରିଷ୍କୃତ ନଳା ମୁହଁ ]

୨୭ । ଲଜ ନ ଥାଏ ବଣପୋଇକି, ଘିନ ଖୁଲୁଥାଏ ନଣନ୍ଦେଇକି । [ବ୍ୟଙ୍ଗ]

୨୮ । ଲଜ ନ ଥାଏ ଦେଉଁ (ଯୋଉ) ମୁହଁକୁ, ଭଣ୍ଡାର ନ ଥାଏ ଖଉରବାକୁ । [ବ୍ୟଙ୍ଗ]

୨୯ । ଲଜ ନାହିଁ ଲେ ତତେ; ଦୁବ ଶଢରେ ଦଉଡ଼ ନ ଦେଇ, କହ ଖୁଲୁଛୁ କେତେ । [ବ୍ୟଙ୍ଗ]

୩୦ । ଲଉ (କଖାରୁ) ଡଙ୍କ, ଶୀତକାଳେ ଶାମ ପାଙ୍କୁ ଡାକ, ମେଘ ଘୋଡ଼ା ଘୋଡ଼ା କରୁଛି; ଟିକି ଗୃଦରରେ ନ ମାଡ଼େ ନିଦ, ମାଠ ଘୋଡ଼ା ମନେ ପଡ଼ୁଛି । [ଢ଼ଗ]

୩୧ । ଲଉ (କଖାରୁ) ଡଙ୍କ, ନଅକନକ (ଲଅକଲକ), ଗୁହାଳ ପିଢ଼ାରେ ପୋଇ; ଛଅମାସ ହେଲା କଥା ନ କହିଲା (ଘରୁ ରୁଷିଗଲା); ଗଲିକି ସାଙ୍ଗେ (ପଛେ) ଗୋଡ଼େଇ । [ଢଗ]

୩୨ । ଲାଜ ମାଉ ନାହିଁ ତତେ; ପିମ୍ପୁଡ଼ି ଗାତରେ ପଶି ଯାଉ ନାହୁଁ, ମୁହ ହଲଉଛୁ କେତେ । [ବ୍ୟଙ୍ଗ]

୩୩ । ଲାଜ ନାହିଁ ତୋର ମୁଖେ; ବଭ୍ର (ବାହା) ହବା ପେଇଁ ବେଦରେ ବସିଛୁ (ବଇଛୁ), ବଳଦ ବାନ୍ଧଛୁ ପାଖେ । [ବ୍ୟଙ୍ଗ]

୩୪ । ଲାଜ ନାହିଁ ନିଲଜ (ଜା)କୁ; ଶୁଖିଲା ମାଟିରେ କଂଠଉ ମାଡ଼ୁଛି, ଠକ ଠକ ଶୁଭିବାକୁ । [ବ୍ୟଙ୍ଗ]

୩୫ । ଲାଜ ନାହିଁ କହିବାକୁ; ଆର୍ଣ୍ଡି (ଶୁ )କ ପାଣିରେ ତପ କରୁଥି (ଥ୍ୟେ)ଲୁ, ପରଘର ଭାଙ୍ଗିବାକୁ (ପରନ୍ଦିଅ ମାରିବାକୁ ) । [ବ୍ୟଙ୍ଗ]

୩୬ । ଲାଟ ସାହବ, ଆମେ ଜାଣିବାକୁ ହେବ ଦଇବ । [ଢଗ]

୩୭ । ଲାଠି (ଲାଠା) ବାଜିଲା, ଲାଠି ବାଜିଲାରୁ ନିଦ ଭାଜିଲା । [ବ୍ୟଙ୍ଗ]

୩୮ । ଲାଣ୍ଡି ବରଗଛ ଗ୍ରାଇ; ଲାଣ୍ଡୀକି ଚିନ୍ନ ମୁଁ କ ଘର କରିବ, ଲାଣ୍ଡୀ ତ ବନ୍ଧଣା ଗାଈ । [ଢଗ

୩୯ । ଲଠୌଷଧି, ଛଡ଼େଇ ଦେବ ହତ୍ତୁ ବ୍ୟାଧି । [ବ୍ୟଙ୍ଗ; ମାଡ଼ ବା ପ୍ରହାରଠାରୁ ବଳି ପ୍ରତ୍ୟକ୍ଷ ଫଳପ୍ରଦ ଔଷଧ ନାହିଁ]

୪୦ । ଲଭ ହେଲା ଏତକ; କଣ୍ଟା ଲାଗି ଲୁଗା ଚିରିଗଲା, ଫୁଲ ତୋଳି ଗଲି କେତକୀ । [ଢ଼ଗ]

୪୧ । ଲାଗିଛି ଯାଉଁଳା ପାଲି; ଚଅଁର ଡିହକୁ ଡାହୁକା (ଦାଇକା) ମରି, ଶିର ପାଳିଆ ମଲା । [ବ୍ୟଙ୍ଗ]

୪୨ । ଲାହି ଲେଉଟେ ପିଢ଼ା ଫାଟେ, ତେବେ ହେ ବାହ୍ମଣ ଠାଅରୁ ଉଠେ । [ବ୍ରହ୍ମଣମାନଙ୍କର ଦୋହଣି ଫିଟା ଭୋଜନ-ଲାଳସା ପ୍ରତି ବ୍ୟଙ୍ଗ]

୪୩ । ଲୁଗା କିଣିଛି, ତନ୍ତ ଘରୁ ଚିଆ; ଏଇଥି ପେଇଁ କ କୋଇଁ ଡାକରି ! [ବ୍ୟଙ୍ଗ]

୪୪ । ନୁଖୁରି ହଳଦୀ ଲଗେଇଛି, ଠାକୁଆ ଗାଲକୁ ରଙ୍ଗେଇଛି । [ବ୍ୟଙ୍ଗ]

୪୫ । ଲୁଚୁ କୁଚୁ—ମାଉଁସ ମେଞ୍ଚା । [ବ୍ୟଙ୍ଗ]

୪୬ । ଲୁଚି ଲୁଚି – ମାଉଁସ ମେଞ୍ଚା ।

୪୭ । ଲୁଚି ଲୁଚି କରି ଗୋଟେଇ ଖାଏ, ବୋହୂ ଦେଖାକୁ ଅସୁକୁ (ଙ୍ଗୁ) ପାଏ । [ବ୍ୟଙ୍ଗ]

୪୮ । ଲୁଚି ଲୁଚି ପରି ଅଇଁଠା ଖାଏ, ଘର ଆଦରକୁ ଅସୁଙ୍କୁ (କୁ) ପାଏ । [ବ୍ୟଙ୍ଗ]

୪୯ । ଲୁଚିଛୁ; ନାଁ, ଗୋଡ଼ ଦଉଡ଼ି ଦ(ଦୁ)ଶୁଛୁ । [ବ୍ୟଙ୍ଗ]

୫୦ । ଲୁଚେଇ ଥାଏ ମୁହଁ; ଡେଣ୍ଟେଇ ଗୋଡ଼କୁ ଡେଙ୍ଗେଇ ହାତ, ଫୁଟି ଦ (ଦୁ)ଶୁଥାଏ ଦନ୍ତ । [ବ୍ୟଙ୍ଗ]

୫୧ । ଲୁଟି ଲୁଟି ନେଲା ଧନ, ଆଉ ଯାହା ଅଛି ପାଟକୁ ଆଣ । [ବ୍ୟଙ୍ଗ]

୫୨ । ଲୁଟି ବେଳକୁ ପୁଅ ଯାଉ, ଯୁଦ୍ଧ ବେଳକୁ କୋଇଁ ଯାଉ । (ଲଭ ବେଳକୁ ପୁଅକୁ ପଠଉଛୁ, ହାଣ ମୁହଁକୁ କୋଇଁକି ପଠଉଛୁ) । [ବ୍ୟଙ୍ଗ]

୫୩ । ଲୁଙ୍ଗି ପିନ୍ଧି ଦଅଁ ଘର (ଦେଉଳକୁ) ଗଲା, ମୁଁ ଭଇଁଷଇ ଲଜରେ ମଲା । [ବ୍ୟଙ୍ଗ]

୫୪ । ଲୁଙ୍ଗି ପିନ୍ଧି ଗଲା ହାଟେ; ମୁଁ କାଠିଖାଇ ଏଡ଼େ ସୁନ୍ଦର, ସିନ୍ଧିଏ ଚାହିଁଲେ ବାଟେ (ମତେ) । [ଢଗ]

୫୫ । ଲୁଣ୍ଡେଇ ପୁଣ୍ଡେଇ ବାନ୍ଧୁଛ ଦବୁ, ପର ଆପଣାର ନାହିଁଟି ବାବୁ ! [ବ୍ୟଙ୍ଗ]

୫୬ । ଲୁଣିଆ ଗଲଣି ଲୁଣ୍ଡକୁ; ତତେ ଙ୍ଖୁ ଚୁ ନାହି ଲହକା ବେତ, ଙ୍ଖୁ ଚୁଅଛୁ ତୋର ଗୁଣକୁ । [ଢଗ]

୫୭ । ଲୁଣ ଲଗାଇ ଭାତ ଖାଏ, ଏଣେ ସାତଡଅଣ କହୁଥାଏ । [ବ୍ୟଙ୍ଗ]

୫୮ । ଲୁହାକୁ ପୋକ ଖାଇଗଲା, ନାଁ, ପୁଅକୁ ଚଲ ନେଇଗଲା । [ବ୍ୟଙ୍ଗ]

୫୯ । ଲୁହା ଲହୁଣୀ, ଯାଉ ଅସୁ ମାରେ ଢନ କହୁଣୀ । [ବ୍ୟଙ୍ଗ]

୬୦ । ଲେ, ଲେ, ଲେ, ଲଡ଼ୁଆ; ମାହା ଲଦାରେ ଲହା ଲଗିଛି, ଲଇକୁଲରେ ହାମେ ବଡ଼ିଆ । [ବ୍ୟଙ୍ଗ]

[କଟକ ଦହଦଆ ଅଶିକ୍ଷିତ ବା ଦଜାଣେଆମାନଙ୍କ ଭଷା ବ୍ୟବହାର ପ୍ରତି ବ୍ୟଙ୍ଗ; ନେବା ସ୍ଥଳରେ ଲେବା, ମହାନଦୀ ସ୍ଥଳରେ ମହାଲଦୀ, ନଡ଼ିଆ ସ୍ଥଳରେ ଲଡ଼ିଆ ନଇ ସ୍ଥଳରେ ଲଇ, ଆମେ ସ୍ଥଳରେ ହାମେ । ]

୬୧ । ଲେଟ୍ଡ଼ ପଡ଼ିଲ କାନ୍ଥ; ଯୁବାକାଳେ ମୋର ଦରହା ଧଇଲ, ପୋକ କାଟିଲେ ମୋ ଦାନ୍ତ (ଉପୁଡ଼ି ଗଲ ଦାନ୍ତ) । [ବ୍ୟଙ୍ଗ]

୬୨ । ଲେଉଟିଆ ଶାଗ ପଟାଳି ପଟାଳି, ବାଛୁଣୀ ଖାଇଲା ଝୁଣ୍ଟି; ଶାଶୁ ଗାଳି ଦେଲା ନରମଲୀ ଖୁଣ୍ଟି, ଗଲା ଦଣ୍ଡିରେ ଫାଟି । [ଢଗ]



## ଶ, ଷ, ସ

୧ । ଶଏ (ଶହ) କେ ପଶୁରଏ ଦଶା । [ବ୍ୟଙ୍ଗ]

୨ । ଶହେ କାହାଣକୁ ପନକ ବନ୍ଧା । [ବ୍ୟଙ୍ଗ]

୩ । ଶକ (ଧକ) ଶକ କାନ୍ଦ୍ ନା ମୁଁ ଅଇଲିଣି । [ବ୍ୟଙ୍ଗ]

୪ । ଶଗଡ଼ରେ ଦେଲି କାଳୀ; ଭଲ ଶଗଡ଼ିଆ ପୋହୋଲା ମାଳ, ପନ୍ଦର ଦନିଆ ପାଳି । [ଢଗ]

୫ । ଶକଡ଼ ଅଛି, ଲଙ୍ଗ ବୁଡ଼ଉଛି; ଚମ୍ପା ଫୁଲଟିକି ନାଗ ଧରଛି ।

[ନିଁଆ; ଜଳୁଥିବା ଦୀପ]

୬ । ଶଗଡ଼ ଯାଉଛି ହୁଡ଼ିହୁଡ଼େଇ କୋଦାଳ (ଦଅଙ୍କ) ପୋଷଣ୍ଡା ତେଣି; ଶଗଡ଼ିଆ ମୁହଁ ଶୁଖି ଯାଇଛି, ଗୋଷ୍ଠିକ ଦେଖିବାପାଇଁ । [ଢଗ]

୭ । ଶକେଇ ନାହିଁ ଶକେଇ ହୁଏ (ଶକଉଚି); ଆଖି ଛଳ ଛଳ (ଛନ ଛନ) ଦେଖେଇ ହୁଏ (ଦେଖଉଛି) । [ବ୍ୟଙ୍ଗ]

୮ । ଶଙ୍ଖଚଲ କଲ (ଶଙ୍ଖଚକର) ବସା; ତୁମେ (ତୁମ) ଛାଡ଼ି ତୁମ ଗୁରୁ (ବାପା)ଙ୍କୁ ପଗ୍ଗର, କେଉଁ ଫଳ ଅଛି କଣ୍ଠା । [ନିଁଆ; କନ୍ଦମୂଳ]

୯ । ଶଙ୍ଖ ବାଜିଲ, ମହୁରୀ ବାଜିଲ, ବାଜିଲଣି ଯୋଡ଼ା କାହାଳୀ (ପଡ଼ୁଅଛି ହୁଳହୁଳି); ଗୋଷ୍ଠୀ ହାତ ପାନ ଝରି ଗୁଆଦ, ମନରୁ ଯିବ କି ଭୁଲି (କାଳୀ ପାନ ଗଲି ଭୁଲି) । [ଢଗ]

୧୦ । ଶଶୁର ଜୋଇଁ, ଶଳା ଭିଣେଇ, ତିନି ଖଣ୍ଡ କଂସା, ଖାଇବେ କାହିଁ ?

[କଥା ରଭଙ୍ଗୀ, ପ୍ରକୃତରେ ୩ ଜଣଙ୍କ ୩ ଖଣ୍ଡ କଂସା]

୧୧ । ଶାଳ ଶାଳୁଳୀ ବଦ୍‌ବଣ, ବିଚିଏ ବହୁଣୀ ଅକାରଣ । [ଢଗ]

୧୨ । ଶାଗ ଖରଡ଼ାକୁ ପଖାଳଭାତ, ମାରି ଦଉଥାଏ ପିହାଣ ହାତ । [ବ୍ୟଙ୍ଗ]

୧୩ । ଶାଗ ତୋଳି ତୋଳି ନଖା ଇ ନାହିଁ, କଳମ ଗଡ଼ିଆ ଦେଖେଇ ନାହିଁ ( ପଗ୍ଗରୁଛି, କଳମ ଗାଡ଼ିଆ କୋଉଠେଇଁ ? ) [ବ୍ୟଙ୍ଗ]

୧୪ । ଶାଗ ତୋଳୁ ଥି (ଥୋ)ଲ ପଛିଆରେ; ଲାହକେ ବସିଲ ଦଛିଆରେ ।

[ଗରିବଘର କନ୍ୟା ବଡ଼ଘରେ ବିଭା ହେବା ସମ୍ବନ୍ଧେ ବ୍ୟଙ୍ଗ]

୧୫ । ଶାଗ ଖରଡ଼ିଲ ପଡ଼ରେ ଜଳେଇ, ମର୍ଦ୍ଦିରେ ରହିଲ କଣ୍ଠା; ଦାନ୍ତକାଠି ଦିନ (ପାଞ୍ଚଣ ବାଡ଼ରେ) କି ମାଡ଼ ମାଇଲୁ, ପିଠିରେ ହେଲ ଘଣ୍ଟା । [ଢଗ]

୧୬ । ଶାଳଗ୍ରାମ; ଶୋଇବା ବସିବା ଏକା (ଏକ) ସମାନ । [ବ୍ୟଙ୍ଗ]

୧୭ । ଶାଶୁଏ ! କଅଁଫୁଲ ତୁମ୍ଭ ମୁଣ୍ଡ (ଣ୍ଡୁ)କୁ; ଘାଡଯାକ ହେଲ ବାଜୁରୁ ବାଜୁରୁ, ନ ଧାଇଲ ତୁମ ତୁଣ୍ଡ (ଣ୍ଡୁ)କୁ ।

[କଳାହିଡ଼ ଶାଶୁ ସମ୍ବନ୍ଧେ ବୋହୂର ଚକ୍ରା ]

୧୮ । ଶାଶୁଙ୍କ ସେବା ସାତ ଘର ଅନ୍ତର, ଶୋଇବା ବେଳକୁ ଦୁଇ ପ୍ରହର ରାତି ।
[ନୂଆ ବୋହୂର ଚିନ୍ତା ]

୧୯ । ଶାଶୁ ପାଣି କି ବୋହୂ ପାଣି, ଶାଶୁ କାଳୁଣୀ କି ବୋହୂ କାଣୀ । [ବ୍ୟଙ୍ଗ]

୨୦ । ଶାଶୁ ପାଳକି ବୋହୂ ପାଳି ଶାଶୁ ମାରୁଥିଲେ ଫାଳୁଆ ଗୁଣ୍ଡା, ବୋହୂ ଉଠେଇଲେ ଥାଳି ଥାଳି । [ବ୍ୟଙ୍ଗ]

୨୧ । ଶାଶୁ ନଣନ୍ଦଙ୍କ ଗଞ୍ଜଣା ଶୁଣି, କୁଣ୍ଡକୁ ଲୁଚି ଗଲେ ବଧାରଣୀ (ଦୁଲଣୀ) । [ବ୍ୟଙ୍ଗ]

୨୨ । ଶାଶୁ କାଣୀ (ଅନ୍ଧୁଣୀ) ବୋହୂ କାଣୀ, ନଣନ୍ଦ ଅଟିରେ ଫୁଲ; ଘର ଗୃହପାଖ ଖୋଜ (ଚୂଲ) ଅଇଲେ (ଆଇଲ), ନ ପାଇଲେ (ପାଇଲ) ଚୁନା କୁଲ । [ଢଗ]

୨୩ । ଶାଶୁ ଦୁର୍ଦ୍ଦାନ୍ତ ନଣନ୍ଦ ଝର, ଖୋଜୁ ଥାଏ ବୋହୂ (ବୋହୂ ଖୋଜୁଥାଏ) ପନ୍ତଆ (ବାପର) ଘର । [ଢଗ]

୨୪ । ଶାଶୁ ବୋହୂଙ୍କର ଠୋର କଳି; ବଣରେ ଝାଉଁନ୍ତି (ନଡ ଝାଉଁଥାନ୍ତି, ନଡ କରୁଥାନ୍ତି) ଦରୁ ଚକୁଳି । [ବ୍ୟଙ୍ଗ]

୨୫ । ଶାଶୁ ମାରୁ (ଗଞ୍ଜୁ) ଥାଏ ବୋହୂକୁ; ବୋହୂ ଗ୍ଲାନ ହୋଇ (ପୁଣି) କାହାକୁ ମାରିବ (ଗଞ୍ଜିବ) ? ମାରୁଥାଏ (ଗଞ୍ଜୁଥାଏ) ଚୁଲି ମୁହଁକୁ । [ଢଗ]

୨୬ । ଶାଶୁ ବୋହୂଙ୍କର ଠକାର କଳି, ନଡ କାଟନ୍ତି ଦୁଆର (କଳନ୍ତି ଦୁଆର); ଯେ ଯାହାର ସେ ତାହାର, କହିଲା ଲୋକ (କେ) ବାହାର । [ଢଗ]

୨୭ । ଶାଶୁ ମରିବେ କି ଯିବ ! ଯମନାଙ୍କୁ ଦେବ କଳା କହେଣି ଲୋ, ଦେଉଳେ ବାନ୍ଧିବ ନେତ, ମୋ ପ୍ରଭୁ ସେ । [ଉତ୍ପୀଡ଼ିତା ବଧୂର ମାନସିକ ]

୨୮ । ଶିଆଳ ଲଟା ! ଶାଶୁ ବୋହୂଙ୍କର ଲଟାପଟା । [ବ୍ୟଙ୍ଗ]

୨୯ । ଶିଆଳ ଖାଏ (ଖାଉଛି) ମୁଣ୍ଡ, ଝନ ବାଳ (ମାରି) ଯାଏ ତୁଣ୍ଡ । [ଢଗ]

୩୦ । ଶିବ ଦେବଥିଲେ କେତେ; ପିଲାଦିନ ଭାବ ଦାଣ୍ଡେ ଦେଲ୍ୟ (ସୁନ୍ଦର), ଚର କଳଦେଲ୍ୟ ମତେ । [ଢଗ]

୩୧ । ଶିରଣୀ ପୂଜା, ଖାଇଲା ବେଳକୁ କେଡ଼େ ମଜା । [ଦେବ୍ୟପାରି ପୂଜାର ନୈବେଦ୍ୟ ଶିରନି ପ୍ରତି ଲକ୍ଷ୍ୟ ]

୩୨ । ଶୁଖିଲା କାଠରୁ ପାଣି ବୋହିବ, ଅଣ୍ଡୁକୁଡ଼ୀ ନାରୀ ପୁଅ ବେଇବ (ପିତଳ କଣ୍ଢେଇ ପୁଅ ବେଳବ) (ଏ ଘରେ କଅଁଳା ପୁଅ ଖେଳିବ) । [ବନ୍ଧ୍ୟାର ଅନୁଚିନ୍ତା]

୩୩ । [illegible] ବାଇଡ ତାଲି ମୂଳ କଣ୍ଢ, ଫୁଲ ଫୁଟି ଥାଏ ରଙ୍ଗ; ତିହାନନ୍ଦୀର ମଥାରେ [illegible]; ଦୂରକୁ ଦିଶଇ ଡଙ୍ଗ । [ବ୍ୟଙ୍ଗ]

୩୪ । ଶୁଖିଲା ନଡ଼ିଆ କତା; ଏଠା ମାମଲତ (ଝଞ୍ଜଝାଞ୍ଜ) ପଟିବ ନାହିଁ (ନାହିଁ ପଟେଇବା, ନ ପଟତେଇବା), ଗୁଲ ଯିବା (ପଳେଇବା) କଲକତା । କଲକତାରେ ରହିବା ବହେଁ, କଣିବ ମହଣ ଛତା; ତତେ କଣିଦେବ ଭକେଇ ଶାଢ଼ୀ, ପିନ୍ଧେଇବ ସୁନାସୁତା । [ଢଗ]

୩୫ । ଶୁଖିଲା କାଠରୁ ବୋହିବ ପାଣି, ପୁଅ ଖେଳେଇବ କୋଡ଼ (ଳ) କୁ ଆଣି । [ବଧୂର ଚନ୍ତା ]

୩୬ । ଶୁଖିଲ ସୁଆ (ହା)ଗ ଲଗାନା, ଶୁଖିଲରେ ମତେ ରଗାନା (ଶୁଖିଲରେ ଆଖି ରଙ୍ଗାନା) (ଅଳତାରେ ପାଟି ରଙ୍ଗାନା) । [ଅଭିମାନ ବଚନ]

୩୭ । ଶୁଖୁଆ ଫଡ଼ାଏ କଏ ଖାଏ, କଏ ଘଷି ଫଡ଼ା ଘେନ ବସିଥାଏ (କଏ ଘଷି ଫଡ଼ା ଶୁଙ୍ଘୁ (ବା)ଉ ଥାଏ) । [ବ୍ୟଙ୍ଗ]

୩୮ । ଶୁକ୍ରଟା ଟାଏ, ଶୁଖିଲରେ ଦାନ୍ତ ନକୁଟାଟାଏ । [ବ୍ୟଙ୍ଗ]

୩୯ । ଶୁଦ୍ର (ଶୁଧ, ଶୁଧୁ) କପିଳା, ତାକୁ ଡ଼ରନ୍ତି ନଜେ ଖେଳା । [ଢଗ]

୪୦ । ଷାଠିଏ କାହାଣ ତନ୍ତ୍ରକୁ ଅଛୁ, ହରି ଭକଟ (ଭଗତ)କ କଡ଼ାଏ ନାହିଁ । [ବ୍ୟଙ୍ଗ]

୪୧ । ଷାଠିଏ ମହଣ ଘିଅ ହିବ ନାଁ, ରାଧା ନାଚବେ । [ବ୍ୟଙ୍ଗ]

୪୨ । ଷୋଳ (ଷୋହଳ) ହାତଅ ପିନ୍ଧା; ସ୍ୱାମୀଙ୍କ (ଯାଆନ୍ତ) ବଚନ ବଡ଼ ଶରଧା, ପାକଲ ଗାମୁଛା ବନ୍ଧା । [ବ୍ୟଙ୍ଗ]

୪୩ । ସଉତୁଣୀ ସନ୍ତ ହଉ (ସଉତୁଣୀ ହାତରୁ ଝଡ ଶୀତଳା ହଉ) (ସପତ୍ନୀଠଉ ଝଡୁ ବାହାରୁ), ଘଇତା ପନ୍ଥକେ ମରୁ । [ସପତ୍ନୀର ଈର୍ଷାକୁ ଲକ୍ଷ୍ୟ କରି ବ୍ୟଙ୍ଗ ]

୪୪ । ସକେଇ କାନ୍ଦିଲେ (କାନ୍ଦିବ କା ଆଗେ) ଶୁଣିବ କଏ ? ଶୁଣିଲେ ସେ ମତେ ମାରିବ ତଏ । [ଢଗ]

୪୫ । ସକାଳ (ସକଳ) ସୁଲଭ ଗଲା କେଣିକି; ଦୁଃଖ ହେଲେଣି ଚଢ଼ିଛୁ ଏଣିକି । [ଅନୁଚନ୍ତା]

୪୬ । ସକଳ ସମ୍ପତ୍ତି ଶିବାଙ୍କୁ ଦେଇ, ଶିବ ପଳେଇଲେ ଏକା (ନଙ୍ଗଳା) ହୋଇ । [ବ୍ୟଙ୍ଗ]

୪୭ । ସକାଳେ (ସଞ୍ଜେ) ଫୁଟି ସଞ୍ଜେ (ସକାଳେ)ଯା, ଜହ୍ନି ଫୁଲର ଆୟୁ (ୟୁ)ଷ ପା । [ପରିହାସ ବ୍ୟଞ୍ଜକ ଆଶୀର୍ବାଦ; ତୁ ଅଳ୍ପାୟୁଷ ହୋ ]

୪୮ । ସକାଳୁଁ ଉଠେ, ଗାଣ୍ଡି କଢେ (ଚେ) । [ନାଁ । ଦଆ; ହେଁସ]

୪୯ । ସକାଳୁ ଉଠେ, ଘର (ଝଣ୍ଟା) ଗୁରିପାଖ ବୁଲି ଆସେ । [ନାଁ । ଢଆ; ଗୁଣ୍ଡୁଣୀ, ବଢ଼ଣୀ ମୁଠା ]

୫୦ । ସକାଳୁ ରାନ୍ଧିଛୁ ଶାଗ ଭାତ; ଆସ ସ୍ୱାମୀ ଭୁଞ୍ଜ ଭାତ ( ଆସ ଖାଇବ ), ... । [ବ୍ୟଙ୍ଗ]

୫୧ । ସକେଇ କାନ୍ଦନ୍ତି ବାଗୁଆଡ଼େ, ଲୁହ ବୋହିଗଲା ( ଯାଏ ) ଗୁହ୍ୟଆଡେ । [ବ୍ୟଙ୍ଗ]

୫୨ । ଶଗଡ଼ ଡାକଇ କେଁ କଟର, ଅଙ୍ଗରେ ନାହିଁଟି କାଳି; କାଳୀ ଗୋସ୍ୱା ଦହେଁ ଗାଧୋଇ ଗଲେ ହଳଦୀ ମାଳପା କୋଳି । ଗାଧୁଆ ତୁଠରେ ପଦ୍ମରେ ବସି, ଘସି ମାଜି ହେଲେ ଦଗ୍ଧ; କାଳୀ ପଗୁରଇ ଗୋସ୍ୱା କେ, ବସୁଆସ କଥା କହ । [ବ୍ୟଙ୍ଗ]

୫୩ । ସଜବାଜ ହୋଇ ବସିଛୁ ଗୋସ୍ୱା, ବାପ ଘରକୁ ଯିବ କାଲି । [ବ୍ୟଙ୍ଗ]

୫୪ । ସଜନା ଗଛ ମୂଳେ କୁଢ଼େଇଲି ପାଉଁଶ, ତତେ ଦେବି ମୋର ଝିଅ ଶରଧା (ତୋଠେଇ ମୋର ଝିଅ ସିନାହ) [ପଦ୍ୟରେ ଉପଧା ବା ଶେଷ ଅକ୍ଷର ନ ମିଳିବା ବା ଅମିତ୍ରାକ୍ଷର ଛନ୍ଦପ୍ରତି ବ୍ୟଙ୍ଗ ଉଦାହରଣ ]

୫୫ । ସଜନା ଗଛରେ ବସିଛୁ ପେଚା, ହାତ ଗୋଡ଼ ନାହିଁ ମାଉଁସ ମେଞ୍ଚା । [ ନାଁ ଦିଅ; ଯୋକ ]

୫୬ । ସନ୍ତରୁ ନ ଥାଏ ହକାଳକୁ, ଟାକ ବସିଥାଏ ପଟାଳକୁ । [ବ୍ୟଙ୍ଗ]

୫୭ । ସତିଆ ପୁରୁଷ ମୁଣ୍ଡରେ ଜଟ; କୁଆ ହଗି ଦିଏ ଲଟପଟ (ଶୋଇ ପଡ଼ୁଥାଏ ଲଟ ଲଟ ) (ଛୁଣ୍ଡେଇ ଧକାଏ ରଟ ରଟ ) ( ଗୁହି ଦେଉଥାଏ ରଟ ମଟ ) । [ ମିଥ୍ୟାକୁ ସତ୍ୟ ବୋଲି କହୁଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ]

୫୮ । ସତୀ ଗଙ୍ଗେଇ, ସ୍ୱର୍ଗରେ ଯାଉଛୁ (ବୁଲୁଚି) ଟଙ୍କା ଭଙ୍ଗେଇ ( ହତ ମିତ୍ର କହୁଦିଏ ଲଟଗଇ ) । [ ମିଥ୍ୟାବାଦିନୀ ସ୍ତ୍ରୀ ପ୍ରତି ବ୍ୟଙ୍ଗ ]

୫୯ । ସତେ କି ସୁନ୍ଦରୀ ଆସିବ; ମଲ୍ଲୀଫୁଲ ମାଳ ତେଜ୍ୟା କରି ଧନ, କୁସୁମ (କଖାରୁ) ଫୁଲକୁ ରସିବ ? [ବ୍ୟଙ୍ଗ]

୬୦ । ସତୀ ଲୋ ! ସତେଇ ( ଭଲେଇ ) ହଉଛୁ କେତେ ! ତୋ ଘର ନିଆଁ ଅଗ୍ନିରେ ପୂରିଉ, ଖଟେଇ ହେଉଛୁ ମତେ । [ବ୍ୟଙ୍ଗ]

୬୧ । ସତେ ଏଡ଼େ କଥା (ଦିନ) ହବ । ବୋହୂ ବସିଥିବ ଖଟ ପଲଙ୍କରେ ପୁଅ କଥା କହୁଥିବ ( ପୁଅ ଶୋଇଥିବ ଖଟ ପଲଙ୍କେ, ବୋହୂ ଗୋଡ଼ ଘସୁଥିବ) (ଚଣ ଅମ୍ବୁ ପେଣ୍ଟି ଟଙ୍କା ହୋଇଥିବ, ପୁଅ ଗୁହି ଫେଳୁଥିବ) (ପାଞ୍ଚ ମାଇପରେ ଗଣା ହଉଥିବ, ବୋହୂ ଗୋଡ଼ ଘସିଦବ) । [ପୁତ୍ରବତୀ ସ୍ତ୍ରୀର ଭାବନା]

୬୨ । ସଜ ହୋଇ ଥାଅ, ଉଜାଗର ହୋଇ, ଦନ୍ତକୁ ନ ଦବୁ ପୀଡ଼ା (କରିଥାଅ ଠାଆ ପିଢ଼ା); ଆଜି ରାତିରେ ଭୋଜନ ପଡ଼ିବ, ନରସିଂହ ଦେବ ଚୂଡ଼ା (କଲାକରି ଧାନ ଚୂଡ଼ା): ସନ୍ଧ୍ୟାକୁ ଭୋଜନ ପଡ଼ୁଥିବ, ନାକଫୁଲଗୁଣା (କାନ ଫିଟିଫିଟି) ହଲୁଥିବ । [ଢଗ]

୬୩ । ସଢ଼ପ ଗଛର ( ନଡ଼ିଆ ଗଛର ) ଗଜା ଚଅଁର, ପବନରେ ଫର ଫର;
କାହାକୁ ଜବାବ ଦେଇଅଛୁ ବୋଲି (ବଚନ ଦେଇଛୁ ଗୋଟି),
ଯିବାପାଇଁ ତରତର (ହେଉଅଛୁ ଖରଖର) । [ବ୍ୟଙ୍ଗ]

୬୪ । ( ଏକଥା ମୋର ) ସତ୍ୟ; ସତ୍ୟ, ତିନିବାର ସତ୍ୟ ।
[ ଧର୍ମତଃ ପ୍ରତିଜ୍ଞା ବା ଶପଥ ]

୬୫ । ସପନ କଥାକୁ ସତ କରୁଛୁ (ମଣୁଛୁ), ବାଆକୁ କରୁଛୁ ଫାଶୀ;
ଆକାଶ ତରି (ସରଗ ଚନ୍ଦ)କୁ ଆଶା କରିଅଛୁ, ନପୁଂସ ପଢ଼ଇ
(ସତେକି ପଢ଼ିବ) ପରି । [ବ୍ୟଙ୍ଗ]

୬୬ । ସନମାନ (ସନାମନା) କରି ଗ୍ଲାଡ଼ିଲ ମତେ, ତା ପରି ବାନ୍ଧବ ନାହିଁ
ଜଗତେ (ଯୁଗତେ) । [ ବନ୍ଧୁଦ୍ୱାରା ସମ୍ମାନିତା ସ୍ତ୍ରୀର ପ୍ରଶଂସା ]

୬୭ । ସବୁ ତରକାରି ହାଟକୁ ଗଲେ, କାଞ୍ଜିକ ଗାଁଅଁରେ ଗ୍ଲୁଡ଼ି ଅଇଲେ;
ତହୁଁ କାଞ୍ଜି ଗଲା ଖରେ, ଯାଇ ପଶିଲା ଚଷା ଘରେ, ଏବେ ଗୃହିଣୀ ଦେଲେ
ଚଷା, କାଞ୍ଜିକି ମାଇଲେ ଜୁଆଳ ପଶା । [ ହାସ୍ୟତରଙ୍ଗ, କାଞ୍ଜି ଗୀତ ]

୬୮ । ସବୁ ଆଢ଼ୁଆରେ ଜିତା; ସନ୍ଧ ବାଢ଼ି (ରନ୍ଧା ଜଡ଼ା, ରନ୍ଧା ରନ୍ଧ) କରି ଥୋଇ
ଦେଇଥା, ଖାଇଲେ ଲାଗିବ ମିଠା । [ ଶାଶୁର ବୋହୂ ପ୍ରତି ବ୍ୟଙ୍ଗ ]

୬୯ । ସବୁ ଜାଣନ୍ତି (ଜାଣେ), ବେହ୍ନଇତାର ନାଁ ନ ଜାଣନ୍ତି (ଜାଣେ) ।
[ ସ୍ତ୍ରୀ ସ୍ୱାମୀର ନାମ ଉଚ୍ଚାରଣ କରିବାର ନିଷେଧ ଥିବାର ସ୍ତ୍ରୀ ପ୍ରତି]
[ବ୍ୟଙ୍ଗ]

୭୦ । ସବୁ ତୋର (ତୁମ୍ଭର), (କାନ୍ଧରେ ହାତ ଦବୁ (ଦବ) ନାହିଁ । [ବ୍ୟଙ୍ଗ]

୭୧ । ସବୁ ତୁମ୍ଭର, କାନ୍ଧିରେ ହାତ ନ ଦବ (ଦେବ) ଆମ୍ଭର ।
[କୌଣସି ବ୍ୟକ୍ତିକୁ ଅନ୍ୟ ବ୍ୟକ୍ତି ସବୁ ସମ୍ପତ୍ତି ଅର୍ପଣ କରି ଦେବା;
କିନ୍ତୁ ବ୍ୟୟ କରିବାର କୌଣସି ଅଧିକାର ଦେଇ ନ ଥିବା ସ୍ଥଳରେ
[ବ୍ୟଙ୍ଗ]

୭୨ । ସବୁ ଦେବର ଯାକ କେଦାରଶ୍ୱରରେ ରୁଣ୍ଡ । [ବ୍ୟଙ୍ଗ]

୭୩ । ସବା (ସ୍ୱା) ଝିଅ ଜେଜା; ତାର ନ ଥାଏ ବେଳା (ମଳା), ତାକୁ
ଗୋଡ଼େଇ ଗୋଡ଼େଇ ଚଳା, ଆରେ ଦେଶ ଛୁଡ଼ି ପଳା । [ବ୍ୟଙ୍ଗ]

୭୪ । ସବା (ସ୍ୱା) ବାଳୁଆ, ବେଣ୍ଟି ରଖିଛୁ । [ବ୍ୟଙ୍ଗ]

୭୫ । ସମସ୍ତେ ତ ଯୋଗୀ ହେବେ (ହେଲେ) ଭିକ ଦବ (ଦଉଛୁ) କିଏ ?
[ବ୍ୟଙ୍ଗ]

୭୬ । ସରୁ ସରୁ କପାଝାଟି, ପିତଳର ଘଣ୍ଟି; ସରଗ ଲୋକେ ବାଣ ମାଇଲେ, ଲଙ୍କା ଗଲା ଫାଟି । [ ନାଁଦିଆ, କପାଗଛ ଓ ବକଡ଼ା ]

୭୭ । ସବୁ ସୁନ୍ଦର କଉଡ଼ି; ମିତ୍ରକୁ ଆଣେ, ଶତ୍ରୁକୁ ଦିଏ ଘଉଡ଼ି । [ଢଗ]

୭୮ । ସବୁ ଗୁଣେ (ଗୁଣରେ) ପରିପୂର୍ଣ୍ଣ । [ବ୍ୟଙ୍ଗ]

୭୯ । ସବୁ ଗୁଣେ କେଶୋଣ୍ଟି (କଶୋଣ୍ଟି); ଆଉ ଗୁଣେ ଥି (ଥୋ)ଲେ, ସାଆନ୍ତେଣି ଲେସଡ଼ି (ଲେସେଡ଼ି) । [ବ୍ୟଙ୍ଗ]

୮୦ । ସରଗରୁ ପଡ଼ିଲା ଟେକାଟିଏ, ତା ମୁଣ୍ଡରେ ଟୋପାଟିଏ ।
[ ନାଁ ଦିଆ, ପାଚିଲା ତାଳ ]

୮୧ । ସ (ସ୍ୱ)ରଗରୁ ପଡ଼ିଲେ ଭାଇ ଭଉଣୀ, ସୁନାର କଣ୍ଠା ଲାଇ (ନାଇ), ଯୋଉଁ (ଯେଉଁ) ଗଛରେ ରହଣି (ବସା) କଲେ, ସେଥିରେ ( ତେହିଁରେ ) ପତର ନାହିଁ ।
[ ନାଁ ଦିଅ; ନାଗ ଫେଣିଆ ଓ ଘି କୁଆଁରି ]

୮୨ । ସ (ସ୍ୱ)ରଗରୁ ପଡ଼ିଲା ଦାନ୍ତୁରୀ ଟୋକା, ତା ଦନ୍ତ ଢାକ ଗୋପି ।
[ ନାଁ ଦିଅ; ମକ୍କା ]

୮୩ । ସବୁ ଦଉଡ଼ି ସରୁଳ, ଫିଟେଇ ଦେଲେ ମଣ୍ଡୁଳ ।
[ ନାଁ ଦିଅ; ନଡ଼ିଆ ]

୮୪ । ସନ୍ଧ ଯା ରେ ମନ ସନ୍ଧ ଯା; ଝୁଣ୍ଟିଆ ପଥୁରି କାନଶିରି ଶାଗ, ଯେ ଯାହା ଦେଲା ଖାଇଯା । [ଢଗ]

୮୫ । ସାଆନ୍ତଙ୍କ ଝିଏ ବଡ଼ ଜିତା (ଜଗଜିତା); ହସେଇ ଦିଅନ୍ତି କାପ ମଲକଟି, ଦେଖେଇ ଦିଅନ୍ତି ବାହାଚଟା ।
[ ଅଣ୍ଡିରଚଣ୍ଡୀ ବଡ଼ଘର ଝିଅଙ୍କ ସମ୍ବନ୍ଧେ ବ୍ୟଙ୍ଗୋକ୍ତି ]

୮୬ । ସାଆନ୍ତପଣକୁ ଯୋଗ୍ୟ ନୁହନ୍ତି, ଓଳିକି ନ ହେଲେ ଚୁଟନ୍ତି । [ବ୍ୟଙ୍ଗ]

୮୭ । ସାଆନ୍ତାଣୀଙ୍କ ମୁଣ୍ଡର ଗନ୍ଧ, ଯେଣିକି ଟଳିଲା ତେଣିକି ଶୋଭ ।
[ ବଡ଼ଲୋକଙ୍କ ସମ୍ବନ୍ଧେ ବ୍ୟଙ୍ଗ ]

୮୮ । ସାଆନ୍ତଙ୍କ ପାଇଁ ମୁନ୍ଦିଏ (ନ ଥାଏ) ପାଣି, ଭଣ୍ଡାରୀ ପାଇଁ କି ଠେକିଏ ଆଣି ।
[ବ୍ୟଙ୍ଗ]

୮୯ । ସାଆନ୍ତ (ସାଆନ୍ତେ) ବାଟରୁ ଉଠ, ସାଆନ୍ତାଣୀ ଯିବେ ହାଟ (ହାଟକୁ) ।
[ବ୍ୟଙ୍ଗ]

୯୦ । ସାଆନ୍ତେ ଯିବେ ବରଯାତ୍ରୀ, ଗାଁଆ ଗାଁଆ ପଡ଼ିଛି ଡକରା । [ବ୍ୟଙ୍ଗ]

୯୧ । ସାଆନ୍ତଙ୍କ ଘର ଢ଼ମ ଦେଖ, ପେଜପିଆ ଠେଇଁ ବାଜୁଚି ଶଙ୍ଖ । [ବ୍ୟଙ୍ଗ]

୯୨ । ସାଇ ପଡ଼ୁଶୁଣୀ ନାହିଁ କି ? କାନ୍ଥକୁ ବୁଝା (ବୁଝେ)ଇ କହୁ କି ! କିସ ଦେଇଚନ୍ତି ମତେ ? ଖୁଣ୍ଟଧର କ (କି)ଶ ପୁଅ ବେଇ ଅଛୁ, ଧାରକ ହଉଛି (ସେ) ମତେ ।
[ ପ୍ରସୁପ୍ତ ବଧିର ଅନୁଚନ୍ତା ]

୯୩ । ସାତକୁ ହେଲି ସତର; ଶାଶୁ ଥାଉଁ ଥାଉଁ ନଣନ୍ଦ ଗର୍ଜିଲି, ମଲିଟି ମୁହିଁ ଏଥର ।
[ଅନୁଚନ୍ତା]

୯୪ । ସାତକାଣ୍ଡ (ଖଣ୍ଡ) ରାମାୟଣ ସରିଲାଣି (ବଢ଼ିଲାଣି), ସୀତା ମାଈ କି ଅଣ୍ଡିରା ପଚାରୁଛୁ ।
[ବ୍ୟଙ୍ଗ]

୯୫ । ସାତ ପାହୁଲିଆ ନାଆଁ (ହା)କୁ, ସନ୍ତ୍ରା ମଙ୍ଗଧର (ବାହ୍ମଣ କାଚିଆ; ମଙ୍ଗୁଆଲ) ।
[ବ୍ୟଙ୍ଗ]

୯୬ । ଯାତ ଚକଟା, ପୋଲୁହ ଘଣ୍ଟା, ତଭୂତ ଭୂଷଣ ଗାଲସି ( ଢ ଗାଲ ) କଟା ; ଚିଲ ପ୍ରସାଦେ ତିନି ଭୁବନ (ମୁଁ ଦରଗ) ଦେଖିଲି, ମତେ ଡର (ର)ଉଛୁ ବନସି କଣ୍ଟା । [ ଶେଉଳ ମାଛ ଯେଉଁ ଗାଡ଼ିଆରେ ଥିଲା ସେ ଗାଡ଼ିଆକୁ ଲୋକେ ହାତଥର ଚକଟା ଚକଟି କରି, ପୋଲୁହରେ ତାକୁ ଧରି, ଘରକୁ ନେଇ ତା ଦହରେ ପାଉଁଶ ବୋଲି ତାହାର ଗାଲ ପନକରେ କଟା ହେବା ପରେ, ତାକୁ ଚିଲ ଝାମ୍ପି ନେଇ ଉଡ଼ି ଯାଉଥିଲା; ସେ ଚିଲର ପଞ୍ଝାରୁ ଖସି ପାଣିରେ ପଡ଼ିଲା, ଏପରି ଅନୁଭବୀ ଶେଉଳ ମାଛକୁ ବନଶିଆ ଯାଇ ବନଶିରେ ଧରିବାକୁ ଚେଷ୍ଟା କରିବାରୁ ସେ ମାଛ ବନଶିଆକୁ ବ୍ୟଙ୍ଗ କରି କହୁଅଛି ]

୯୭ । ସାତତାଳ ପାଣିରେ ଛଅତାଳ ପଙ୍କ, ସେଥିରୁ ବାହାରିଲା ମୂଷଳିଆ ତମ୍ପ; ମୂଷଳିଆ ତମ୍ପର ଷୋଳ ଗୋଟି ଛୁଆ, ଏ କଥାଟି କହିଦବ ପଣ୍ଡିତଙ୍କେ ପା ଠୁଆ ।
[ ନାଁ ଢିଆ; ବଡ଼ାଦନ୍ତ ଓ ଦନ୍ତ ମୋହିବା ଖୁଆ ]

୯୮ । ସାତ ତିଅଣ ଆଠ ଭଜା, କୋଇଁ ଡାକରରେ ଭାରି ମଜା । [ ଅନୁଚନ୍ତା ]

୯୯ । ସାଆନ୍ତ ରତନ (ମଉଡ଼) ମଣି ! ବରଷ (ଷେ)କେ ଥରେ ପଚାରୁ (ଶଙ୍କୁ) ଥାଆନ୍ତୁ, କୁଟୁମ୍ବ କେତେ ପରାଣୀ ।
[ବ୍ୟଙ୍ଗ]

୧୦୦ । ସାପ ନ ମରୁ ବାଡ଼ି ନ ଭାଙ୍ଗୁ । [ ବ୍ୟଙ୍ଗ; ସାପକୁ ମାରିବାକୁ ଯାଇ କାଟିଲା ବଡ ଘାଏଁ ସାପକୁ ବାଡ଼େଇ ଦେଲେ ବାଡ଼ି ଖଣ୍ଡି ଭାଙ୍ଗିଯିବ, ବାଡ଼ି ପ୍ରତି ଲୋଭ କରିବା ସ୍ଥଳରେ ]

୧୦୧ । ସାହୁ କରଜାଟି କେଡ଼େ ମଜା, ତବତ (ତତକି) ଭାତକୁ ବାଇଗଣ ଭଜା ।
[ବ୍ୟଙ୍ଗ]

୧୦୨ । ସାରୁ ମୁଣ୍ଡା ରାଇତା, ଯେତକି ଖାଇବୁ ଝାଇଥା । [ବ୍ୟଙ୍ଗ]

୧୦୩ । ସାରୁଆଟାଏ, ମାରୁଆ ଅଣ୍ଡିରା କାଉଁଆ (କାଉଆ)ଟାଏ । [ବ୍ୟଙ୍ଗ]

୧୦୪ । ସାହୁଘର ପୁଅ ହୋଇ ଭିକ ମାଗୁଛୁ । [ବ୍ୟଙ୍ଗ]

୧୦୫ । ସାହୁ ତ ରୁଷୁଛୁ (ରୁଷିଲ) ସାହୁ ପଣକୁ, ଝାଡକ ରୁଷୁଛୁ (ରୁଷିଲ) କେଉଁ (କୋଉ) ଗୁଣକୁ । [ବ୍ୟଙ୍ଗ]

୧୦୬ । ସିନ୍ଦୁକ ଭିତରେ ପେଟରା; ପେଟେରା ଭିତରେ ସୁନା ଫରୁଆ, ତା ଭିତରେ ଝପରା । [ବ୍ୟଙ୍ଗ]

୧୦୭ । ସି (ଶି)ରେଇ କଣାସ ସହନା, ଏ ତନି ଗାଁ କଥା କହନା, ଯେବେ କହିବୁ ଦୋକନ୍ଦା, ଦ'ଗାଲେ ଖୀଇବୁ ଦ ଖୁନ୍ଦା, ଡମ୍ଭିଶ ଗାଁରେ ଡମ୍ଭ ବୁଝାମଣା, ପସିଅପଡ଼ାରେ ରହ ନା । [ ଶିରେଇ, କଣାସ, ସହନା, ଦୋକନ୍ଦା, ଡମ୍ଭିଶ, ପସିଆପଡ଼ା ନାମକ ପୁଷ୍ପଜଳ ଶିରେଇ ପ୍ରଗନାରେ ୬ ଖଣ୍ଡି ଗ୍ରାମ ସମ୍ବନ୍ଧେ ସ୍ଥାନୀୟ ଢଗ ]

୧୦୮ । ସାରୁ ପତର କ ଅଳୁ ପତର, ସେକ ହୋଇବ ପାନ ? ପଛରେ ଯାହାକୁ ଷାରଯା (ଗେରସ୍ତ) କରବ, ସେ କ ଜାଣିବ ମନ ? [ଢଗ]

୧୦୯ । ସିଆଡ଼େ ଗଲ, ଇଆଡ଼େ ଗଲ, ତାଳଗଛ ମୂଳେ ହାବୁଡ଼ି ଗଲ; ତାଳଗଛ ମୂଳେ ତ(ତେ)ମଣା । ତୁ ଯାହିଁପାଇଁ ନଅର ପଅର; ତତେ (ତେତେ) କଏ ଦବ ମାଗଣା ? [ଢଗ]

୧୧୦ । ସୁନା ଥାଳପଟ ମାଜ ରଖିଲ, କାଳ କଏ ନେଇଗଲ; ଖଉଜ ସାଙ୍ଗରେ ଜବାବ କଲ, ଗାଧୋଇବା ବେଲ ଗଲ (ଗ୍ରୁକ ଆସି ଲେଉଟିଲ) । [ଢ଼ଗ]

୧୧୧ । ସୁଆଦ ନାହିଁ କ ଶବଦ ନାହିଁ, ଟାଇକଣା ପାଣି । [ଟାଇକଣା ଗ୍ରାମବାହୀ ପାଣି ଉପାଧ୍ୟାଙ୍କ ବ୍ରହ୍ମଣକୁ ପରିହାସ ]

୧୧୨ । ସୁନାପର ଝିଅକୁ କୋଇଁଠି କାକିଆ । [ ମାତାଙ୍କ ଅନୁଚିନ୍ତା ]

୧୧୩ । ସୁନାରଘାଇ ବାଉଁଶରେ (ଢେଙ୍କାନାଳ ବାଉଁଶରେ) ଦରୁ ଦରୁ ପୋଲ; ମୂଲିଆ ଘରର ଝିଅଟି ପାଇଛୁ, କରୁଥାଇ କେତେ ଗେଲ ! ଡିଙ୍କିରେ କୁଟଇ ଗୋଲମରିଚ, ପାଆରେ ମାପଇ ଘିଅ; ମତେ କହୁଥାଇ ମୂଲିଆ ଝିଅ, ତୁ କୋଉ ଜମିଦାର ପୁଅ ? [ବ୍ୟଙ୍ଗ]

୧୧୪ । ସୁନାମୁହିଁ ଘରକୁ ବେଗୁନିଆ ଡାଟି । [ବ୍ୟଙ୍ଗ]

୧୧୫ । ସୁନା ରୂପାରେ ପିନ୍ଧୁଲା କରି 'ଚଣ୍ଡୀ' ବୋଲି ଡାକ ଦେଲେ ନଣ୍ଡ ['ଚଣ୍ଡୀ'ଙ୍କ ପ୍ରତି ବ୍ୟଙ୍ଗ]

୧୧୬ । ସୁନାର ପଥର ବାଟି । [ବଙ୍ଗଳା ଢ଼ଗ; ଅସମ୍ଭବ ଦ୍ରବ୍ୟ]

୧୧୭ । ସୁନ୍ଦର ଟିଏ ! ଲଙ୍କାପୋଡ଼ା ବାନ୍ଦର ଟିଏ । [ବ୍ୟଙ୍ଗ]

୧୧୮ । ସୁନ୍ଦର ପଣକୁ ପନ୍ଥାନ୍ତର ନାହିଁ; ବନ୍ଧୁ ( ଯମ ) ଗଡିଅଛୁ (ଥିଲ, ଥେଲ), ସାପ ଦ ( ଦୁ ) ହୁଡ଼ ଲଗା ( ଗେ ) ଇ ( ଖଜୁର ଗଛକୁ ଚଢ଼ିଁ ) । [ ଅସୁନ୍ଦର ବ୍ୟକ୍ତି ପ୍ରତି ବ୍ୟଙ୍ଗ ]

୧୧୯ । ସେକାଳ ପଖାଳ (କଥା) ଗଲାଣି; ଗଜ କପାଳରେ ସିନ୍ଦୂର ମଥାଏ, ଠାଏ ଠାଏ ବିଷ ମଲାଣି ।
[ଢଗ]

୧୨୦ । ସେକାଳ ପଖାଳ ଗଲାଣି ( ଆଉ ନାହିଁ ) । [ବ୍ୟଙ୍ଗ; ପୂର୍ବର ସୁଖ ଆଜ ନାହିଁ ]

୧୨୧ । ସେକାଳ ପଖାଳ ଏ କାଳକୁ ନାହିଁ, କାଳିଆ ( ହଳିଆ ) ବଳଦ ମିଳଇ ନାହିଁ (କାହିଁ) ।
[ଅନୁଚିନ୍ତା]

୧୨୨ । ସେ କେଉଁ (କୋଉ) ଦିଅଁ ( ଠାକୁର, ଦେବତା ) ଙ୍କ ମୁଣ୍ଡରେ ହଗି ନାହିଁ ଯେ, କିଏ ତାଙ୍କୁ ବର ଦେ (ଦ) ବ ?
[ବ୍ୟଙ୍ଗ, କୁଆ]

୧୨୩ । ସେ ଘରର କହିବି (ବଳିବ) କେତେ ( କସ ) ଗୁଣ, ଜଣ ଜଣ (ଣେ) କେ ଦିଅନ୍ତି ଯେତେ (କେତେ) କହଣ ।
[ଶାଶୁଘରୁ ବାପଘରକୁ ପ୍ରତ୍ୟାଗତା କନ୍ୟାର ଉକ୍ତି]

୧୨୪ । ସେ ଯେଣିକି ଯାଉଛି ଫଳାଇ, ତାକୁ ଦେଖିବ ନଉଛି କହ୍ନାଇ (ଝଡ଼ାଇ) ।
[ଢଗ]

୧୨୫ । ସେବତୀ ଫୁଲ ଫୁଟିଲା; ତୋଳିବୁ ଯେତେଇ କି ବୋଧ ଦେଲ, ସକାଳୁ ହେତୁ ବଢ଼ିଲ (ଦିନ ରାତି ନାଆଁ ରହିଲ) ।
[ଢଗ]

୧୨୬ । ସେବେ ଡାକୁଥିଲେ ଯଶୋବନ୍ତୀ ରାଣୀ, ଏବେ ଡାକିଲେ ବାଡ଼ି ଆଡ଼ ବାଉରାଣୀ ।
[ବିଧବାର ଅନୁଶୋଚନା]

୧୨୭ । ସେ ଯୋଉଁ ଧଳା ଟୋପିକ—ସେ ଯୋଉଁ କଳା ଟୋପିକ; ପିଚିକା (ପୁରୁକା) ଗାଲକୁ ମାରି ଖାଉଛି, ନାସାର ବସୁଣୀ ଟିକିକ ।
[ବ୍ୟଙ୍ଗ]

୧୨୮ । ସେବାକରି ନିରନ୍ତର, ପଳେଇ ଯିବୁ (ବ) ଦୂରନ୍ତର (ଦେଶାନ୍ତର ।
[ପ୍ରବାସୀ ସ୍ୱାମୀ ପ୍ରତି ବ୍ୟଙ୍ଗ]

୧୨୯ । ସୋରିଷ ଫୁଲ, ସୋରିଷିଆ ହାର ଅମୂଲ ମୂଲ ।
[ଢଗ]

୧୩୦ । ସ୍ତ୍ରୀଙ୍କି ନ ବୋଲିବ ଅବଳା, ନଶା (ନିର୍ଜନ) ବାଟରେ କାଟିନ୍ତି ଗଳା ।
[ଢଗ]

୧୩୧ । ସ୍ତ୍ରୀ ଗୁଣ (ପଣ) ତୋର ପୋଡ଼ୁ; ମାଛଧରା ଯାକରେ ଖାଉ ନଉଛୁଣି (ଅଚ ଅଲେଟଣୀ), ଶୀତଳେଇ ହଉ ଝଡ଼ୁ ।
[ସଧବା ସ୍ତ୍ରୀର ହାତରୁ ଖଡ଼ୁ ଯେହ୍ଲାଇବାର ନିଦେଶକୁ ଲକ୍ଷ୍ୟ କରି]

୧୩୨ । ସ୍ତ୍ରୀ ପୁରୁଷ ଭେଟାଭେଟି ନାହିଁ, ପୁଅ ଝିଅ ଘରକୁ ଗଉଳ ବର୍ଣ୍ଣ ହଉଛି ।
[ବ୍ୟଙ୍ଗ]

୧୩୩ । ସ୍ୱୟଂ କର୍ତ୍ତା କଟକ ଯାଏ, ଭଣ୍ଡାଙ୍କ ହାତରେ ଲେଖା ପଠାଏ (ଚିଠାଉ ଦିଏ) ।
[ବ୍ୟଙ୍ଗ]

୧୩୪ । ସେତେବେଳେ ଗୁଡ଼ିଲ ମୁଁ ଉଧାର ମାଗିଲି, ପଛରେ କହିଲେ ବସ; ଜାଲ ଜଳିଗଲା (ସରିଗଲା) ଜଳ ମରିଗଲା, ତେବେ ନ ପୂରିଲା ଆଶ । [ବ୍ୟଙ୍ଗ]

୧୩୫ । ସେ (ଏ) ପାରିରେ ସୁନାରି (ବଉଳା) ଗଛ, ଏ (ସେ) ପାରିରେ ଗ୍ରାଛ; ପଛରେ ଛପଡ଼ି ଛୁଡ଼ା କଲି, ଏଇ କଥାଟା ପାଇଁ (ମୁହଁ ଦେଖିବାପାଇଁ, ଗାଲ ଚୋବାଡ଼ିବାପାଇଁ) । [ଢଗ]



ହ

୧ । ହଇରେ ବନ୍ଧୁ ! ବାଡ଼ି ଆଡ଼େ ବସି କାହିଁ କାନ୍ଦୁ ? [ବ୍ୟଙ୍ଗ]
୨ । ହଇଲେ ହେ ! ବରିକ ଗୁଡ଼ିଲ ଡମ୍ବେଇ ଦେ । [ବ୍ୟଙ୍ଗ]
୩ । ହଇଲେ ସଣ୍ଡି ! (ଭୁଦୁ) ଭଜ ମତେ, ଘରୁ ଚୂଡ଼ା ଦେବି ଉଖୁଡ଼ା ହାତେ (ମକୁନ୍ଦ ଉଖୁଡ଼ା ଦେବି ତୋ ହାତେ); ଚୂଡ଼ା ଉଖୁଡ଼ା (ମକୁନ୍ଦ ଉଖୁଡ଼ା ଖାଉଥିବୁ) କାଳିଯାକ ଯଶ ଗାଉଥିବୁ । [ବ୍ୟଙ୍ଗ]
୪ । ହଗି ଧାଇଁଥାଏ ଛୁଟୁ ଛୁଟୁ, ଖେଳେ ହଉଥାଏ ଛୁଟୁପୁଟୁ । [ବ୍ୟଙ୍ଗ]
୫ । ହଗିଲା ଲୋକକୁ ଲଜ ନାହିଁ, ଦେଖିଲା (ଦେଖିଲା) ଲୋକକୁ ଲଜ ! [ବ୍ୟଙ୍ଗ]
୬ । ହଗିଲା ଠେଇଁ ମସାଲ ଧରା ନଉଚ ! [ବିଦ୍ରୂପୋକ୍ତି—ହମ୍ବଦ ଦେଖାଇ ହଉଛୁ]

୭ । ହଗୁରା ଗୁରୁଙ୍କ ପାଉଡ଼ା (ପାଡ଼ୁରା ଶିଷ୍ୟ) । [ବ୍ୟଙ୍ଗ]
୮ । ହଜିଗଲେ ଖୋଜିବାକୁ ନାହିଁ, ଭାଙ୍ଗିଗଲେ ଗଢ଼ାଇବାକୁ ନାହିଁ, ଛିଣ୍ଡିଗଲେ ଗଇଣ୍ଠେଇବାକୁ ନାହିଁ । [ଏକାକୀ ଲୋକର ଅନୁଚିନ୍ତା]
୯ । ହଜମ ବଟି, ଗୁନ୍ଦବାଲି କଥା (ତିନିଟି କଳା ମାଡ଼, ଠିଆ ଗୋଇଠାକ, ବାଙ୍କ ବୁହାଁଣିକ) ମନ ଥିବଟି ? [ଢଗ]
୧୦ । ହଟହଟା; କୁଆ କୁଟା । [ଗାଳି]
୧୧ । ହଟହଟେଇ, ଚୂନା କୁଟେଇ ! [ଗାଳି]

୧୨ । ହଟହଟା, ଶାଗରେ ମରିଚ ଗୋଟା ଗୋଟା । [ବ୍ୟଙ୍ଗ]

୧୩ । ହଟ ହଟିଆ (ନଟ ଘଟିଆ, କର୍ଣ୍ଣରୁ ଫୁଳିଆ) ନାଗର ! ସଙ୍କେତ ଦେଇ କା'ପୁରେ ରହିଲୁ, ଘତ ହେଲ ଉଜାଗର (ମିଛରେ ଜାଗିଲି ଜାଗର) । [ଅନୁଚିନ୍ତା]

୧୪ । ହଟ ହଟେଇ ! ମହିଁ ଦାଣ୍ଡରେ ହଉ ଫଟେଇ (ଝଟେଇ) । [ଗାଳି]

୧୫ । ହଟିଆ ଟାଏ ! ସାଙ୍ଗରେ ଆଣିଛୁ ଝଟିଆ ଟାଏ (ଗ୍ରୁଟିଆ ଟାଏ) । [ବ୍ୟଙ୍ଗ]

୧୬ । ହଡ଼ା ହେଗେଇଲୁ, ନାଁ, ମତେ ଯୋଗେଇଲୁ । [ବ୍ୟଙ୍ଗ]

୧୭ । ହନ୍ତୁଣୁ, (ଟିକାଏ) ଟାହିଲି କଥାରେ ରୁଷୁ, ଝଟଡଳେ (ଘର କୁଣେ) ଯାଇ ବସୁ; ଟିକଏ ଆଦର କଲେ ପୁଣି କେତେ ମୁରୁକି ମୁରୁକି ହସୁ । (ଟିକଏ ନହିଁଏ ଆଦର କଲେ କେତେ ମୁରୁକେଇ ହସୁ) । [ଡଗ]

୧୮ । ହମାଳି ପଶିଲା ହଳୁଆ (ଦୁହିଁାଳୀ) ଗାଈ, ଗୁହାଳ ଡାଟିକି ଦିଅ ଲଗାଇ । [ଡଗ]

୧୯ । ହରିଦାସଙ୍କର ବାଜିଲା ଘଣ୍ଟ, ଦେଖିଲା ବେଳକୁ ଡାଟିଆ କଣ୍ଟ ! [ବାହ୍ୟାଡ଼ମ୍ବର ଲଘୁକ୍ରିୟା; ବ୍ୟଙ୍ଗ]

୨୦ । ହବ ନାହିଁ, ହବ; ନାହିଁ; ଡେଙ୍ଗେଇ (ନଳୀ) ଗୋଡ଼ରେ ସରୁ ଅଳତା କେବେଁ ଦବ ନାହିଁ ଦବ ନାହିଁ । [ଡଗ]

୨୧ । ହରି ଜନମ, ବାପ ବେହା (ବନ୍ଧ) କାଳେ ପୁଅ ଜନମ । [ବ୍ୟଙ୍ଗ]

୨୨ । ହରି ହରି ବୋଲ (ବଲ) ଏବେ (ଏବେ) ପାଲି ହାଲିଲା ସାସୁ (ଏ) । [ପାଲି ଗୀତର ଭଣିତା]

୨୩ । ହଳିଆଟାଏ; ହଳିଆ ପଛକୁ (ଯାଙ୍ଗକୁ) ତଳିଆଟାଏ । [ବ୍ୟଙ୍ଗ]

୨୪ । ହସ ଗୋଟା କେତେ ହସିଲା, ହସ ରହିଲା ନାହିଁ, ବହୁତ ଗଞ୍ଜଣା ସହିଲା (ଝାଇଲା), ସେହି ହସର ପାଇଁ । [ହସୁଆର ଅନୁଚିନ୍ତା]

୨୫ । ହସିଲା ବେଳକୁ ମୁକୁତା (ମୁକ୍ତାପନ୍ତି) ଝଡ଼ୁଛି । [ବ୍ୟଙ୍ଗ]

୨୬ । ହସିଲେ ରସେ, ଦାନ୍ତ ନକୁଟିଲେ କଉଡ଼ି ବସେ । [ଡଗ]

୨୭ । ହଳଦୀ କାଠୁଆ କମ; ଖଟବଡ଼ଲ ଧନ ଗୃହିଲେ ବାଟ ହେ, ଗୋଡ଼ରେ ପାତଳ ଚମ; ମୋ ପ୍ରଭୁ ହେ । [ବିଦେଶରେ ରହୁଥିବା ପୁନ ବା ସ୍ୱାମୀ ସମ୍ବନ୍ଧେ ଅନୁଚିନ୍ତା]

୨୮ । ହଳଦ ଗରଗର (ଘୁରୁଘୁରୁ) ସୁନ୍ଦର ଦେହ, ନାକ ଚମ ଧଡ଼ିରେ ତୁ ଉକୁଚ ହୁଅ । [ନାଁ । ଦିଆ; ନାକର ଗୁଣା, ବହଣୀ ଲୋଥ]

୨୯ । ହସ ହସ ହୋଇ କହୁଛୁ କଥା, ଚୁଟଣ୍ଡେଇ (ବଟଁାଇ, ବଟେଇ) ଦେଉଛୁ ମରମ; ଭିତରେ ଭିତରେ ମାଦା ହେଉଅଛୁ, ସାକ୍ଷୀ ଅଛୁ, ଏକା ଧରମ । [ଡଗ]

୩୦ । ହଂସପାଦୀ ଲୋ ନଳଗୋଡ଼ୀ ! କଥା କହୁ ଥାଉ ବଟି ବଟି । [ଗାଳି]

୩୧ । ହଳଦୀ ଗରଗର ଘମ ଘଷୁଛ, ଘରେ ଭାତ ନାହିଁ ପୁଅ ବହୁତ । [ନା ଦଆ; ପାଚଲ ପଣସ]

୩୨ । ହଳଦୀ ମାଲପା ଦେଲ କିଏ ? ପୁଅକୁ ଗେଲ କରୁଛୁ କିଏ (ଦୋଳ ପହୁଞ୍ଚଉଛୁ କିଏ) ? [ବ୍ୟଙ୍ଗ]

୩୩ । ହଳଦୀ ମାଲପା ଦେଖା ତ ନ ଥାଏ, ମିଛରେ ସୁଆଗ (ଶୁଖିଲରେ ଗେଲ) ବୋହୂ ଯାଉଥାଏ । [ବ୍ୟଙ୍ଗ]

୩୪ । ହାଇରେ କପାଳ (ବିଧାତା) ! [ଅନୁଶୋଚନା]

୩୫ । ହାଇରେ ବିଧି ! ସୁନା (ରୂପା) ଚ (ଚୂ) ପୁଲ (ଚୁଟୁକା) କି ପିତଳ ମୁଦି ! [ବ୍ୟଙ୍ଗ]

୩୬ । ହରଡ଼ ଚଢ଼େଇ ଉଡ଼ି ଉଡ଼ି ଗଲା, ବଡ଼ ବଡ଼ ତା'ର ପକ୍ଷୀ; ଟୋକା ଦଅରଟା ଭାର ରଙ୍ଗିଆ (ରସିକା, ହଦା), ସଦା (କଡ଼)ଠାରୁ ଥାଏ ଆଖି । [ଢଗ]

୩୭ । ହାକ (ଡାକ) ନାହିଁ କି ଡାକ (ହାକ) ନାହିଁ, ଡର ଭୟ ନାହିଁ କାହାକୁ; ଯୋଡ଼ା ଭଉଣୀରେ କି ଯଶ (ଦଉ) ଅଛୁ (କେଡ଼େ ମଉଜ) ପଗ୍ରରେ ଯା ଚଡା ମାଆକୁ । [ବ୍ୟଙ୍ଗ]

୩୮ । ହାଟପାଳି ଯାଇ ହାଟପାଳି, ଶାଶୁ ପାଳି ଯାଇ ବୋହୂ ପାଳି । [ଢଗ]

୩୯ । ହାଣ୍ଡି ଉପରେ ପହାଣ ; ଘରଜ୍ବୁଆଁଣି କି ଘରଜ୍ବୁଆଁଣି, ଲଗିଛୁ ଓଡ଼ଶ (ଘୁଷୁରି) ବିଷ୍ଟାଣ । [ବହୁପ୍ରସବିନୀ ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୪୦ । ହାଟରେ କନ୍ୟା, ବାଟରେ ବର । [ବ୍ୟଙ୍ଗ]

୪୧ । ହାଡ଼ି ଘଇତା ଯାହାର, ହଗି ବସିଲା ଠେଇଁ ବାଇଦ ବାଜେ ତାହାର । [ବ୍ୟଙ୍ଗ]

୪୨ । ହାଟକୁ ଯାଉଛୁ, ଅଧବାଟ ଠେଇଁ (ବାଟରେ ହୋଇଛୁ, ଭଉଜ ଡାକିଲା ପଛରେ; ଆସିବୁ ଫେରିକ, ଆଶା ଅଛୁ ଯେବେ, ଆଣିଥିବୁ ଲୁଣି ମାଛରେ । [ଢଗ]

୪୩ । ହାଡ଼ି ଖାଇବା ଥାନରେ ଗୋବର ପାଣି ଛିଞ୍ଚ ଛିଞ୍ଚା । [ବ୍ୟଙ୍ଗ]

୪୪ । ହାଣିଲା ମାଇଲା କିଏ ? ପୁଅ ଖେଳଉଛୁ (ଖେଳେଇଲା) କିଏ ? [ବ୍ୟଙ୍ଗ]

୪୫ । ହାଣ୍ଡିରେ ଖାଏ, ଘୋଡ଼ରେ ପଡ଼ିଲେ ଗାଧୋ (ଧୋ)ଇ ଯାଏ । [ବାହ୍ୟାଚାରେ ସୁଚିତା ଦେଖାଇ ହେବା ସ୍ତ୍ରୀ ପ୍ରତି ବ୍ୟଙ୍ଗ]

୪୬ । ହାଣ୍ଡି (ଗ୍ରେଇ) ଦେଲ ତାଳ ସଜ; ସୁନା ଗୋଷ୍ଠୀ କିଆଁ ଉଷୁନା ମୁହଁ, କରି ବସିଅଛୁ ଆଜ (ଖୋଜ) ? [ବ୍ୟଙ୍ଗ]

୪୭ । ହାଣ୍ଡି ଖାଇ ! ଗୋଡ଼ରେ (ଲୁଗାରେ) ପଡ଼ିଲେ, ଯାଏ ଗାଧୋ (ଧୋ)ଇ । [ବ୍ୟଙ୍ଗ]

୪୮ । ହାଣ୍ଡି ଖାଇର ହାଣ୍ଡିରେ ମନ, ସ୍ୱପ୍ନରେ ଦେଖଇ ଘୃତ ସପନ । [ବ୍ୟଙ୍ଗ]

୪୯ । ହାଣ୍ଡିଶାଳ ଲିପୁଥିଲି, କିଏ କହିଲା ମୋ ନନା (ବାପା) ଅଇଲେଣି ବୋଲି ଲେ, ହାତ ଧୋଇ ପାଣି ଦେଲି— ମୋ ପ୍ରଭୁ ସେ । [କନ୍ୟାର ଅନୁଚିନ୍ତା]

୫୦ । ହାଣ୍ଡିରେ ନାହିଁ—ନାଁ; ଚୁ (ଚ) ଘୁକ୍ତ ବାଢ଼ । [ବ୍ୟଙ୍ଗ]

୫୧ । ହାତ୍ତେରିକା ! ଢଆ ପଣକୁ କେ ମୋ ଦେଖିକା । [ବ୍ୟଙ୍ଗ]

୫୨ । ହାତକୁ ସୁନ୍ଦର ନଖ; ମୁହଁକୁ ସୁନ୍ଦର କଳି ଝଲକ (ଖ), ଏବେ ଫଣା ଦାଢ଼ୀ ଦେଖ । [ବ୍ୟଙ୍ଗ]

୫୩ । ହାତକୁ ହାତ ଉଭେଇ ଗଲା ! ଏଇଠେଇଁ ଥିଲା; କାହିଁ ଗଲା (କିଏସେ ନେଲା) ! [ଅନୁଚିନ୍ତା]

୫୪ । ହାତ (ଜିଭ) ନଡ଼୍‌ବଡ଼୍ (ନୁଡ଼୍‌ବୁଡ଼୍, ଲଡ଼ବଡ, ଲୁଡ଼୍‌ବୁଡ଼୍) ହୋଇଛି କେଉଁ ଗୁଡ଼ିବ ନାହିଁକି । [ଚୋର ଓ ପେଟୁ ପ୍ରତି ବ୍ୟଙ୍ଗ]

୫୫ । ହାତ ନ ଲଗେ ଗୋଡ଼ ନ ଲଗେ, ଚକ୍ଟୁପିଠା ଖଣ୍ଡେ ସୁଆଦ ଲଗେ । [ଢଗ]

୫୬ । ହାଣ୍ଡିରେ ମୋହଁଲ (ଶୋଳାଲ) ଦହି; ବାସି ଧୋବ (ନିତ ଧୋବ) ଲୁଗା ପିନ୍ଧିବା ପାଇଁ, ଧୋବଣୀ ସାଙ୍ଗରେ ସହି । [ଢଗ]

୫୭ । ହାତରୁ ଗଲାଣି ଖସି, ମାଲି (ମାଲା) ଭଜୁଆ (ଜପୁଆ) ବସି । [ବ୍ୟଙ୍ଗ]

୫୮ । ହାତରୁ କଉଡ଼ି ଦେଇ, କିଣି ଆଣିଲି ପୋଇଲୀ ସେ; ହେଲା ସାଆନ୍ତାଣୀ, ମୁଁ ହେଲି ଥୋଇଲି ! [ଅନୁଚିନ୍ତା]

୫୯ । ହାତରୁ ଖାଇ ଗଣ୍ଡିର ବୋହୁଛୁ (ଘୋଡ଼ା ଆଗେ ଡେଉଁଛୁ !) (ବଣିଜ ଶିଖୁଛୁ) [ବ୍ୟଙ୍ଗ]

୬୦ । ହାତରୁ ମୁଠି (କଉଡ଼ି, ପୁଞ୍ଜି, ଧନ) ଗୁଡ଼ିବୁ ନାହିଁ, ପୁଅକୁ ନୁଖୁରୁ (ଲୁଖୁରୁ) ରଖିବୁ ନାହିଁ । [କୃପଣ ପ୍ରତି ବ୍ୟଙ୍ଗ]

୬୧ । ହାଣ୍ଡ ଗଲା ଯାଏ ପିମ୍ପୁଡ଼ି ନ ଯାଏ ! [ବ୍ୟଙ୍ଗ]

୬୨ । ହାଣ୍ଡ ଯାଉଛୁ, ପିମ୍ପୁଡ଼ି କ ଜଳା ମୁଦ (ଦା) ହଉଛୁ ! [ବ୍ୟଙ୍ଗ]

୬୩ । ହାଣ୍ଡ ବେକରେ ବାନ୍ଧିଲ ଘଣ୍ଟି; ଭେଣ୍ଡିଅ ପୁଅକୁ ଝୁଆ ବୋହୁଟି, [ଭେଣ୍ଡା ପୁଅକୁ ଟିକି କନ୍ୟା; ଅନୁଭବ]

୬୪ । ହାଣ୍ଡ ଘୋଡ଼ା (କୋରମେଇ) କିଣିବାକୁ; ଓପର ଅଣ୍ଟିରେ ମକୁନ୍ଦ ଉଖୁଡ଼ା, ନଣନ୍ଦେଇ ଖାଇବାକୁ । ଭଲ ନଣନ୍ଦେଇ ଭଲରେ ! କବାଟ କଣରେ ଥାଇ ନଣନ୍ଦେଇ, ଶାମୁଖି ବଢ଼େଇ ଦେଲରେ । [ଢଗ]

୬୫ । ହାଣ୍ଡ ପାଡ଼ିବ (ବେ) ପାଡ଼ିବ (ବୋ);—ଫୁସ୍ ! [ବ୍ୟଙ୍ଗ, ବହ୍ୱାଡମ୍ବର ଲଘୁକ୍ରିୟା ପ୍ରତି ବ୍ୟଙ୍ଗ

୬୬ । ହାଣ୍ଡି ମଲା, ନାଁ । କୁଳ ଢାଙ୍କୁଣୀ ପଣ୍ଡିଲା । [ଢଗ]

୬୭ । ହାତେ ବାଣ୍ଠି କାଚ, ଗୋଡ଼ରେ ଖଣ୍ଡିଆ ଶୁଭୁଥାଏ (ବୁଲିଗଲେ) ରୁଣୁଝୁଣୁ; ଖାଇଲା ପରଷା ସୁଆଦ ଲାଗେ, ଖରଯା ତ ଇବଗୁଣୁ । [ଢଗ]

୬୮ । ହାତେ ଲମ୍ବରେ ଓଢଣା ପଡ଼ୁଛି, ଗାଁ ମୁଣ୍ଡ ଯାଏ ରୁଣ୍ଡ ଶୁଭୁଛି ( ରୁଣ୍ଡ ଶୁଭୁଛି ଗାଁ ମୁଣ୍ଡ ସରକି) [ବ୍ୟଙ୍ଗ]

୬୯ । ହାତଅଣ୍ଡା ପାଖେ ନଡ଼ିଆ ଗଛ, ଘରକୁ ମାଡ଼ିଲା ସିଅ; ଝିଅଙ୍କର ଗୁଣ ବିକାଶ ହୋଇବ (ଦାଣ୍ଡେ ମହକିବ), ଦଶିଲଣି ଅସ୍ଥି ହୁଅ । [ବ୍ୟଙ୍ଗ]

୭୦ । ହାଲ ଗଲା ହୁଆଲ (ହବାଲ) ଗଲା, ମୁହଁରୁ ଗଲା ନାଲି; ଆହୁ (ଉ) ତ ଗୋଟିଏ କଥା ଅଛି, କହିବ ଯାଉଁ କାଲି । [ଢଗ]

୭୧ । ହା ଦଇବ ! ଚେମିଣୀ ଚଢେଇ ପୁଅ ବେଇବ, ସ୍ୱାକି ହରଆ (ରଘୁଆ ମୋହର) ଦହ ସହିବ । [ଢଗ]

୭୨ । ହାଣ୍ଡିରେ (ଠେକରେ) ରଖିଲି ଘିଅ; ଦାସେ କରଥିଲେ ଦୂର ବୁକର; କାହୁଁ ଜନମିଲା (କେମନ୍ତେ ହୋଇଲା) ! ପୁଅ [ବ୍ୟଙ୍ଗ]

୭୩ । ହାଣ୍ଡି ଗାଣ୍ଡି ଟା ଫଟା (ଉଠା ଚୁଲି ଫଟା); ଇଠା (ଅଠା) ଫଲ ଲଟା, ଧନଙ୍କ ପାଖରେ ରହିଛି (ଲଖିଛି, ଲାଗିଛି) ମନ, ପାଟ ସାଙ୍ଗେ ଦେବେ ମଠା । [ଢଗ]

୭୪ । ହିନମାନ କରି ଯାହା ଦଉଛି, ଫୋପାଡ଼ି ଦବାକୁ ମନ ହେଉଛି । [ଅନୁଚିନ୍ତା)

୭୫ । ହୁଡ଼ରେ ହୁଡ଼ୁହୁଡ଼େଇ (ହୁରରେ ହୁରହୁରେଇ) ; ନଦବେଳେ ମତେ ପାହାରେ ପିଟିଲା, ଉଠିଲି ଚରଚରେଇ । [ଢଗ]

୭୬ । ହୁନା କପାଳିଆ ଗୁଷ କଲା, ବାରବାଟି ଗୁଷ ଧୋଇରେ ଗଲା । [ଢଗ]

୭୭ । ହୀନ ପ୍ରକୃତି ଧିଟ ଜୀବନ, ଘରେ ଶୋଇରହି (ଖାଇ ଖାଇ); ଅର୍ଦ୍ଧିଠାକୁ ମନ ! [ବ୍ୟଙ୍ଗ]

୭୮ । ହୁଅଇ ଉସୁନା ଧାନ କି (ଉସୁନା ଧାନ କି ହୁଅଇ) ଗଜା ? ପଖାଳ ଖାଇବାକୁ କଦଳୀ ଭଜା, ମାରଇ ଫାଲୁଆ ଗୁଣ୍ଡା; ପୁନାଗୋଣ୍ଠ ମୁଖେ ଦକ୍ଷିଣୀକୋଥ, ଝିଅଲଗା ପେଣ୍ଡା ପେଣ୍ଡା । [ବ୍ୟଙ୍ଗ]

୭୯ । ହୁରି ପଡ଼ିଛି ଜଗନ୍ନାଥଙ୍କେ, ସାପ ପଶୁଅଛି ମୁଣ୍ଡା ଗାତେ । [ଢଗ]

୮୦ । ହୁରି ପଡ଼ିଛି ଜଗନ୍ନାଥଙ୍କ, ସାପ ଖୋଜୁଛି ବେଙ୍ଗ ଗାତ । [ଢଗ]

୮୧ । ହୁଳହୁଳି ଦେଲା ବେଳକୁ କିଭରେ ଘା, ଯାଉ ଖାଇଲା ବେଳକୁ ପୁଅର (ବରର) ମା ! [ବ୍ୟଙ୍ଗ]

୮୨ । ହେଇଟି ! ଯାତ କଥାବାତ ତେଉଁଛି ! [ବ୍ୟଙ୍ଗ]

୮୩ । ହେଇଟି ! ଇ'ଲଗେ ଥେଲା ଏଇଠି ; ସାତ କଆବାଡ଼ ଡେଇଁ ପଶିଲା; ଲୁଚଗଲା ଏବେ କୋଉଁଠି ? [ନଁା ଦଆ; ବଜୁଲି]

୮୪ । ହେଙ୍ଗୁ ହେ (ହୋ) ଇ କସ୍ତୁରେ ପଶିବ, ନଁା, ମହମହ ହେ (ହୋ) ଇ ବାସିବ । [ବ୍ୟଙ୍ଗ]

୮୫ । ହେମନ୍ତ , ଜରୁ କରୁ ହେବ (ହବ) ଯେମନ୍ତ ।

୮୬ । ହେଲେ (ହଇଲେ) ହେ ! ଏ ସାପଖିଆ କଶୁଆ କେ (କଏ ) !

୮୭ । ହୋ (ହେ) ଇ ନାହୁ, କ ହେ (ହ) ବ ନାହିଁ; ଗାଁ ଦେଢ଼ଶୁର ଗାଆଁ ଖାଇ ବୋହୁ, ମୁଣ୍ଡରେ ପଣତ ଦେଇ ନାହିଁ, କ ଦବ ନାହିଁ । [ବ୍ୟଙ୍ଗ]

୮୮ । ହୋଇ ହୋଇ କରୁଥା, ବସିଲା ଥାନରୁ ଉଠି ନ ଯା (ଆ) । [ବ୍ୟଙ୍ଗ]

୮୯ । ହେ ନାଗର (ଘନସୁନ୍ଦର) ! କାଲି ଶୋଇଥେଲ କାହା ମନ୍ଦର (କାଲି ଘପୁଥେଲ କାହା ପସ୍ତର) ? ଉଠିଲା (ବାଜିଲା, ଲଗିଲା) ଘାଗୁଡ଼, କର୍ଣ୍ଣିଲ ଝାଳ ; ମୋଠଉ ଭଙ୍ଗେଇ କରି ଯୋଉଁ ନାଗ୍ନି, କରି ନେଲା ଏବେ ତୁମ ଚନ୍ଦ ଗ୍ନେର, ଦେଖିବା ଦେଖି ସେ କେଡ଼େ ସୁନ୍ଦର ! ତାକୁ ଆସେ ମନଭୁଲା ମନ୍ତର; ନାସି କୁହୁକ ମନ୍ତର କଲା; ଘଡ଼ିକଯାକ ଅଟକାଇ (ଖଟାଇ) ରଖି (ଗାରଡ଼ ବନେଇ) ଚୁନକାଲି ବୋଲିଦେଲା (ସକାଳୁ ମେଲ୍ଲଣି ଦେଲା) । [ଅଭିମାନ]

୯୦ । ହୋଇନାହିଁ, କ ହବ ନାହିଁ; ପାଚନ୍ତ ଆମ୍ବ ନେ (ନେ) ସୋଡ଼ି ଗଲଣି, (ଯାଉଛୁ), ଆଉ ମାହାଜନ ନବ ନାହିଁ । [ବ୍ୟଙ୍ଗ]

